# ପ୍ରବୋଧ ଚନ୍ଦ୍ରିକା

( ୧୮୫୭ )




ପ୍ରକାଶକ:—

ଉତ୍କଳ ବିଶ୍ୱବିଦ୍ୟାଳୟ

ବାଣୀବିହାର

୧୯୮୪

# ପ୍ରବୋଧ ଚନ୍ଦ୍ରିକା

( ୧୮୫୭ )

ସଙ୍କଳକ:—

ପ୍ରଫେସର ଡକ୍ଟର ବଂଶୀଧର ମହାନ୍ତି

ପ୍ରକାଶକ:—

ଉତ୍କଳ ବିଶ୍ୱବିଦ୍ୟାଳୟ

ବାଣୀବିହାର

୧୯୮୪

ମୂଲ୍ୟ: ଟ ୯-୦୦ ନଅ ଟଙ୍କା ମାତ୍ର

# ମୁଖବନ୍ଧ

## ପ୍ରାଗ୍‌ଭାଷ

(ଭାରତରେ ବ୍ରିଟିଶ ରାଜଶକ୍ତି ଶାସନ କ୍ଷମତା ଲାଭ କରିବା ପରେ ଦେଶବାସୀମାନଙ୍କର ସାମାଜିକ ଓ ସାଂସ୍କୃତିକ ଜାଗରଣ ପାଇଁ ବହୁବିଧ କାର୍ଯ୍ୟ କରିଥିଲେ । ସର୍ବସାଧାରଣଙ୍କ ମନରେ ସ୍ୱତନ୍ତ୍ର ଆସନ ଲାଭ କରିବା ପାଇଁ ସେମାନେ ଦେଶବାସୀଙ୍କ ଧର୍ମବିଶ୍ୱାସ ଉପରେ ହସ୍ତକ୍ଷେପ କରି ନ ଥିଲେ । ଭାରତୀୟ ଜୀବନରୁ ହୀନମନ୍ୟତା, କୁସଂସ୍କାର ଓ ଅଜ୍ଞତାର ଭ୍ରାନ୍ତି ଦୂରକରି କାନ୍ତି ଆନୟନ ସକାଶେ ବ୍ରିଟିଶ ରାଜଶକ୍ତି ସତତ ସଚେତନ ଥିଲେ । ପାଶ୍ଚାତ୍ୟ ଆଲୋକ ଏବଂ ଜ୍ଞାନ ଦ୍ୱାରା ଭାରତୀୟ ଜୀବନ ଚର୍ଯ୍ୟାର ବିକାଶ କରାଯାଇପାରିବ ବୋଲି ସେମାନଙ୍କର ଦୃଢ଼ବିଶ୍ୱାସ ଥିଲା । ଏଥି ନିମିତ୍ତ ଇଂରେଜମାନେ ଏ ଦେଶରେ ଶିକ୍ଷା, ଛାପାଖାନା, ପାଠ୍ୟପୁସ୍ତକ ଓ ପତ୍ରପତ୍ରିକାର ବିକାଶ ପାଇଁ ଚେଷ୍ଟା କରିଥିଲେ ।)

## ଓଡ଼ିଶାରେ ଇଂରେଜ

ବହୁ ପୂର୍ବରୁ ଭାରତକୁ ବୈଦେଶିକମାନେ ଆସିଥିଲେହେଁ ଓଡ଼ିଶା ଭୂମିରେ ୧୫୧୪ ଖ୍ରୀଷ୍ଟାବ୍ଦରେ ପର୍ତ୍ତୁଗୀଜ ବଣିକମାନେ ପ୍ରଥମେ ପାଦ ଦେଇଥିଲେ । ସେମାନେ ସୁବର୍ଣ୍ଣରେଖା ମୁହାଣର ପିପିଲିଠାରେ ବାଣିଜ୍ୟ ବ୍ୟବସାୟ କରିବା ପାଇଁ ଓଡ଼ିଶାର ତତ୍କାଳୀନ ଗଜପତି ପ୍ରତାପରୁଦ୍ରଦେବଙ୍କ-ଠାରୁ ସନନ୍ଦ ପାଇଥିଲେ । ପର୍ତ୍ତୁଗୀଜମାନେ ଓଡ଼ିଶାରେ ବାଣିଜ୍ୟ ବ୍ୟବସାୟ କରୁଥିବା ଅବସ୍ଥାରେ କ୍ରମେ ଇଷ୍ଟଇଣ୍ଡିଆ କମ୍ପାନୀର ବ୍ୟବସାୟୀ ଦଳ ୧୬୩୩ ମସିହାରେ ଓଡ଼ିଶାରେ ପ୍ରବେଶ କଲେ । କ୍ୟାପ୍‌ଟେନ କାର୍ଟରାଇଟଙ୍କ ନେତୃତ୍ୱରେ ଆଠ ଜଣ ବ୍ୟବସାୟୀ ୧୬୩୩ ମସିହା ମାର୍ଚ୍ଚ ମାସରେ କଟକ ଜିଲ୍ଲାର ହରିଶପୁର, କୁଜଙ୍ଗ ଓ ହରିହରପୁର (ଆଧୁନିକ ଜଗତସିଂହପୁର) ବାଟଦେଇ କଟକର ବାରବାଟି କିଲ୍ଲାରେ ପହଞ୍ଚିଥିଲେ । ସେତେବେଳେ ଓଡ଼ିଶାର ରାଜା ଥିଲେ ମୁକୁନ୍ଦଦେବ, କିନ୍ତୁ ମୋଗଲ ଶାସନ କର୍ତ୍ତା ଥିଲେ ଆଗା ମହମ୍ମଦ ଜମାନ । ଏହି ଇଂରେଜ ବଣିକଗଣ ମୋଗଲ ଶାସନ କର୍ତ୍ତାମାନଙ୍କଠାରୁ ହରିହରପୁର, ବାଲେଶ୍ୱର, ପିପିଲି ପ୍ରଭୃତି ସ୍ଥାନରେ ବାଣିଜ୍ୟ କରିବାର ଅନୁମତି ପାଇଲେ । ବାଲେଶ୍ୱର ମଧ୍ୟ ସେ ସମୟରେ ବାଣିଜ୍ୟ ବ୍ୟବସାୟର ଏକ କେନ୍ଦ୍ରରୂପେ ଗଢ଼ି ଉଠିଲା । ଇଂରେଜମାନଙ୍କର ବାଣିଜ୍ୟ କୋଠି ସହିତ ହଲାଣ୍ଡ, ଡେନ୍‌ମାର୍କ ଓ ଫରାସୀମାନଙ୍କର ବାଣିଜ୍ୟ

କୋଠି ବାଲେଶ୍ୱରରେ ଗଠିତ ହେଲା । ଏହି ସମୟରେ ଇଂରେଜମାନେ ହରିହରପୁରରେ ସେମାନଙ୍କର ଯେଉଁ ବାଣିଜ୍ୟ କେନ୍ଦ୍ର ସ୍ଥାପନ କରିଥିଲେ ପ୍ରତିକୂଳ ଜଳବାୟୁ ଓ ନଦୀର ଗତି ପରିବର୍ତ୍ତନରେ ତାହା ତିଷ୍ଠିଇ ପାରି-ନଥିଲା । ୧୭୪୬ ମସିହା ବେଳକୁ ତାହା ବନ୍ଦ ହୋଇଯାଇଥିଲା । *

ଇଷ୍ଟଇଣ୍ଡିଆ କମ୍ପାନୀ ପଲାସୀ ଯୁଦ୍ଧ (୧୭୫୭ ଖ୍ରୀଷ୍ଟାବ୍ଦ) ପରେ ବଙ୍ଗ ଦେଶର ଶାସନରେ ଏକ ବିଶିଷ୍ଟ ସ୍ଥାନ ଅଧିକାର କଲେ । ୧୭୬୪ ଖ୍ରୀଷ୍ଟାବ୍ଦରେ ବଙ୍ଗଳା, ବିହାର ଓ ଓଡ଼ିଶା କମ୍ପାନୀ ଶାସନାଧୀନ ହେଲେ । ଅଷ୍ଟାଦଶ ଶତାବ୍ଦୀର ଶେଷ ପର୍ଯ୍ୟାୟରେ ମରହଟ୍ଟା ଶାସନ ଓଡ଼ିଶାରେ ଜାହିର ହେଲା ଓ ଓଡ଼ିଶାରେ ମରହଟ୍ଟା ଶାସନର ସ୍ୱଳ୍ପ ସମୟ ପରେ ୧୮୦୩ ମସିହାରେ କମ୍ପାନୀର ସୈନ୍ୟମାନେ ଗଞ୍ଜାମ ଆଡ଼ୁ, ଜଳପଥରେ ବାଲେଶ୍ୱର ଆଡ଼ୁ ଆକ୍ରମଣକରି ପୁରୀ, କଟକ ଓ ବାଲେଶ୍ୱର ଅଧିକାର କଲେ । ସେହି ଦିନରୁ ଅର୍ଥାତ୍ ୧୮୦୩ ମସିହାରୁ ୧୯୪୭ ମସିହା ପର୍ଯ୍ୟନ୍ତ ପ୍ରାୟ ୧୪୪ ବର୍ଷ ଓଡ଼ିଶା ଇଂରେଜମାନଙ୍କ ଶାସନାଧୀନରେ ରହିଲା ।

ଊନବିଂଶ ଶତାବ୍ଦୀରେ ଓଡ଼ିଶାର ଧର୍ମ, ସମାଜ ଓ ରାଜନୈତିକ ଜୀବନରେ ଦେଖାଦେଲା ନୂତନ ପରିବର୍ତ୍ତନ । ବଣ ଜଙ୍ଗଲପୂର୍ଣ୍ଣ ଓଡ଼ିଶା ଭିତରେ ପ୍ରବେଶ କଲା ପାଶ୍ଚାତ୍ୟ ଶିକ୍ଷା ଓ ସଭ୍ୟତାର ସ୍ରୋତ । ଇଂରେଜ ଶାସନ ସହିତ ଖ୍ରୀଷ୍ଟିୟାନ ଧର୍ମ କେବଳ ଓଡ଼ିଶା କାହିଁକି ସମଗ୍ର ଭାରତ-ବର୍ଷରେ ସମତାଳରେ ଗତି କରିଛି । ସେମାନେ ଭାରତର ଧାର୍ମିକ ପରମ୍ପରାରେ ହସ୍ତକ୍ଷେପ ନ କରିବାର ଆହ୍ୱାନ ଦେଉଥିଲେ ପୁଣି ସମଗ୍ର ଭାରତକୁ ଖ୍ରୀଷ୍ଟଧର୍ମାବଲମ୍ବୀ ଦେଶରେ ପରିଣତ କରିବାର ଅନ୍ତର୍ନିହିତ ବାସନା ସେମାନଙ୍କର ଥିଲା । ସେମାନେ ଭାରତରେ ଉନ୍ନୟନମୂଳକ କାର୍ଯ୍ୟକ୍ରମ ମାଧ୍ୟମରେ ଖ୍ରୀଷ୍ଟଧର୍ମ ପ୍ରଚାରର ଚେଷ୍ଟା କରୁଥିଲେ । ମାତ୍ର ଭାରତର ମୌଳିକ ସନାତନ ହିନ୍ଦୁଧର୍ମକୁ ଏମାନେ ଟଳାଇ ପାରିନାହାନ୍ତି । ଆମେ ସେମାନଙ୍କର ପାନୀୟ, ଖାଦ୍ୟ-ନୀତି, ବେଶ-ପୋଷାକ, ଶିକ୍ଷା-ସଭ୍ୟତା, ଭାଷାକୁ କେତେକ ପରିମାଣରେ ଗ୍ରହଣ କରିଥିଲେ ମଧ୍ୟ ସେମାନଙ୍କର ଧର୍ମକୁ ପୂର୍ଣ୍ଣମାତ୍ରାରେ ଉପେକ୍ଷା କରିଅଛୁ ।

---

* History of Bengal, Bihar and Orissa under British Rule—( 1925 ) L. S. S. O' Malley, Page-7-8.

ଓଡ଼ିଶାରେ ଖ୍ରୀଷ୍ଟିୟାନ ଧର୍ମର ପ୍ରଚାର ଓ ପ୍ରସାର ସହିତ ପାଶ୍ଚାତ୍ୟ ଶିକ୍ଷା କପରି ପ୍ରବେଶ କରିଛି, ତା'ର ଏକ ଇତିହାସ ରହିଛି । ଊନବିଂଶ ଶତାବ୍ଦୀ ଭାରତର ବିଶିଷ୍ଟ ଖ୍ରୀଷ୍ଟିୟାନ ପାଦ୍ରୀ ପଣ୍ଡିତ ଉଇଲିୟମ କାରେ (Carey) ଓ ଥମାସ ବଙ୍ଗଳାକୁ ଯିବା ପଥରେ କିଛି ସମୟ ବାଲେଶ୍ୱରରେ ଅବସ୍ଥାନ କରିଥିଲେ ଓ ସେକାଳରେ ଖ୍ରୀଷ୍ଟିୟାନ ଧର୍ମପ୍ରଚାରକଗଣ ପ୍ରାୟତଃ ସେମାନଙ୍କ ଦେଶରୁ ଜାହାଜରେ ଆସି ପ୍ରଥମେ ଓଡ଼ିଶା ଉପକୂଳରେ ଅବତରଣ କରିଥିଲେ । ରେଭେରେଣ୍ଡ କ୍ୟାମବୋନ୍ (Campbone) ଓ ରେଭେରେଣ୍ଡ ଲସେ (Lacey) ଓଡ଼ିଶାରେ ପ୍ରଥମ କରି ମିଶନ୍ କାର୍ଯ୍ୟ ଆରମ୍ଭ କରିଥିଲେ । ସେମାନେ ମଧ୍ୟ ଓଡ଼ିଶାରେ ପାଶ୍ଚାତ୍ୟ ଶିକ୍ଷାର ପ୍ରବର୍ତ୍ତନ କଲେ ।

## ଓଡ଼ିଶାରେ ପାଶ୍ଚାତ୍ୟ ଶିକ୍ଷା

ମିଶନାରୀମାନେ ଥିଲେ ଓଡ଼ିଶାରେ ପାଶ୍ଚାତ୍ୟ ଶିକ୍ଷାର ପ୍ରବର୍ତ୍ତକ । ଖ୍ରୀ:୧୮୨୨ ଜୁନ୍ ମାସଠାରୁ ଖ୍ରୀ:୧୮୨୩ ଡିସେମ୍ବର ମାସ ମଧ୍ୟରେ ଓଡ଼ିଶାରେ ପନ୍ଦରଟି ମିଶନ୍ ପାଠଶାଳା (Native School) ସ୍ଥାପିତ ହୋଇଥିଲା । ପାଠଶାଳାର ବିବରଣୀରୁ ଜଣାଯାଏ ଯେ ତତ୍କାଳରେ ୩୦୫ ବାଳକ ଓ ୨୩ ଜଣ ବାଳିକା ପାଠ ପଢ଼ୁଥିଲେ । ମିଶନାରୀମାନଙ୍କ ଉଦ୍ୟମରେ କଟକ ଇଂରାଜୀ ଦାତବ୍ୟ ବିଦ୍ୟାଳୟ (Cuttack English Charity School) ଇଂରାଜୀ ଶିକ୍ଷା ଦେବା ପାଇଁ ୧୮୨୩ ମସିହାରେ ସ୍ଥାପିତ ହେଲା । ସେହି ସ୍କୁଲର ଅଧିକାଂଶ ପାଠ୍ୟ ଥିଲା ଖ୍ରୀଷ୍ଟଧର୍ମ ସମ୍ବନ୍ଧୀୟ ବିଭିନ୍ନ ବିଷୟ । ସେତେବେଳକୁ ଶ୍ରୀରାମପୁର ମିଶନ୍ ପ୍ରେସ୍‌ରୁ ଓଡ଼ିଆ ବାଇବେଲ ପ୍ରକାଶ ପାଇସାରିଥିଲା । ଓଡ଼ିଆ, ଇଂରେଜୀ ବାଇବେଲ ସହିତ କଲିକତା ସ୍କୁଲ ବୁକ୍ ସୋସାଇଟି ତରଫରୁ ପ୍ରକାଶିତ କେତେକ ଓଡ଼ିଆ ବହି ସେତେବେଳର ପାଠ୍ୟପୁସ୍ତକ ଥିଲା । ୧୮୪୧ ମସିହାରେ ଇଂରାଜୀ ସ୍କୁଲଟି ସରକାରଙ୍କ ଅଧୀନକୁ ଆସିଥିଲା ।

ଖ୍ରୀ: ୧୮୨୨ ମସିହା ବେଳକୁ ଓଡ଼ିଆରେ ଯେଉଁ କେତେକ ଛାପା ପୁସ୍ତକ ପ୍ରକାଶ ପାଇଥିଲା । ତନ୍ମଧ୍ୟରେ ପ୍ରଧାନ ହେଉଛି କାରେ ସାହେବଙ୍କଦ୍ୱାରା ପାଞ୍ଚଖଣ୍ଡରେ ବିଭକ୍ତ ପଥର ଛାପା ଓଡ଼ିଆ ବାଇବେଲ, ଓଡ଼ିଆ-ଇଂରାଜୀ ଅଭିଧାନ, ଜଣେ ବଙ୍ଗୀୟ ଖ୍ରୀଷ୍ଟିୟାନଙ୍କଦ୍ୱାରା ରଚିତ ଶହେ ପୃଷ୍ଠାର ଓଡ଼ିଆ ଗୀତ ପୁସ୍ତକ, ମିଶନାରୀ ଓ୍ୟାର୍ଡ଼ଙ୍କଦ୍ୱାରା ଶ୍ରୀ ଜଗନ୍ନାଥଙ୍କ ରଥ ସମ୍ବନ୍ଧୀୟ ବର୍ଣ୍ଣନା, ଶ୍ରୀରାମପୁରରୁ ପ୍ରକାଶିତ ପ୍ରାଥମିକ ଓଡ଼ିଆ ଭାଷା ଶିକ୍ଷା

I

ପ୍ରଭୃତି ପୁସ୍ତକ । ସେତେବେଳର ଓଡ଼ିଆ ଶିକ୍ଷା ସମ୍ପର୍କରେ କୁହାଯାଇଛି; ''ଛାତ୍ରମାନେ ଦକ୍ଷତାର ସହିତ ଓରେସ୍ୱା (Oreah) ଶିକ୍ଷା କରୁଛନ୍ତି । ଯେ କୌଣସି ଓଡ଼ିଆ ଲେଖା ସେମାନଙ୍କୁ ଦେଲେ ସେମାନେ ତାହାକୁ ଭଲ ଭାବରେ ପଢ଼ି ପାରୁଛନ୍ତି, କିନ୍ତୁ ଇଂରାଜୀରୁ ଓଡ଼ିଆ ଅନୁବାଦରେ ସେମାନେ ସେତେ ପାରଦର୍ଶିତା ଦେଖାଇ ପାରୁନାହାନ୍ତି ।

ଖ୍ରୀ: ୧୮୦୩–୧୮୬୮ ମଧ୍ୟରେ ଓଡ଼ିଶାର ଶିକ୍ଷା ସମ୍ବନ୍ଧରେ ଐତିହାସିକ ଟଏନବୀ ସାହେବ ଲେଖିଛନ୍ତି, ''ଇଂରେଜମାନେ ଓଡ଼ିଶା ଅଧିକାର କଲା ପରେ ପରେ ଦେଖାଗଲା ଯେ ଗୋଟିଏ ହେଲେ ଓଡ଼ିଆ ଲୋକ ସରକାରୀ ଚାକିରିରେ ନ ଥିଲେ । ସେତେବେଳେ କୋର୍ଟ କଚେରୀରେ ଫାରସୀ ଭାଷାହିଁ ପ୍ରଚଳିତ ଥିଲା । ୧୮୦୫ ମସିହାରେ କମିସନର ସାହେବଙ୍କର ଆଦେଶ ଫଳରେ ଉଭୟ ଫାରସୀ ଓ ଓଡ଼ିଆ ଭାଷା ସରକାରୀ ଭାଷାରୂପେ ସ୍ୱୀକୃତି ଲାଭ କଲା । ଯେଉଁ ଓଡ଼ିଆମାନେ କଚେରୀରେ ମୋହରର ଭାବରେ ନିଯୁକ୍ତି ପାଇଲେ ସେମାନେ ତାଳପତ୍ରରେ ଲେଖନୀରେ ଲେଖିବାରେ ଦକ୍ଷତା ଅର୍ଜ୍ଜନ କରିଥିଲେ; କିନ୍ତୁ କାଗଜରେ ଲେଖିଲାବେଳକୁ ସେମାନଙ୍କର ହାତ ଥରୁ ଥିଲା । ନୂଆ ଧରଣର ଶିକ୍ଷା ଦୀକ୍ଷା, ଲେଖାଲେଖିରେ ଏମାନେ ସେତେ ଅଭ୍ୟସ୍ତ ନ ଥିବାରୁ କିରାଣୀ ଚାକିରିରେ ବଙ୍ଗାଳୀମାନେ ନିଯୁକ୍ତ ହେବାର ସୁବିଧା ପାଇଲେ । ଏମିତି ଅନେକ ବଙ୍ଗାଳୀ ନିଜ ପ୍ରଦେଶର ଜାଗା ଜମି ଛାଡ଼ି ଓଡ଼ିଶା ପ୍ରଦେଶରେ ବାସ କରି ଏକପ୍ରକାର ଓଡ଼ିଆ ହେଲେ । ୧୮୬୧ ମସିହାରେ ତତ୍କାଳୀନ ମାଜିଷ୍ଟ୍ରେଟ୍ ଲେଖିଛନ୍ତି ଯେ, ବଙ୍ଗାଳୀ ଓ ମୁସଲମାନଙ୍କ ବ୍ୟତୀତ ଗୋଟିଏ ଓଡ଼ିଆ ଲୋକ ଚାକିରିରେ ଦଶ ଟଙ୍କାରୁ ଅଧିକ ପାଉଥିବାର ସେ ଦେଖି ନ ଥିଲେ ।''

ମୁସଲମାନ ଓ ଇଂରେଜ ଶାସନ ସମୟରୁ ଓଡ଼ିଶା ରାଜ୍ୟ ଶିକ୍ଷା କ୍ଷେତ୍ରରେ ବରାବର ଅବହେଳିତ ଅବସ୍ଥାରେ ରହି ଆସିଛି । ଭାରତର ଅନ୍ୟ ରାଜ୍ୟ ତୁଳନାରେ ଓଡ଼ିଶା ଶିକ୍ଷାରେ ବିଶେଷ ଅଗ୍ରଗତି କରି ପାରି ନାହିଁ । ୧୮୫୮ ମସିହାରୁ ଭାରତରେ ଉଚ୍ଚ ଶିକ୍ଷାର ପ୍ରସାର ପାଇଁ ପ୍ରଥମେ କଲିକତା, ବମ୍ବେ ଓ ମାନ୍ଦ୍ରାଜରେ ତିନିଗୋଟି ବିଶ୍ୱବିଦ୍ୟାଳୟ ସ୍ଥାପିତ ହୋଇଥିଲା, କିନ୍ତୁ ଓଡ଼ିଶାରେ ବିଶ୍ୱବିଦ୍ୟାଳୟ ଦୂରର କଥା, ପ୍ରଥମ କଲେଜ ରେଭେନ୍ସା କଲେଜ ୧୮୬୮ ମସିହାରେ 'କଟକ କଲେଜ' ନାମରେ ଆରମ୍ଭ ହୁଏ । ପରବର୍ତ୍ତୀ କାଳରେ ୧୮୭୬ ମସିହାରେ ଏହା ଡିଗ୍ରୀ କଲେଜରେ ପରିଣତ ହୋଇଥିଲା । ଓଡ଼ିଶାରେ ପ୍ରଥମ ବିଶ୍ୱବିଦ୍ୟାଳୟ ବିଂଶ ଶତକରେ ୧୯୪୩

ମସିହାରେ ଜନ୍ମ ଲାଭ କରେ । ଏଥିରୁ ସର୍ବଭାରତୀୟ ସ୍ତରରେ ଉତ୍କଳ ଶିକ୍ଷା-କ୍ଷେତ୍ରରେ କେତେ ପଛରେ ପଡ଼ି ରହିଥିଲା, ତାହା ସହଜରେ ଅନୁମାନ କରାଯାଇପାରେ ।

## ଓଡ଼ିଶାର ମୁଦ୍ରଣ ଶିଳ୍ପର ପ୍ରାଥମିକ ଅବସ୍ଥା

ଆଧୁନିକ ଶିକ୍ଷା ପ୍ରସାର କ୍ଷେତ୍ରରେ ଛାପାଖାନାର ଅବଦାନ ବିପୁଳ । ପ୍ରଥମ କରି ୧୮୩୭ ମସିହାରେ କଟକରେ ଏକ ଛାପାଖାନା ପ୍ରତିଷ୍ଠିତ ହେଲା ଓ ବହି ଛାପିବା ସକାଶେ ଓଡ଼ିଆ ଟାଇପ୍ ପ୍ରସ୍ତୁତ ହେଲା । କିନ୍ତୁ ଏହା ପୂର୍ବରୁ ବାଇବେଲର ଦ୍ୱିତୀୟ ଭାଗ ୧୮୧୧ ମସିହାରେ କଲିକତାସ୍ଥ ଶ୍ରୀରାମପୁର ମିଶନ ପ୍ରେସ୍‌ରେ ମୁଦ୍ରିତ ହୋଇଥିଲା । ପ୍ରଥମ ଓଡ଼ିଆ ବାଇବେଲ ୧୮୧୪ ମସିହାରେ ଛାପା ଯାଇଥିଲା । ୧୮୧୧ ଖ୍ରୀଷ୍ଟାବ୍ଦରୁ ମିଶନାରୀମାନେ ସେମାନଙ୍କ ଧର୍ମ ପ୍ରଚାର ପାଇଁ କେନ୍ଦ୍ରସ୍ଥଳରୂପେ ଓଡ଼ିଶାର କଟକ ସହର ଓ ସେଠାରେ ଥିବା ମିଶନ ପ୍ରେସ୍‌କୁ ବାଛି ଆସିଥିଲେ । ଏହି ମିଶନ ପ୍ରେସ୍ ଓଡ଼ିଶାର ପ୍ରଥମ ଛାପାଖାନା କହିଲେ ଅତ୍ୟୁକ୍ତି ହେବନାହିଁ ।

ଓଡ଼ିଶାର ପତ୍ରପତ୍ରିକାର ପ୍ରକାଶନ ସହିତ ବଙ୍ଗଳା ଓ ଭାରତୀୟ ଭାଷାମାନଙ୍କର ପତ୍ରିକା ପ୍ରକାଶନର ତୁଳନା କଲେ ଦେଖାଯାଏ ଯେ ବଙ୍ଗଳା ଭାଷାରେ ସେହି ଶ୍ରୀରାମପୁର ମିଶନାରୀ କେନ୍ଦ୍ରରୁ ଖ୍ରୀ: ୧୮୧୮ ରେ 'ଦିଗ୍‌ଦର୍ଶନ' ଓ ୧୮୨୨ ମସିହାରେ 'ସମାଚାର ଚନ୍ଦ୍ରିକା' ପ୍ରକାଶ ପାଇଥିଲା । ଏତଦ୍‌ବ୍ୟତୀତ ୧୮୧୮ ମସିହାରେ ଶ୍ରୀରାମପୁର ମିଶନ ପ୍ରେସ୍‌ରୁ 'ସମାଚାର ଦର୍ପଣ' ନାମକ ଅନ୍ୟ ଏକ ବଙ୍ଗଳା ସାପ୍ତାହିକ ପତ୍ରିକା ପ୍ରକାଶ ପାଇଥିଲା । କିନ୍ତୁ ବଙ୍ଗ ଦେଶରେ ଖ୍ରୀ: ୧୭୭୮ ରେ ପ୍ରଥମ ଛାପାକାର୍ଯ୍ୟ ଆରମ୍ଭ ହୋଇଥିଲା ଏବଂ ସେହି ବର୍ଷ ହୁଗୁଳିରୁ ହାଲ୍‌ହେଡ଼୍ (Halhed)ଙ୍କ ଦ୍ୱାରା ରଚିତ ବଙ୍ଗଳା ଭାଷାର ବ୍ୟାକରଣ ପ୍ରକାଶ ପାଇଥିଲା ।

୧୫୩୮ ମସିହାରେ ମେକ୍‌ସିକୋ ସହରରେ ପ୍ରଥମେ ମୁଦ୍ରଣ ଶିଳ୍ପ ଆରମ୍ଭ ହୋଇଥିଲା । ପରେ ଜନୈକ ଖ୍ରୀଷ୍ଟଧର୍ମାବଲମ୍ବୀ ମାଷ୍ଟର ଫ୍ରାନସିସ୍ ଗୋଆକୁ ବାଣିଜ୍ୟ ବ୍ୟବସାୟ ସନ୍ଧାନରେ ଆସି ସେଠାରେ ପାଶ୍ଚାତ୍ୟ ଶିକ୍ଷାର ପ୍ରବର୍ତ୍ତନ କରିଥିଲେ । ୧୫୫୬ ଖ୍ରୀଷ୍ଟାବ୍ଦରେ ଦଳେ ପର୍ତ୍ତୁଗୀଜ ଗୋଆରେ ଅବତରଣ କରିଥିଲେ ଓ ସେମାନଙ୍କ ସଙ୍ଗରେ ଏକ ମୁଦ୍ରାଯନ୍ତ୍ର, ମୁଦ୍ରାକର

ଓ ଛପାଇବା ସକାଶେ ଅକ୍ଷର ସମ୍ଭବ ଆଣିଥିଲେ । ଜଣାଯାଏ ଯେ ଭାରତରୁ ପ୍ରଥମ ଛାପାବହି ଖ୍ରୀ: ୧୫୫୭ ରେ ଗୋଆରୁ ଆତ୍ମପ୍ରକାଶ କଲା । ୧୫୬୧ ମସିହାରେ 'କମ୍ପେନଡିଓ ସ୍ପିରିଚୁଆଲ୍' (Compendio Spiritual) ଜାଓ କ୍ୟୁନ କ୍ରେନସିଓ ଓ ଜାଓ ଡି ଏଣ୍ଡେମ୍‌ଙ୍କ (Joao de Endem) ଦ୍ୱାରା ଲିଖିତ ହୋଇ ଗୋଆରୁ ପ୍ରକାଶିତ ହୋଇଥିଲା । ଏହା ସମ୍ପ୍ରତି ନ୍ୟୁୟର୍କର ସାଧାରଣ ଗ୍ରନ୍ଥାଗାରରେ ସଂରକ୍ଷିତ ହୋଇ ରହିଅଛି । ପର୍ତ୍ତୁଗୀଜ, ଡାନାମାର ଓ ଇଂରେଜ ଲୋକମାନଙ୍କ ଦ୍ୱାରା ଭାରତରେ କ୍ରମେ କ୍ରମେ ଛାପା କାମ ଓ ଛାପା ବହି ପ୍ରସାରିତ ହେବାକୁ ଲାଗିଲା । ତନ୍ମଧ୍ୟରେ କେତେକ ପ୍ରଧାନ ପ୍ରଧାନ ଗ୍ରନ୍ଥ ପ୍ରକାଶ ପାଇଲା । ଡାନାମାର ଜାତିର ବ୍ୟକ୍ତି ହାଲେ (Halle) ଉର୍ଦ୍ଦୁ ଓ ତେଲୁଗୁ ଭାଷା ଶିକ୍ଷା କରି ତେଲୁଗୁ ଲିପିରେ 'କାଟେକିଜମ୍' (୧୭୪୭) ଓ ବୁଲ୍ ଅଫ ଲଇଫ୍ (୧୭୪୭ ଗ୍ରନ୍ଥ ଓ ଉର୍ଦ୍ଦୁ ଅକ୍ଷରରେ 'ଗ୍ରାମାଟିକା ହିନ୍ଦୋସ୍ତାନିକା' (୧୭୪୮) ଓ ସଲଟାର (Psalter) (୧୭୪୭) ଗ୍ରନ୍ଥ ପ୍ରକାଶ କଲେ । ଭାରତର ବିଭିନ୍ନ ଭାଷା ଓ ଇଂରାଜୀରେ ସେ ସମୟରେ ପ୍ରକାଶିତ କେତେକ ପ୍ରଧାନ ଗ୍ରନ୍ଥ ହେଉଛି ଖ୍ରୀ: ୧୭୭୮ରେ ହାଲ୍‌ହେଡ୍ ପ୍ରଣୀତ ବଙ୍ଗଳା ଭାଷାର ବ୍ୟାକରଣ (Grammer of the Bengal Language), କମ୍ପେଣ୍ଡିଅସ୍ ଭୋକାବୁଲାରୀ (ଇଂରାଜୀ ଓ ପାରସୀ ଭାଷାରେ ମୁଦ୍ରିତ) ଗ୍ଲାଁସ ଉଇଲକିନ୍ସ, (୧୭୮୦) ମରହଟ୍ଟୀ ଭାଷାରେ 'ଏସପ' (୧୮୦୬), 'ହାଫ୍ତ କୁଲ୍‌ଜୁମ୍' (Haft Qulzum) ୧ମ—୭ମ ଭାଗ ଅଭିଧାନ ଖ୍ରୀ: ୧୮୧୪-୧୮୨୨ ମଧ୍ୟରେ ଅଯୋଧ୍ୟାର ନବାବଙ୍କ ପ୍ରେରଣାରେ ଅଯୋଧ୍ୟାରୁ ପ୍ରକାଶିତ ହୋଇଥିଲା ।

ଓଡ଼ିଶାରେ ପ୍ରଥମ ଛାପାଖାନା ଓ ପ୍ରଥମ ଛାପାଗ୍ରନ୍ଥ ସମ୍ବନ୍ଧରେ ବିଶେଷ ଗବେଷଣା ହୋଇନାହିଁ । ତେବେ ଯାହା ଜଣାଯାଏ ଖ୍ରୀ: ୧୮୧୧ ରୁ ପ୍ରଥମ ଓଡ଼ିଆ ଛାପାକାମ ଶ୍ରୀରାମପୁରର ମିଶନ ପ୍ରେସ୍‌ରେ ଆରମ୍ଭ ହୋଇ ଧୀରେ ଧୀରେ ତାହା ପ୍ରସାର ଲାଭ କରିଅଛି । ଦୁଃଖର କଥା ଯେ ପ୍ରାରମ୍ଭିକ ଅବସ୍ଥାରେ ଓଡ଼ିଶାରେ ଛାପା ଯାଇଥିବା ପୁସ୍ତକ ସମୂହର ଯଥାର୍ଥ ସଂଗ୍ରହ ହୋଇନାହିଁ ।

## ଓଡ଼ିଶାରେ ମିଶନାରୀମାନଙ୍କ କାର୍ଯ୍ୟକଳାପ

ଓଡ଼ିଶାରେ ମିଶନାରୀମାନଙ୍କର ପ୍ରଥମ ଉଦ୍ୟମ ଥିଲା, ଶ୍ରୀ ଜଗନ୍ନାଥଙ୍କୁ ନିନ୍ଦା କରି ଲୋକମାନଙ୍କର ଦୃଷ୍ଟି ତାଙ୍କ ଠାରୁ ଫେରାଇ ଆଣି ଖ୍ରୀଷ୍ଟଧର୍ମରେ

ବିନିଯୋଗ କରାଇବା । କିନ୍ତୁ ବ୍ରିଟିଶ ଆକ୍ରମଣ ସମୟରେ ଲର୍ଡ଼ ଓ୍ୱେଲସିଲି ଶ୍ରୀ ଜଗନ୍ନାଥ ମନ୍ଦିର ଓ ତତ୍ସଂପର୍କୀୟ ଅନ୍ୟାନ୍ୟ ବିଷୟରେ ହସ୍ତକ୍ଷେପ କରିବାକୁ ବ୍ରିଟିଶ ସେନାଧକ୍ଷ ଲର୍ଡ଼ କାମ୍ପବେଲଙ୍କୁ ନିର୍ଦ୍ଦେଶ ଦେଇଥିଲେ । କିନ୍ତୁ ମିଶନାରୀମାନେ ପୁରୀରେ ନିର୍ଦ୍ୱନ୍ଦ୍ୱରେ ଧର୍ମ ପ୍ରଚାର କରିଛନ୍ତି । ୧୮୦୭ ମସିହାରେ ଡାକ୍ତର ବୁକାନନ୍ ଓଡ଼ିଶାରେ ଖ୍ରୀଷ୍ଟଧର୍ମ ପ୍ରଚାର ପାଇଁ ନେତୃତ୍ୱ ନେଇଥିଲେ । ୧୮୧ ମସିହାରେ କୃଷ୍ଣପାଲ, ଯେ ପରେ ଜନ୍ ପିଟର ନାମରେ ପରିଚିତ ହୋଇଥିଲେ ସେ ବାଲେଶ୍ୱରକୁ ଆସି ପ୍ରଥମେ ଖ୍ରୀଷ୍ଟଧର୍ମ ପ୍ରଚାର କରିଥିଲେ । ୧୮୨୨ ମସିହାରେ ଜନ୍ ପେଗସ ଓ ମିଃ ବାମ୍ପଟନ୍ ଶ୍ରୀରାମପୁରରୁ ଖ୍ରୀଷ୍ଟଧର୍ମ ପ୍ରଚାର ଉଦ୍ଦେଶ୍ୟରେ କଟକ ଆସିଥିଲେ ଓ ପରେ ପରେ ଅନ୍ୟାନ୍ୟ ମିଶନାରୀଙ୍କ ମଧ୍ୟରେ ସଟନ୍, ୱିଲିୟମ୍ ଲେସି, ବ୍ରୁକ୍ସ, ନୁପର, ଜନ୍ ବକ୍‌ଲେ, ଉଇଲିୟମ୍ ମିଲର, ମିଃ ଫିଲିପସ୍ ଓ ଷ୍ଟୁବିନସ ପ୍ରଭୃତି ପ୍ରଧାନ । ସଟନ୍ ସାହେବ ମୟୂରଭଞ୍ଜ ରାଜାଙ୍କୁ କେତେକ ଇଂରାଜୀ ଓ ଓଡ଼ିଆ ଟେଷ୍ଟମେଣ୍ଟ ଉପହାର ପ୍ରଦାନ କରି ତାଙ୍କଠାରୁ ତାଙ୍କ ରାଜ୍ୟରେ ଖ୍ରୀଷ୍ଟଧର୍ମ ପ୍ରଚାରର ଅନୁମତି ପାଇଥିବାର ବିବରଣୀ ରହିଛି ।

ତତ୍କାଳୀନ ମିଶନାରୀମାନଙ୍କ ମଧ୍ୟରେ ଡକ୍ଟର ଆମସ୍ ସଟନ୍ ସେ ସମୟର ମିଶନାରୀମାନଙ୍କ ମଧ୍ୟରେ ଓଡ଼ିଆ ଭାଷା ଓ ସାହିତ୍ୟରେ ବିଶେଷ ଦକ୍ଷତା ଅର୍ଜ୍ଜନ କରିଥିଲେ । ସେ କାଳରେ ସାହେବଙ୍କ ଓଡ଼ିଆ ବାଇବେଲ ସଂଶୋଧନ କରିବା ସହିତ ଓଡ଼ିଆରେ ତିନିଖଣ୍ଡି ବିରାଟ ଅଭିଧାନ, ସ୍ୱର୍ଗୀୟ ଯାତ୍ରୀର ବୃତ୍ତାନ୍ତ ( Piligrim's Progress), ଓଡ଼ିଶାର ଇତିହାସ, ଓଡ଼ିଆ ବ୍ୟାକରଣ, ପଦାର୍ଥ ବିଦ୍ୟାସାର ପ୍ରଭୃତି ପ୍ରଧାନ ।

ରେଭେରେଣ୍ଡ ଚାର୍ଲସ ଲେସିଙ୍କର ଓଡ଼ିଆ ଭାଷା ସାହିତ୍ୟରେ ମଧ୍ୟ ଯଥେଷ୍ଟ ବ୍ୟୁତ୍ପତ୍ତି ଥିଲା । ତାଙ୍କର ଅନୁବାଦ ପୁସ୍ତକ 'ଧର୍ମପୁଞ୍ଜ' । ଲେସି ସାହେବ ପ୍ରଥମ ଓଡ଼ିଆ ପତ୍ରିକା 'ଜ୍ଞାନାରୁଣ' ପ୍ରକାଶ ପରେ ଆଲୋଚ୍ୟ 'ପ୍ରବୋଧ ଚନ୍ଦ୍ରିକା' ପ୍ରକାଶ କରିଥିଲେ । 'ପ୍ରବୋଧ ଚନ୍ଦ୍ରିକା'ର ପ୍ରକାଶ ପରେ ୧୮୬୧ ମସିହାରେ ଖ୍ରୀଷ୍ଟିୟାନ ଭର୍ଣ୍ଣାକୁଲାର ଲିଟରେଚର ସୋସାଇଟି ୧୮୬୧ ମସିହାରେ 'ଅରୁଣୋଦୟ' ନାମକ ମାସିକ ଓଡ଼ିଆ ପତ୍ରିକା ପ୍ରକାଶ କରିଥିଲେ । ଏହି ପତ୍ରିକାଟି ମାତ୍ର ତିନି ବର୍ଷ ଜୀବିତ ଥିଲା । ବଙ୍ଗୀୟ ସାହିତ୍ୟ ସମାଜ ପ୍ରକାଶିତ 'ବାଂଲା ସାମୟିକ ପତ୍ର' ୨ୟ ଖଣ୍ଡରେ ଓଡ଼ିଆ ପତ୍ରିକା ସମ୍ବନ୍ଧୀୟ ସଂକ୍ଷିପ୍ତ ଟିପ୍ପଣୀରେ ଲେଖାଯାଇଛି, "ଓଡ଼ିଆ ଭାଷାର ମୁଦ୍ରିତ ପ୍ରଥମ ସାମୟିକ ପତ୍ର 'ଜ୍ଞାନାରୁଣ' । ଏହା ଏକ ଅଳ୍ପାୟୁ ମାସିକ ପତ୍ର ।

୧୮୪୯ ସାଲରେ ରେଭେରେଣ୍ଡ ସି. ଲେସିଙ୍କ ସଂପାଦନାରେ ଓଡ଼ିଶାରୁ ଏହା ପ୍ରକାଶିତ ହୋଇଥିଲା । ଏହାପରେ ୧୮୬୧ ମସିହାରେ 'ଖ୍ରୀଷ୍ଟାନ୍ ଭର୍ଣ୍ଣାକୁଲାର ଲିଟରେଚର ସୋସାଇଟି' 'ଅରୁଣୋଦୟ' ନାମରେ ଅନ୍ୟ ଏକ ମାସିକ ପତ୍ର ପ୍ରକାଶ କଲେ । ଏହା ତିନ ବର୍ଷ ମାତ୍ର ଜୀବିତ ଥିଲା ।'' (ପୃ-୪୬ ଏଥିରୁ ଜଣାଯାଏ ଯେ 'ପ୍ରବୋଧ ଚନ୍ଦ୍ରିକା'ର ନାମ ବିସ୍ମୃତ ହୋଇଯାଇଛି । ସମସ୍ତ କ୍ରମେ ଏହା ଆବିଷ୍କୃତ ହୋଇପାରିଛି । ଏହି ପତ୍ରିକାଟି ଯେ ସେ ସମୟ ଓଡ଼ିଶାର ଯଥାର୍ଥ ଓଡ଼ିଆ ସଂସ୍କୃତି ଓ ସାହିତ୍ୟ ପତ୍ରିକା କହିଲେ ଅତ୍ୟୁକ୍ତି ହେବ ନାହିଁ ।

## ମିଶନାରୀମାନଙ୍କ ଉଦ୍ୟମରେ ପ୍ରକାଶିତ ପୁସ୍ତକ

ଓଡ଼ିଆ ଭାଷାରେ ପ୍ରଥମ କରି ବାଇବେଲର ଅନୁବାଦ ପ୍ରକାଶ ପାଇଲା ୧୮୧୧ ମସିହାରେ । ଏହି ନଉ ଟେଷ୍ଟାମେଣ୍ଟର ଓଡ଼ିଆ ଅନୁବାଦକ ଥିଲେ, ଡକ୍ଟର କାରେ ଓ ପୁରୁଷୋତ୍ତମ ପଣ୍ଡିତ । ଫୋର୍ଟ ଉଇଲିୟମ୍ କଲେଜରେ ପୁସ୍ତକର ପାଣ୍ଡୁଲିପି ପ୍ରସ୍ତୁତ ହୋଇ ଛପା ନିମିତ୍ତ ଶ୍ରୀରାମପୁର ପ୍ରେସ୍‌କୁ ପଠାଯାଇଥିଲା । ପରବର୍ତ୍ତୀ ସମୟରେ ସେଠାରେ ଅନ୍ୟାନ୍ୟ ଓଡ଼ିଆ ବାଇବେଲ ଓ ଓଡ଼ିଆ ଗ୍ରନ୍ଥ ମୁଦ୍ରିତ ହେବାକୁ ଲାଗିଲା ।

ଖ୍ରୀ: ୧୮୧୧—ଖ୍ରୀ: ୧୮୪୩ ମଧ୍ୟରେ ଅନେକଗୁଡ଼ିଏ ଓଡ଼ିଆ ଗ୍ରନ୍ଥ ଛପା ଯାଇଥିଲା । ତନ୍ମଧ୍ୟରେ ମୁଖ୍ୟ ହେଉଛି କେତେଗୁଡ଼ିଏ ବାଇବେଲର ଓଡ଼ିଆ ଅନୁବାଦ । ୧୮୪୧ ୪୩ ମଧ୍ୟରେ ଆମସ୍ ସଟନ୍ (Amos Sutton) ଙ୍କର 'ଉତ୍କଳ ଭାଷାର୍ଥାଭିଧାନ' ବା 'Oriya Dictionary with Oriya Synonyms' ହେଉଛି ଏକ ବିଶିଷ୍ଟ କୃତି । ସଟନ୍ ସାହେବ ଭୁବନାନନ୍ଦ ନ୍ୟାୟାଳଙ୍କାରଙ୍କ ସହାୟତାରେ ଏହି ଉପାଦେୟ ଓଡ଼ିଆ ଅଭିଧାନ ପ୍ରକାଶ କରିଥିଲେ । * ଓଡ଼ିଆ ମିଶନ ପ୍ରେସ୍‌ରୁ ପ୍ରଥମ ଖଣ୍ଡ ୧୮୪୧ ଓ ପରବର୍ତ୍ତୀ ଦୁଇଖଣ୍ଡ ୧୮୪୩ ମସିହାରେ ପ୍ରକାଶିତ ହୋଇଥିଲା । ୧୮୨୪ରେ କଟକ ସ୍କୁଲ ମିଶନାରୀମାନଙ୍କଦ୍ୱାରା ସ୍ଥାପିତ ହେବା ପରେ ୧୮୭୦ ବେନକ୍ସ ନାହିଁର

---

* Early Oriya Lcexicons—Their importance—Dr. B. Mohanty, Bharati—Utkal University Journal Vol—III, 1969.

ଓଡ଼ିଆ ବିଭାଗ ନିମିତ୍ତ ଅନେକଗୁଡ଼ିଏ ଓଡ଼ିଆ ପାଠ୍ୟ ପୁସ୍ତକ ପ୍ରକାଶ ପାଇ ଯାଇଥିଲା । ତନ୍ମଧ୍ୟରେ (୧) ପ୍ରାକୃତିକ ଦର୍ଶନ (Natural Philosophy) (୨) ଓଡ଼ିଆ ବର୍ଣ୍ଣ ପରିଚୟ (୩) ଓଡ଼ିଆ ନୀତି କଥା (୪) ଓଡ଼ିଆ ଗଣିତ (୫) ଗୀତ ଗୋବିନ୍ଦ (୬) ବତିଶ ସିଂହାସନ (୭) ମିତ୍ର ଲାଭ (୮) ଓଡ଼ିଶା ଭୂଗୋଳ (୯) ଓଡ଼ିଶା ଇତିହାସ ଉଲ୍ଲେଖଯୋଗ୍ୟ । ଏଥିମଧ୍ୟରୁ ପ୍ରାକୃତିକ ଦର୍ଶନ କଲିକତା ସ୍କୁଲ ବୁକ୍ ସୋସାଇଟି, ମିତ୍ରଲାଭ ପୁରୀ ସ୍କୁଲ କମିଟି ବ୍ୟତୀତ ଅନ୍ୟ ସବୁ ଗ୍ରନ୍ଥ କଟକରେ ଛପା ଯାଇଥିଲା । ସେ କାଳର ଓଡ଼ିଶାରେ ପାଶ୍ଚାତ୍ୟ ଶିକ୍ଷା ଓ ସଂସ୍କୃତ ପ୍ରଚାର କ୍ଷେତ୍ରରେ ସଟନ୍ ଥିଲେ ଏକ ପ୍ରବୀଣ ବିଦେଶୀ ପଣ୍ଡିତ । ୧୮୪୨—୪୩ ଶିକ୍ଷା ବିଭାଗର ରିପୋର୍ଟରେ କୁହାଯାଇଛି ଯେ ଓଡ଼ିଆ ଭାଷାରେ ବିଶେଷ ବ୍ୟୁତ୍ପତ୍ତି ଲାଭ କରିଥିବା ଏ. ସଟନ୍ ଓ ପଣ୍ଡିତ ବିଶ୍ୱମ୍ଭର ବିଦ୍ୟାଭୂଷଣଙ୍କୁ (ସରକାରୀ ସ୍କୁଲର ହେଡ୍ ପଣ୍ଡିତ) ଓଡ଼ିଆ ଭାଷାରେ ବିଭିନ୍ନ ପାଠ୍ୟପୁସ୍ତକ ଓ ଅନ୍ୟାନ୍ୟ ସାହିତ୍ୟିକ ପୁସ୍ତକ ରଚନା କରିବା ପାଇଁ ଅନୁରୋଧ କରାଗଲା । ଏହା ସହିତ ଷ୍ଟାର୍ଲିଂଙ୍କର ଓଡ଼ିଶା (କଟକ) ଇତିହାସ (୧୮୨୨) ର ଅନୁସରଣରେ ସଟନ୍ ସାହେବ ପ୍ରଥମ କରି ଲେଖିଲେ ଓଡ଼ିଶାର ଇତିହାସ ଓ ତାହାର ପୃଷ୍ଠା ସଂଖ୍ୟା ଥିଲା ୯୦ । ଏହି ସମୟରେ ଡକ୍ଟର ପିଅରସନଙ୍କର ବାକ୍ୟ ବୋଲି (Idiomatic exercises) ଅନ୍ୟ ଏକ ବିଶିଷ୍ଟ କୃତି । ଏହି ସମୟର ଆଧୁନିକ ଓଡ଼ିଆ ସାହିତ୍ୟର ଇତିହାସ ଅତ୍ୟନ୍ତ ବୈଚିତ୍ର୍ୟପୂର୍ଣ୍ଣ । ସେ ସମୟର ଆଧୁନିକ ଓଡ଼ିଆ ସାହିତ୍ୟ ସୃଷ୍ଟିରେ ମିଶନାରୀମାନଙ୍କର ଦାନ ଅତୁଳନୀୟ ଓ ଏହି ସାହିତ୍ୟ ବଙ୍ଗଳା ଭାଷାଦ୍ୱାରା ବିଶେଷ ଭାବରେ ପ୍ରଭାବିତ ହୋଇଛି ।

ଓଡ଼ିଶାରେ ଆଧୁନିକ ଶିକ୍ଷାର ଆରମ୍ଭରେ ଓଡ଼ିଆ ଭାଷା ଓ ସାହିତ୍ୟର ସ୍ୱରୂପ ଆମର ମୌଳିକ ରଚନାରୀତିକୁ ପ୍ରାୟ ଛାଡ଼ି ଦେଇଛି । ଅନ୍ୟ ଦିଗରେ ଓଡ଼ିଶାର ପୁରପଲ୍ଲୀରେ ଓଡ଼ିଆ ରୀତିରେ କବିମାନେ କାବ୍ୟ, କବିତା, ସଙ୍ଗୀତାଦି ସ୍ୱାଧୀନ ଭାବରେ ରଚନା କରୁଥିଲେ । ଆଧୁନିକ ଓଡ଼ିଆ ଶିକ୍ଷାରେ ପ୍ରବର୍ତ୍ତିତ ଏହି ନୂତନ ଗଦ୍ୟଶୈଳୀ ଯେତେ ବିକୃତ ହେଉନା କାହିଁକି, ତାହା ପରବର୍ତ୍ତୀ ଆଧୁନିକ ଓଡ଼ିଆ ଗଦ୍ୟକୁ ପ୍ରଭାବିତ କରିଛି । ଏହି ଅଦ୍ଭୁତ ପ୍ରାରମ୍ଭିକ ଓଡ଼ିଆ ଗଦ୍ୟ ରଚନାର କେତେକ ନମୁନା ପାଠକର କୌତୂହଳ ନିମିତ୍ତ ଦିଆଗଲା ।

### ୧୮୧୧ ଓଡ଼ିଆ ବାଇବେଲ—

"ଯେଉଁ ସମୟରେ ବିଚାରକର୍ତ୍ତାମାନେ ରାଜ୍ୟକଲେ ସେ ସମୟରେ ଦେଶରେ ଅକାଳ ଥିଲା । ତହିଁରେ—ଏକ ମନୁଷ ଆପଣ ଭାର୍ଯ୍ୟା ଓ ଦୁଇ

ପୁତ୍ରକୁ ସଙ୍ଗେ କରି ମୋଆବ ଦେଶରେ ପ୍ରବାସ କରିବାକୁ ଗଲା । ସେ ମନୁଷ୍ୟର ନାମ ଆଲିମଲକ ତାହାର ଭାର୍ଯ୍ୟାର ନାମ ନୟାମୀ ଓ ଦୁଇ ପୁତ୍ରର ନାମ ମହଲୋନ ଓ କିଲିଓନ ଏ ସମସ୍ତେ ବୀତଲେହମଯିହୁଦାହର ଆଫ୍ରାତୀୟମାନେ ଥିଲେ ପୁଣି ସେମାନେ ମୋଆବ ଦେଶରେ ଆସି ପ୍ରବାସ କଲେ ।''

[ଧର୍ମ ପୁସ୍ତକ—୧୮୧୧—ପ୍ରଥମ ଭାଗ ପୃ ୧୭୩]

ମୋହନ ପ୍ରସାଦ ଠାକୁରଙ୍କ ଓଡ଼ିଆ ଇଂରାଜୀ ଅଭିଧାନ (୧୮୧୧) (Vocabulary Ooriya and English by M. P. Takoor, Asst. Librarian of Fort William, Serampore, Cal. July, 1811.)

ଈଶ୍ୱର Eeshworo—God

ଈଶ୍ୱରତ୍ୱ eshworottyo—God head

ଧର୍ମାତ୍ମା Dhormatma—Holy Ghost

ଏହି ପ୍ରଥମ ଛାପା ଓଡ଼ିଆ ଅଭିଧାନରେ ଲିପିଗତ ଅଶୁଦ୍ଧି ପୂର୍ଣ୍ଣମାତ୍ରାରେ ରହିଅଛି ।

**ପ୍ରବୋଧ ଚନ୍ଦ୍ରିକା (୧୮୧୩) ପଣ୍ଡିତ ମୃତ୍ୟୁଞ୍ଜୟ ଶର୍ମା—**

"ସ୍ତ୍ରୀ କହିଲା ଗୁଡ଼ ହଇଲେଇ କ ବାଁଧା ହୟ । ତେଲ ନାଇ ଲୁନ ନାଇ ଚାଉଳ ନାଇ ତରକାରୀ ପାତ କଛୁଇ ନାଇ । ପତି କହିଲ ଆଜ କ ଘରେ କଛୁଇ ନାଇ ଦେଖି ଦେଖି ଖୁଦ କୁଣ୍ଡା ଯଦ କଛୁ ଥାକେ ତବେ ତାର ପିଠେକର ଏଇ ଗୁଡ଼ ଦିୟା ଖାଇବ ।''

(କରିବେକ, ଆନଲେକ, ମାଉଗ, କହିଲେକ, ଦିଲେକ, ଖୁଦକୁଣ୍ଡା ପ୍ରଭୃତି ବଙ୍ଗଳା ଅପେକ୍ଷା ଓଡ଼ିଆରେ ପ୍ରଚଳିତ ଶବ୍ଦ) ["ମୃତ୍ୟୁଞ୍ଜୟ ଓଡ଼ିଆ ହେବାରୁ ତାଙ୍କ ଲେଖାରେ ବହୁ ଓଡ଼ିଆ ଶବ୍ଦ ବ୍ୟବହୃତ ହୋଇଅଛି ।'']

ପଦାର୍ଥ ବିଦ୍ୟାସାର (୧୮୪୦) ଅର୍ଥାତ୍ ଭୂଗୋଳ ଓ ଜ୍ୟୋତିଷ ବିଦ୍ୟା ୧ମ ପୁସ୍ତକ (Calcutta School Book Society, Baptist Mission Press—1840)

ଶିଷ୍ୟ :—ଏହି ଦେଶସ୍ଥ ଲୋକର ଧନ ପୂର୍ବରୁ ଏତେ ବୃଦ୍ଧି ହେଉଛି କିପାଇଁ ?

ଗୁରୁ :—କାରଣ ଏହି ଯେ ପୂର୍ବ ରାଜାମାନଙ୍କ ଅମଲରେ ସେମାନେ ପ୍ରଜାମାନଙ୍କର ଉପରେ ନାନା ଲୁଟ୍ ଉପଦ୍ରବ ଇତ୍ୟାଦି ଅନେକ କରୁଥିଲେ ସେ ସକାଶରୁ ପ୍ରାୟ କାହାର ଧନ ସ୍ଥିର ନ ଥିଲା । ପୁଣି ଏହି ସମୟରେ ଇଂରାଜର ଅମଲରେ ସେ ସବୁ ଉତ୍ପାତ ନାହିଁ । ଏ ନିମନ୍ତେ ଦିନକୁଦିନ ଲୋକମାନଙ୍କର ଧନ ବଢ଼ୁଛି ।

ଓଡ଼ିଆ ବ୍ୟାକରଣ— (୧୮୪୭-୪୮) (ବଙ୍ଗଳାରେ ଲେଖାଯାଇଥିବା ପିଅରସନଙ୍କ ବ୍ୟାକରଣ ଅନୁସରଣରେ)

ଓଡ଼ିଶା ମିଶନରେ ଯୋଗଦେବା ପୂର୍ବରୁ ପାଦ୍ରୀମାନେ ଏହି ପୁସ୍ତକ ପଢ଼ି ଓଡ଼ିଆରେ ଦକ୍ଷତା ଅର୍ଜ୍ଜନ କରିଥିବା ବିଷୟ କୁହାଯାଇଛି । କିନ୍ତୁ ଦେଖିବାକୁ ଗଲେ ଇଂରାଜୀ ବାକ୍ୟର ଓଡ଼ିଆ ଅନୁବାଦ ବିକୃତ ଓ ହାସ୍ୟୋଦ୍ଦୀପକ ।

"ସେ ଭୂଗୋଲ ବିଦ୍ୟା ବିଷୟରେ ଏକ କିତାବ ରଚିଥିଲେ ।" He spoke to us in a kind manner. ଅର୍ଥାତ୍ ସେ ଆମ୍ଭମାନଙ୍କୁ ପ୍ରେମମତେ କହିଲା, ପୁଣି "She is a dutiful and affectionate hild." ଅର୍ଥାତ୍ ସେ ଟୋକୀ ବଡ଼ ବାଧ ଓ ପ୍ରେମି ପିଲା ଅଛି ।"

**ହିତୋପଦେଶ** (୧୮୪୭-୪୮)

ଏ କଥା ଶୁଣି ହିରଣ୍ୟକ ହୃଷ୍ଟଚିତ୍ତ ଓ ପୁଲକିତ ହୋଇ କହିଲା, "ସାଧୁ ମିତ୍ର ! ସାଧୁ, ଏତାଦୃଶ ଆଶ୍ରିତ ଲୋକଙ୍କ ସ୍ନେହ ହେତୁରୁ ତୁମ୍ଭେ ତ୍ରୈଲୋକ୍ୟ ପ୍ରଭୁ ହେବା ଯୋଗ୍ୟ । ଇହା କହି ହିରଣ୍ୟକ ସମସ୍ତ କପୋତର ପାଶ ଛେଦନ କରି ଆଉ ସେମାନଙ୍କୁ ସମ୍ମାନ କରି କହିଲା, ହେ ସଖେ ! ଚିତ୍ରଗ୍ରୀବ, ଏହି ଜାଲରେ ବନ୍ଧ ହେବାରୁ ଦୋଷ ଆଶଙ୍କା କରି ଆପଣାକୁ ଅବଜ୍ଞା କରିବାର ଉଚିତ ନୁହେଁ ।" ପୃ (୧୯)

ଏହି କେତେକ ଉଦ୍ଧୃତିରୁ ଆମେ ଦେଖିବା ଯେ କ୍ରମେ ବଙ୍ଗଳା ଭାଷା ପ୍ରଭାବିତ ବିକୃତ ଓଡ଼ିଆ ଭାଷା କ୍ରମେ ଆଧୁନିକ ଓଡ଼ିଆ ଗଦ୍ୟର ରୂପ ଧାରଣ କରିଅଛି—କବିତାରେ ମଧ୍ୟ ସେହିପରି ଆଧୁନିକତାର ଅଭିବ୍ୟକ୍ତି ଫୁଟି ଉଠିଛି । ଯେପରି 'ଓଡ଼ିଆ ବ୍ୟାକରଣ'ରେ 'ପଣ୍ଡିତ ଓ ଚଷା' କବିତାର କେତେକ ପଂକ୍ତି ହେଉଛି—

"ପଣ୍ଡିତ ଠାରେ କଥା ପଗୁରଇ
ମାକଡ଼ ମାଇଲେ କି ଦୋଷ ହୋଇ ।

ପଣ୍ଡିତ କହିଲେ ଶାସ୍ତ୍ରକୁ ଶୁଣିୀ
ସେ ପାପ ତୁଳନା ପାପତ ନାହିଁ ।

କଥା କହିବେଧିଲ ଏ କି ପଣ୍ଡିତ
ମାକଡ଼ ମାଇଲେ ତୁମ୍ଭ ପୁତ୍ରତ ।

ଶୁଣି ପଣ୍ଡିତ କହେ ତଡ଼ବଡ଼
ମାଙ୍କଡ଼ ମାଇଲେ ହୋଇଯେ ଧୋକଡ଼ ।"

ଏହାର ତାତ୍ପର୍ଯ୍ୟ—'ଆପଣାର ସଦୃଶ ସବୁର ସୁଖ ଦୁଃଖ ଯେ ଦେଖଇ ସେ ପଣ୍ଡିତ'—ଏ ସବୁ ରଚନାରେ ଅଗାଧ ପାଣ୍ଡିତ୍ୟ ନାହିଁ, କିନ୍ତୁ ସରଳ ଓଡ଼ିଆ ଭାଷାରେ ଓଡ଼ିଆ ଗଦ୍ୟ ଓ ପଦ୍ୟର ଅରୁଣୋଦୟ ଘଟିଛି ଏହି ମିଶନାରୀ ସାହିତ୍ୟରେ । ବହୁ ମିଶନାରୀ ଏହି ସମୟରେ ବହୁ ଓଡ଼ିଆ ଗ୍ରନ୍ଥ ରଚନା କରିଥିଲେ ଓ ସେଗୁଡ଼ିକ ପ୍ରକାଶ ପାଇଛି । କିନ୍ତୁ ୧୮୦୫-୧୮୫୦ ମଧ୍ୟରେ ରେଭେରେଣ୍ଡ ଆମସ ସଟନଙ୍କର ଓଡ଼ିଆ ଭାଷା ଓ ସାହିତ୍ୟକୁ ଦାନ ଅବିସ୍ମରଣୀୟ ହୋଇରହିବ । ସଟନଙ୍କର ବିଭିନ୍ନ ପୁସ୍ତକ ମଧ୍ୟରେ ତାଙ୍କର ଭାଷାର୍ଥଭିଧାନ, ଧର୍ମଗ୍ରନ୍ଥର ବିଭିନ୍ନ ଓଡ଼ିଆ ଅନୁବାଦ, ଶାରୀରିକ ରୋଗର ନିରାକରଣ ଉପାୟ (ନିବନ୍ଧ), ସ୍ୱର୍ଗୀୟ ଯାତ୍ରୀର ବୃତ୍ତାନ୍ତ (୧୮୩୮) ୧ମ ଭାଗ, ସଟନଙ୍କର ଓଡ଼ିଆ ବ୍ୟାକରଣ, ବତିଶ ସିଂହାସନ, ଗୀତଗୋବିନ୍ଦ, ଅମରକୋଷ, ଓଡ଼ିଶାର ଇତିହାସ, ନୀତିକଥା, ପଦାର୍ଥ ବିଦ୍ୟାସାର, ଭର୍ଣ୍ଣାକୁଲର କ୍ଲାସ୍‌ବୁକ୍ ଶଢ଼ର, A narrative of the mission to Orissa ୧୮୩୩ । ଏବଂ Orissa and its evangilation (1850 Boston) ଗ୍ରନ୍ଥ ପ୍ରଧାନ । ସଟନ୍ ସାହେବ ଓଡ଼ିଶାରେ ୮୨୫-୧୮୫୦ ମଧ୍ୟରେ ରହି ଓଡ଼ିଶାର ଶିକ୍ଷା ଓ ସାହିତ୍ୟକୁ ଯେଉଁ ବିରାଟ ଦାନ ଦେଇ ଯାଇଛନ୍ତି ସେଥିପାଇଁ ତାଙ୍କ ନିକଟରେ ଓଡ଼ିଆ ଜାତି ଚିରକୃତଜ୍ଞ ହୋଇ ରହିବ । ବ୍ରିଟିଶ ଶାସନ ଆରମ୍ଭରେ ଓଡ଼ିଶାରେ ପ୍ରାଦେଶିକ ଭାଷାର ଶିକ୍ଷା କିପରି ଗତି କରିଥିଲା ତାହାର ବିସ୍ତୃତ ଇତିହାସ 'Adam's Report on Vernacular Education' ଗ୍ରନ୍ଥ ସମୂହରେ ଲିପିବଦ୍ଧ ହୋଇଛି ଓ ସେ ସମସ୍ତ ବିବରଣୀରୁ ଏତିକି ଜଣାପଡ଼େ ଯେ ବଙ୍ଗଳା ଦେଶରେ ଦେଶୀୟ ଭାଷା ଶିକ୍ଷାର ଗତି ଯେପରି କ୍ଷିପ୍ର ବେଗରେ ଗତି କରିଥିଲା, ଓଡ଼ିଶାରେ ସେପରି ହୋଇନାହିଁ ।

## ପ୍ରବୋଧ ଚନ୍ଦ୍ରିକା (୧୮୫୬)

୧୮୫୦ ମସିହା ପରେ ଓଡ଼ିଆ ଭାଷା ଓ ସାହିତ୍ୟ କ୍ଷେତ୍ରରେ କ୍ରମେ ଅଗ୍ରଗତି ପରିଲକ୍ଷିତ ହୋଇଛି । ୧୮୫୬ ମସିହାରେ କଟକରୁ ପ୍ରକାଶିତ 'ପ୍ରବୋଧ ଚନ୍ଦ୍ରିକା' ଆଧୁନିକ ଓଡ଼ିଆ ଭାଷା ସାହିତ୍ୟ କ୍ଷେତ୍ରରେ ଏକ ନୂତନ ପଦକ୍ଷେପ । ପ୍ରବୋଧ-ଚନ୍ଦ୍ରିକାର ସମ୍ପାଦକ ଥିଲେ ଉଇଲିୟମ ଲେସି ସାହେବ ଓ ତାହା କଟକ ମିଶନ ପ୍ରେସରୁ ଶ୍ରୀଯୁକ୍ତ ଡବଲିଉ ବ୍ରୁକ୍‌ସ ସାହେବଙ୍କ ଦ୍ୱାରା ଛପା ହେଉଥିଲା । ପତ୍ରିକା "ପ୍ରବୋଧ ଚନ୍ଦ୍ରିକା ଏବଞ୍ଚ ମାସିକ ସମାଚାର ପତ୍ରିକା" ନାମରେ ପ୍ରକାଶ ପାଉଥିଲା ଓ ତାର ଆଦର୍ଶ ଥିଲା, "ବିଦ୍ୟାଦଦାତି ବିନୟଂ ବିନୟାଦ୍ୟାତି ପାତ୍ରତାଂ । ପାତ୍ରତ୍ୱାଦ୍ଧନମାପ୍ନୋତି ଧନାର୍ଦ୍ଧର୍ମଂ ତତଃ ସୁଖଂ" । ପ୍ରବୋଧ ଚନ୍ଦ୍ରିକା (କ) ସାହିତ୍ୟିକ ପତ୍ରିକା (ଖ) ସମାଚାର ପତ୍ରିକା (ଗ) ମାସିକ ପଞ୍ଜିକା ବା କାଲେଣ୍ଡର ରୂପେ କାର୍ଯ୍ୟ କରୁଥିଲା । ଏ ପତ୍ରିକା ମିଶନାରୀମାନଙ୍କ ତତ୍ତ୍ୱାବଧାନରେ ପ୍ରକାଶ ପାଉଥିଲେ ହେଁ ଏଥିରେ ଖ୍ରୀଷ୍ଟଧର୍ମ ପ୍ରଚାରର କୌଣସି ଗନ୍ଧ ନ ଥିଲା । ଫୋର୍ଟ ଉଇଲିୟମ କଲେଜର ତତ୍କାଳୀନ ପଣ୍ଡିତ ମୃତ୍ୟୁଞ୍ଜୟ ତର୍କାଲଙ୍କାରଙ୍କର ପ୍ରସିଦ୍ଧ 'ପ୍ରବୋଧ ଚନ୍ଦ୍ରିକା'ର ନାମ ଗ୍ରହଣ କରି ଏ ହେଲା ଓଡ଼ିଶାରେ ପ୍ରଥମ ସାହିତ୍ୟିକ ଓ ସମାଚାର ପତ୍ରିକା । ପ୍ରବୋଧ ଚନ୍ଦ୍ରିକା ବିଷୟରେ ପ୍ରଥମ ପତ୍ର ତାଙ୍କର ସମ୍ପାଦକୀୟରେ ସମ୍ପାଦକ ଲେଖିଛନ୍ତି । ତହିଁରୁ ସେତେବେଳେ ଓଡ଼ିଶାର ଶିକ୍ଷା, ସାହିତ୍ୟ ଓ ରାଜନୀତିକ ଅବସ୍ଥା କିପରି ଥିଲା, ତାହା ଜଣାଯାଏ । ଏହି ଦୁଷ୍ପ୍ରାପ୍ୟ ସମ୍ପାଦକୀୟରୁ କେତେଅଂଶ ନିମ୍ନରେ ଦିଆଗଲା ।

"ଓଡ଼ିଶା ନାମରେ ବିଖ୍ୟାତ ଏହି ଦେଶ ଉତ୍ତରରେ ସୁବର୍ଣ୍ଣରେଖା ନଦୀଠାରୁ ସମୁଦ୍ରକୂଳେ କୂଳେ ଦକ୍ଷିଣରେ ଚିଲିକା ଓ ପଞ୍ଜା ଦେଶ ପର୍ଯ୍ୟନ୍ତେ ନିର୍ଦ୍ଦିଷ୍ଟ ଅଛି । ତାହାର ପୂର୍ବସୀମା ବଙ୍ଗସାଗର ଏବଂ ପଶ୍ଚିମ ସୀମା ଗଡ଼ଜାତ । ପୂର୍ବକାଳରେ ଉତ୍କଳ ଦେଶର ସୀମା ଅଧିକ ପ୍ରଶସ୍ତ ଆଉ ରାଜମହେନ୍ଦ୍ରୀ ଓ ବିଜୟନଗର ଏ ଦୁହେଁ ଏ ଦେଶ ରାଜାମାନଙ୍କର ପ୍ରଧାନ ପ୍ରଧାନ ନଗର ମଧ୍ୟରେ ଗଣିତ ଥିଲେ । ଆଉ ଦକ୍ଷିଣରେ ଗୋଦାବରୀ ନଦୀ ପର୍ଯ୍ୟନ୍ତେ ରାଜ୍ୟର ଦକ୍ଷିଣ ସୀମା ବିସ୍ତୃତ ଥିଲା । ମାତ୍ର ଏ ପୁରାତନ ସୀମା ଛାଡ଼ି ଇଦାନୀଂ ଯେଉଁ ସୀମା ମଧ୍ୟରେ ନିର୍ଦ୍ଦିଷ୍ଟ ଅଛି ତଦୁପଲକ୍ଷରେ ଏ ଦେଶ ଅତି ବୃହତ୍ ତା ବିସ୍ତରଯୋଗ୍ୟ ଅଟେ । କେବଳ ମୁଗଲବନ୍ଦି ଭିତରେ ଲୋକସଂଖ୍ୟା ପନ୍ଦର ଲକ୍ଷରୁ ଅଧିକ ।

ଯଦ୍ୟପି ଅଳ୍ପ ବର୍ଷ ମଧ୍ୟରେ ସମୀପବର୍ତ୍ତୀ ବଙ୍ଗ ଦେଶରେ ବଙ୍ଗଳା ଭାଷା ଅତି ଯତ୍ନପୂର୍ବକ ସେ ଦେଶର ଅନେକ ବିଦ୍ୱାନ୍‌ମହାଶୟ କର୍ତ୍ତୃକ ପରିଷ୍କୃତ ଓ ସୁଶୋଭିତ ହୋଇଅଛି ପୁଣି ଦେଶୀୟ ଓ ଇଙ୍ଗରେଜୀ ବିଦ୍ୟା ଶିକ୍ଷାର୍ଥେ ଅନେକ ପାଠଶାଳା ଓ କଲେଜ ନିଯୁକ୍ତ କରାଯାଇଅଛି ଏବଂ ଗ୍ରନ୍ଥପାଯନ୍ତ୍ର ସ୍ଥାପିତ ହୋଇ-ଅଛି, ଅଥଚ ଅତୀତ ସପ୍ତତ୍ରିଂଶ ବର୍ଷ ମଧ୍ୟରେ ପ୍ରାୟ ଶଏ ଗୋଟା ଭିନ୍ନ ଭିନ୍ନ ସମାଚାରର ପତ୍ର ଆଉ ଏ ପ୍ରବୋଧ ଚନ୍ଦ୍ରିକା ତୁଲ୍ୟ ମାସିକ କିମ୍ବା ସାପ୍ତାହିକ ପୁସ୍ତକ ଆରମ୍ଭ ହୋଇ ଦେଶଯାକ ପ୍ରଚାର ହୋଇଅଛି, ପୁଣି ବିବିଧ ଜ୍ଞାନସୂଚକ ଅନେକ ପୁସ୍ତକ ମୁଦ୍ରିତ ହୋଇ ପ୍ରକାଶ ପାଇଅଛନ୍ତି, ତଥାପି ଏ ଉତ୍କଳ ଦେଶରେ ଏତାଦୃଶ ଅତ୍ୟାବଶ୍ୟକ ବିଷୟରେ ଅଳ୍ପମାତ୍ର ଉଦ୍‌ଯୋଗ ହୋଇଅଛି । ଏ ସକଳ ବିଷୟରେ ଏ ଦେଶୀୟ ଲୋକେ ଶିଥିଳ ଆଉ ନିଶ୍ଚେଷ୍ଟିତ । ଜ୍ଞାନଠାରୁ ଅଳ୍ପ ଧନ ସୁଦ୍ଧା ପ୍ରୟୁତର ବୋଧକରି ଯାହା ଦ୍ୱାରା ସେହି ଧନ ସର୍ବତ୍ର ପ୍ରଚୁର ରୂପେ ଉପାର୍ଜିତ ହୁଅଇ, ତାହା ଅନାଦର କରିଅଛନ୍ତି । ଅତଏବ ଫଳ ଦେଖ, ଏ ଦେଶ ସ୍ଥାପିତ ନାନା ସରକାରୀ କଚେରୀ ଇତ୍ୟାଦିରେ ବିଦେଶୀୟ ଅର୍ଥାତ୍ ବଙ୍ଗାଳୀ ଲୋକେ ପ୍ରାୟ ସବୁ ଉତ୍ତମ ଉତ୍ତମ ପଦ ପ୍ରାପ୍ତ ହୋଇଅଛନ୍ତି ।

ଏ ପ୍ରବୋଧ ଚନ୍ଦ୍ରିକା ପ୍ରତ୍ୟେକ ଦେଶୀୟ ମାସ ଆରମ୍ଭରେ ପ୍ରକାଶିତ ହେବ । ପ୍ରତ୍ୟେକ ଖଣ୍ଡରେ କୋଡ଼ିଏ କି ପଚିଶ ପୃଷ୍ଠା ଛପା ହେବ । ପ୍ରଥମରେ ଦେଶୀୟ ମହାକବିଙ୍କ ପୁରାତନ କୌଣସି ପଣ୍ଡିତ କର୍ତ୍ତୃକ ରଚିତ ଆଉ ଉତ୍ତମ ଶିକ୍ଷାଦାୟକ ଗ୍ରନ୍ଥ ନରୁବା ବଙ୍ଗଦେଶୀୟ ବିଦ୍ୱଜ୍ଜନଗଣ କର୍ତ୍ତୃକ ନାନା ସମୟରେ ଯେଉଁ ଉତ୍ତମ ଉତ୍ତମ ପୁସ୍ତକ ପ୍ରକାଶ ହୋଇଅଛି କିମ୍ବା ଆଗାମିରେ ହେବ ତନ୍ମଧ୍ୟରୁ କୌଣସି କୌଣସି ପୁସ୍ତକ ଆଦ୍ୟ ପ୍ରାନ୍ତ କ୍ରମେ କ୍ରମେ ଏ ପ୍ରବୋଧ ଚନ୍ଦ୍ରିକାରେ ପ୍ରକାଶ କରାଇବାର ମାନସ ଅଛି । ତଦ୍ଭିନ୍ନ ଅନ୍ୟ ଅନ୍ୟ ମନୋରଞ୍ଜକ ଆଉ ନୀତିଶିକ୍ଷାଦାୟକ ବୃତ୍ତାନ୍ତ କିମ୍ବା ବିଶିଷ୍ଟ ମହାତ୍ମାମାନଙ୍କ ଜୀବନ ବିବରଣ ଅଥବା ଶିଳ୍ପ ଇତ୍ୟାଦି ବିଦ୍ୟା ସମ୍ବନ୍ଧୀୟ ପ୍ରସଙ୍ଗ ପ୍ରକାଶ କରାଯିବ । ଶେଷରେ ଏ ଜିଲ୍ଲା ମଧ୍ୟରେ ଯେତେବେଳେ ଯେଉଁ ଘଟଣା ଶୁଣାଯାଏ ଏବଂ ଦେଶ ବିଦେଶର ଯେଉଁ ନାନା ମହଦାଶ୍ଚର୍ଯ୍ୟ ସମ୍ବାଦ ମିଳେ, ତନ୍ମଧ୍ୟର ସାରାଂଶ କଲିକତାଠାରୁ ପ୍ରାପ୍ତ କେତେକ ଇଙ୍ଗରେଜୀ ଓ ବଙ୍ଗଳା ଖବର କାଗଜରୁ ଅନୁବାଦିତ ହୋଇ ଏ ପ୍ରବୋଧ ଚନ୍ଦ୍ରିକାରେ ପ୍ରକାଶ ପାଇବ ପୁନର୍ବାର ପ୍ରତ୍ୟେକ ଖଣ୍ଡରେ ମାସିକ ପାଞ୍ଜି ଦେବାର ମାନସ ଅଛି । * * କୌଣସି ବିଶେଷ ଧର୍ମର ପ୍ରଚାର ଏ ପୁସ୍ତକର ଅଭିପ୍ରାୟ ନୁହଇ ଏ ସକାଶେ ତାହା ଆପଣା ଆପଣା ଗୃହରେ ଶ୍ରବଣ କରି ପାଠ କଲେ କାହାର ଇଷ୍ଟଧର୍ମ

ହାନ ହେବ ଏ ପ୍ରକାର ଶଙ୍କା କେହି ନ କରବେ । ଏ ପୁସ୍ତକର ବାର୍ଷିକ ଅର୍ଥାତ୍ ବାରଖଣ୍ଡର ମୂଲ୍ୟ ଏକାବେଳେକେ ଆଗରୁ ଦେଲେ କେବଳ ଦେଢ଼ ଟଙ୍କା ଦେବାକୁ ହେବ ।''

( ପ୍ରବୋଧ ଚନ୍ଦ୍ରିକା ୧୮୫୬, ୧ମ ସଂଖ୍ୟା—ପୃ ୧—୩ )

ଓଡ଼ିଆରେ ପ୍ରଥମ ପତ୍ରିକା' ଜ୍ଞାନାରୁଣ 'ଅଳ୍ପ ସମୟ ପ୍ରକାଶ ପରେ ବନ୍ଦ ହୋଇଯାଇଥିଲା ଓ 'ପ୍ରବୋଧ ଚନ୍ଦ୍ରିକା' ପ୍ରଥମ ସାହିତ୍ୟିକ ଓ ସମାଚାର ପତ୍ରିକା ରୂପେ ନିୟମିତ ଭାବରେ ତିନ ବର୍ଷ ପ୍ରକାଶ ପାଇଥିଲା । ପ୍ରକାଶିତ ବିଷୟଗୁଡ଼ିକର ଭାଷାରେ ବଙ୍ଗଳା ପ୍ରଭାବ ନାହିଁ । ଠିକ୍ ଆଧୁନିକ ଗଦ୍ୟ ଶୈଳୀ ଏଥିରେ ପ୍ରକାଶ ପାଇଛି । ପତ୍ରିକାର ପ୍ରଥମ ବର୍ଷରେ ମିତ୍ର ଲାଭର ଅନୁବାଦ ( କ୍ରମଶଃ ), ସୀତାଙ୍କ ବିବରଣୀ (କ୍ରମଶଃ ), କନ୍ଧ ଜାତି, ସାଲ୍ତାଲମାନଙ୍କ ସମାଚାର, ଜାଇଫଳୀ ଓ ଜାଇଫଳ ବିଷୟ, ପ୍ରୟାଗ, ରାଜା ଆଉ ରାଜପକ୍ଷୀ, ଧର୍ମ ବିଷୟ, ବାୟୁ ସେବନ ରକ୍ତ ଚଳିବା ବିଷୟ, ହାବସୀ ବିବରଣ, ହସ୍ତିର ବିବରଣ, କୁକ୍କୁର ଏବଂ ତାହାର ପ୍ରଭୁ ପ୍ରଭୃତି ବିଷୟ ସହିତ ମାସିକ ସମ୍ବାଦ ଓ ପଞ୍ଜିକା ସ୍ଥାନ ଲାଭ କରିଅଛି । ୧୮୫୭ର ପ୍ରବୋଧ ଚନ୍ଦ୍ରିକାରେ ହିତୋପଦେଶ (ଅନୁବାଦ), ଶାକର ଶର୍କରା ଉଦ୍ଭବ, ଆଳସ୍ୟ, ଶୃଗାଳ, ରୁଶୀୟ ଦେଶର ରାଜଦଣ୍ଡ, ଚସା, ନକୁଳ, ଶ୍ୱେତହସ୍ତି ବିଷୟ, କର୍ପୂର ବିବରଣ, ଭାରତ ବର୍ଷୀୟ ବିଷ ବୃକ୍ଷ, ମେଘ ବିଷୟ, ବାଷ୍ପଦ୍ୱାରା ନୌକା ଚଳାଇବା ବିଷୟ, ସିଂହଳ ଦ୍ୱୀପରେ ମୁକ୍ତାନ୍ୱେଷଣ, ସିନ୍ଧୁଘୋଟକ, ଛାପାକର୍ମ ଉତ୍ପତ୍ତିର ବିଷୟ, ବିଦ୍ୟୁତ ଓ ବଜ୍ର ବିଷୟ ପ୍ରଭୃତି ସୁନ୍ଦର ସୁନ୍ଦର ବୈଜ୍ଞାନିକ, ସାହିତ୍ୟିକ ବିଷୟର ଅନୁବାଦ ଓ ଆଲୋଚନା ପ୍ରକାଶ ପାଇଛି । ଦେଖିବାର କଥା ଯେ ଏଥିରେ ଗୋଟିଏ ହେଲେ କବିତା ପ୍ରକାଶ ପାଇନାହିଁ । ଏହା ଥିଲା ପ୍ରଥମ ସାହିତ୍ୟିକ ଓ ସମାଚାରମୂଳକ ଓଡ଼ିଆ ପତ୍ରିକା ।

ଏହି ପତ୍ରିକାରେ ବିଦେଶ ସମ୍ବାଦ, ଇଂଲଣ୍ଡ ଦେଶର ସମ୍ବାଦ, ସର୍ବଭାରତୀୟ ଓ ଓଡ଼ିଶାର ସମ୍ବାଦ ଯଥାବିଧି ପ୍ରକାଶ ପାଇଛି—ସଂସ୍କାରମୂଳକ ସମ୍ବାଦ ମଧ୍ୟରେ ଇଂରାଜୀ ଶିକ୍ଷା ଓ ବିଧବା ବିବାହ ସମ୍ବାଦ ପ୍ରଧାନ ସ୍ଥାନ ଲାଭ କରିଛି । ଖ୍ରୀ: ୧୮୫୭ ହେଉଛି ଭାରତରେ ରକ୍ତାକ୍ତ ସିପାହି ବିଦ୍ରୋହର ସମୟ ଓ ସେହି ବିଦ୍ରୋହ ସମ୍ବାଦ ଗୁଡ଼ିକ ମଧ୍ୟରେ ସମ୍ବଲପୁର ସିପାହି ବିଦ୍ରୋହର ସମ୍ବାଦ ଉଜ୍ଜ୍ୱଳ ହୋଇ ଉଠିଛି । ଯେପରି, ''ସମ୍ବଲପୁରର ଆସିଷ୍ଟାଣ୍ଟ କମିଶନର ଶ୍ରୀଯୁକ୍ତ କାପ୍ତାନ ଲି ସାହେବ ଲେଖିବନ୍ତି କି, ସମ୍ବଲପୁରର ରାଜବଂଶୀୟ,

'ସୁନ୍ଦର ସା' ନାମକ ଜଣେ ବ୍ୟକ୍ତି ହଜାରୀବାଗରେ କଏଦ ଥିଲା ତାକୁ ବିଦ୍ରୋହୀ ସୈନ୍ୟମାନେ ମୁକ୍ତ କରିଦେବାରୁ ସେ ସମ୍ବଲପୁରଠାରେ ପହଞ୍ଚି ରାଜବିଦ୍ରୋହା-ଚରଣରେ ପ୍ରବୃତ୍ତ ହେବାର ସମ୍ଭାବନା ଅଛି । ଅତଏବ କଟକଠାରୁ ତିନ କମ୍ପାନି ଓ ନାଗପୁରଠାରୁ ତିନ କମ୍ପାନି ସୈନ୍ୟ ସମ୍ବଲପୁରଠାକୁ ଯିବାର ଆଜ୍ଞା ହୋଇଅଛି, କଟକ ଜିଲ୍ଲା ମଧ୍ୟରେ ଯେଉଁ ରାଜା ଓ ଜମିଦାର ପ୍ରଭୃତିଙ୍କର ହସ୍ତୀ ଅଛନ୍ତି ସେମାନଙ୍କୁ ଆଜ୍ଞା ହୋଇଅଛି କି, ଯେଉଁ ସ୍ଥାନକୁ ଯେଉଁ ପଲ୍‌ଟଣ ଯିବ ସେହି ସ୍ଥାନକୁ ସେହି ପଲ୍‌ଟଣର ସାମଗ୍ରୀ ବୋହି ନେବା ଲାଗି ରାଜା ଓ ଜମିଦାରମାନେ ଆପଣା ଆପଣା ହସ୍ତୀମାନଙ୍କୁ ମଦଦ ଦେବେ ।''

( ୧୮୫୭, ଅକ୍ଟୋବର ସଂଖ୍ୟା—ପୃ ୪୧୦—୪୧୨ )

ସୁତରାଂ ଏଥିରୁ ଜଣାଯାଏ ଯେ ଊନବିଂଶ ଶତାବ୍ଦୀର ଓଡ଼ିଆ ଭାଷା, ସାହିତ୍ୟ ଓ ସାମ୍ବାଦିକତା କ୍ଷେତ୍ରରେ 'ପ୍ରବୋଧ ଚନ୍ଦ୍ରିକା'ର ଅତୁଳନୀୟ ଦାନ ରହିଛି—ସେକାଳର ଓଡ଼ିଶାର ଶିକ୍ଷା ସଂସ୍କୃତି କ୍ଷେତ୍ରରେ ପ୍ରବୋଧ ଚନ୍ଦ୍ରିକା ଥିଲା ଅନ୍ଧାର ମଳକରେ ଏକ ଅତ୍ୟୁଜ୍ଜ୍ୱଳ ସାହିତ୍ୟାଲୋକ । ଆଧୁନିକ ଓଡ଼ିଆ ସାହିତ୍ୟର ଉଷା କାଳରେ 'ପ୍ରବୋଧ ଚନ୍ଦ୍ରିକା'ର ଆତ୍ମପ୍ରକାଶ ଏକ ଗୁରୁତ୍ୱପୂର୍ଣ୍ଣ ଐତିହାସିକ ବିଷୟ ।

## ଊନବିଂଶ ଶତକର ଓଡ଼ିଆ ପତ୍ରପତ୍ରିକା

ଓଡ଼ିଶାର ପତ୍ରପତ୍ରିକାର ଇତିହାସରେ କୁଜବର ପତ୍ର ଖ୍ରୀ: ୧୮୪୦ରେ ସୁନ୍ଦର ବାବାଜି ବା ସାଧୁସୁନ୍ଦର ଦାସ ପ୍ରକାଶ କରିଥିଲେ । ଖ୍ରୀ: ୧୮୬୭ରେ ମାଧୁସୁନ୍ଦରଙ୍କ ସହିତ ସଟନଙ୍କର ସାକ୍ଷାତ ହୋଇଥିଲା । ଚୌଦ୍ୱାର ନିକଟବର୍ତ୍ତୀ କୁଜବର ମଠର ସାଧୁସୁନ୍ଦର ଦାସ ୧୭୭୫ରେ ଜନ୍ମ ହୋଇଥିଲେ । ରେଭେରେଣ୍ଡ ସି. ଲେସିଙ୍କର 'ଜ୍ଞାନାରୁଣ' (୧୮୪୯) ହେଉଛି ଦ୍ୱିତୀୟ ମିଶନାରୀ ପତ୍ରିକା । ଜ୍ଞାନାରୁଣ ପ୍ରକାଶ ପାଇ ସାଙ୍ଗେ ସାଙ୍ଗେ ବନ୍ଦ ହୋଇଗଲା । ହାତଲେଖା 'କୁଜବର ପତ୍ର' ବା 'ଜ୍ଞାନାରୁଣ' କେଉଁଠାରେ ଦେଖିବାକୁ ମିଳେ ନାହିଁ ।

ପ୍ରକୃତରେ ଛାପା ସାମୟିକ ସାହିତ୍ୟର ଆରମ୍ଭ ହୁଏ ୧୮୫୫—୫୬ ମସିହାରେ ଓ ଏହାର ସ୍ରଷ୍ଟା ହେଉଛନ୍ତି ମିଶନାରୀ ଉଇଲିୟମ୍ ଲେସି । ସେ ୧୮୪୯ ମସିହାରେ ପ୍ରଥମେ 'ଜ୍ଞାନାରୁଣ' ପତ୍ରିକାର ପ୍ରକାଶ ପାଇଁ ଚେଷ୍ଟା କରିଥିଲେ, କିନ୍ତୁ ତାହାର ପ୍ରକାଶନରେ ବାଧା ସୃଷ୍ଟି ହେବାରୁ 'ପ୍ରବୋଧ ଚନ୍ଦ୍ରିକା' ନାମକ ମାସିକ ସାହିତ୍ୟିକ ପତ୍ରିକା ୧୮୫୬ ମସିହାରେ କଟକ

ମିଶନ ପ୍ରେସରୁ ପ୍ରକାଶ କରୁଥିଲେ । ଏଥିରେ ଖ୍ରୀଷ୍ଟିୟାନ ଧର୍ମର ଲେଶମାତ୍ର ସମ୍ପର୍କ ନ ଥିଲା । ଆଧୁନିକ ସାହିତ୍ୟ ପତ୍ରିକା ଯେପରି ହୋଇଥାଏ, ତାହା ସେହିପରି ରୂପ ଲାଭକରି ପ୍ରକାଶ ପାଇଥିଲା । ୧୮୬୬ ଓ ୧୮୬୭ ମସିହାର ପ୍ରତ୍ୟେକ ମାସରେ ଏହା ପ୍ରକାଶିତ ହୋଇଥିଲା । ୧୮୭୧ ମସିହାରେ 'ଅରୁଣୋଦୟ' ନାମକ ମାସିକ ପତ୍ରିକା ଖ୍ରୀଷ୍ଟିୟାନ୍ ଭର୍ଣ୍ଣାକୁଲାର ସୋସାଇଟି ଦ୍ୱାରା ପ୍ରକାଶ ପାଇ ତିନି ବର୍ଷ ଚାଲିବା ପରେ ବନ୍ଦ ହୋଇଯାଇଥିଲା ।

'ପ୍ରବୋଧ ଚନ୍ଦ୍ରିକା' ପ୍ରକାଶର ଦଶ ବର୍ଷ ପରେ ଓଡ଼ିଶାର ପ୍ରଥମ ସମ୍ବାଦ ପତ୍ର ଓ ସାହିତ୍ୟ ପତ୍ର 'ଉତ୍କଳ ଦୀପିକା' ୧୮୬୬ ମସିହାରେ ପ୍ରକାଶ ପାଇଲା । ଏହି ଦୀପିକାର ସୁଯୋଗ୍ୟ ସମ୍ପାଦକ ଥିଲେ କର୍ମଯୋଗୀ ଗୌରୀଶଙ୍କର ରାୟ (୧୮୩୮—୧୯୧୭) । ଏହି ପତ୍ରିକା ୪ । ୮ । ୧୮୬୬ରେ ଆରମ୍ଭ ହୋଇ ପ୍ରଥମେ ସାପ୍ତାହିକ ପରେ ଦୈନିକ ସମ୍ବାଦ ପତ୍ରିକା ଭାବେ ଓଡ଼ିଆ ଭାଷା, ସାହିତ୍ୟ ଓ ସାମ୍ବାଦିକତାକୁ ପ୍ରାୟ ୬୬ ବର୍ଷ କାଳ ପ୍ରଭାବିତ କରିଥିଲା । କଟକ ଆଲମଚାନ୍ଦ ବଜାରରୁ କଟକ ପ୍ରିଣ୍ଟିଂ କମ୍ପାନୀରୁ ଏହା ପ୍ରକାଶ ଲାଭ କରିଥିଲା । ସେତେବେଳେ ଓଡ଼ିଆ ଟାଇପ୍ ଅଭାବରୁ ଉତ୍କଳ ଦୀପିକା ଦେଢ଼ ବର୍ଷ ପର୍ଯ୍ୟନ୍ତ ଆଧୁନିକ ଲିଥୋ ପରି ପଥର ଛାପାରେ ଛପା ଯାଇଥିଲା । ବର୍ଷ ବର୍ଷ ଧରି ଓଡ଼ିଆ ଜନଗଣଙ୍କର ଆଶା-ଆକାଂକ୍ଷା ଓ ଭାବଧାରାକୁ ରୂପାୟିତ କରି ଓଡ଼ିଆ ଜାତିକୁ ତଥା ତା'ର ଭାଷା ସାହିତ୍ୟକୁ ଏକ ବଳିଷ୍ଠ ଓ ସ୍ୱତନ୍ତ୍ର ଆସନ ପ୍ରଦାନରେ 'ଉତ୍କଳ ଦୀପିକା'ର ଦାନ ଅବିସ୍ମରଣୀୟ । 'ଉତ୍କଳ ହିତୈଷିଣୀ' (୧୮୬୮), ବାଲେଶ୍ୱର ସମ୍ବାଦ ବାହିକା (୧୮୬୮) ଉତ୍କଳ ଦୀପିକାର ପରେ ପରେ ଆତ୍ମପ୍ରକାଶ କରି ଓଡ଼ିଶାର ସାହିତ୍ୟ, ସଂସ୍କୃତି କ୍ଷେତ୍ରରେ ପ୍ରଭାବ ବିସ୍ତାର କରିଥିଲେ ।

'ଉତ୍କଳ ଦର୍ପଣ' ଓଡ଼ିଆ ସାହିତ୍ୟ, ସଂସ୍କୃତି କ୍ଷେତ୍ରରେ ଏକ ମୁଖ୍ୟ ପତ୍ରିକା । ଏହା ୧୮୭୩ ମସିହାରେ ବାଲେଶ୍ୱରରୁ ରାଜା ବୈକୁଣ୍ଠନାଥ ଦେ'ଙ୍କ ପୃଷ୍ଠପୋଷକତାରେ ଆତ୍ମପ୍ରକାଶ କରିଥିଲା । ବାଲେଶ୍ୱରର ଉତ୍କଳ ପ୍ରେସରୁ ଏହା ପ୍ରକାଶ ପାଉଥିଲା । ଏହି ପତ୍ରିକାର ଯଶସ୍ୱୀ ଲେଖକ ଥିଲେ ରାଧାନାଥ ରାୟ ଓ ଭକ୍ତକବି ମଧୁସୂଦନ ରାଓ । ରାଧାନାଥ ରାୟଙ୍କ 'ବିବେକୀ' ପ୍ରବନ୍ଧ ଏଥିରେ ଆତ୍ମପ୍ରକାଶ କରିଥିଲା । ଉତ୍କଳ ପୁତ୍ର ଏକ ପାକ୍ଷିକ ପତ୍ର ଭାବରେ ସେହି ବର୍ଷ ଅର୍ଥାତ୍ ୧୮୭୩ ମସିହାରେ ପ୍ରକାଶ ପାଇଥିଲା । ଏହି ପତ୍ରିକାରେ ଉତ୍କଳର ପ୍ରାଚୀନ ସଂସ୍କୃତି ପ୍ରତି ଓ ନାରୀଶିକ୍ଷା ପ୍ରତି ଶ୍ରଦ୍ଧା ପ୍ରକାଶ ପାଇଥିଲା ।

ଊନବିଂଶ ଶତକର ଉଲ୍ଲେଖଯୋଗ୍ୟ ପତ୍ରିକାମାନଙ୍କ ମଧ୍ୟରେ 'ପ୍ରଦୀପ' (୧୮୮୫), 'ଶିକ୍ଷାବନ୍ଧୁ' (୧୮୮୫) ସ୍ୱଳ୍ପ ସମୟ ପାଇଁ ଆବିର୍ଭାବ ହୋଇଥିଲେ ସୁଦ୍ଧା ବିଭିନ୍ନ ଦୃଷ୍ଟିରୁ ତାତ୍ପର୍ଯ୍ୟପୂର୍ଣ୍ଣ । ଏହି ପତ୍ରିକା ଦ୍ୱୟରେ ସାଧୁଚରଣ ରାୟ, ମଧୁସୂଦନ ରାଓ, ବୈକୁଣ୍ଠନାଥ ଦତ୍ତ, ପ୍ରଭାକର ଶର୍ମା ପ୍ରମୁଖ ନିୟମିତ ଭାବରେ ଲେଖାଲେଖି କରିଥିଲେ । ଶିକ୍ଷାବନ୍ଧୁ ପତ୍ରିକାରେ ମଧୁସୂଦନ ରାଓଙ୍କ 'ଆକାଶ ପ୍ରତି' ଓ 'ଜୀବନ ଚିନ୍ତା' କବିତାର ପ୍ରାୟୋଗିକ ସମାଲୋଚନା ( Practical Criticism ) ପ୍ରକାଶ ଲାଭ କରିଥିଲା । ୧୮୬୭ ମସିହାରେ 'ନବ ସମ୍ବାଦ' ଓ ବାଲେଶ୍ୱରରୁ 'ଓଡ଼ିଆ' ନାମରେ ପତ୍ରିକା ପ୍ରକାଶ ପାଉଥିଲା । 'ଓଡ଼ିଆ' ପତ୍ରିକାରେ ଶ୍ରୀ ଜଗନ୍ନାଥ ଯାତ୍ରୀମାନଙ୍କ ସମସ୍ୟା ସର୍ବସାଧାରଣ ଦୃଷ୍ଟି ଆକର୍ଷଣ କରିଥିଲା । ଏହି ପତ୍ରିକା ଦୁଇଟି ପରବର୍ତ୍ତୀ କାଳରେ 'ଓଡ଼ିଆ ନବ ସମ୍ବାଦ' ନାମ ନେଇ ଆତ୍ମପ୍ରକାଶ କରି ଓଡ଼ିଆ ସଂସ୍କୃତି ଓ ସାହିତ୍ୟକୁ ବହୁକାଳ ପର୍ଯ୍ୟନ୍ତ ଅନୁଶୀଳନ କରିଛି । ଏହି ପତ୍ରିକାରେ ମଧୁସୂଦନ ରାଓ, ରାଧାନାଥ ରାୟ, କାମପାଲ ମିଶ୍ର ପ୍ରମୁଖ କୃତବିଦ୍ୟ ଲେଖକଗଣ ଧାରାବାହିକ ଭାବରେ ଲେଖୁଥିଲେ । ୧୮୮୯ ମସିହାରେ ସମ୍ବଲପୁରରୁ 'ସମ୍ବଲପୁର ହିତୈଷିଣୀ' ପତ୍ରିକା ଓଡ଼ିଶାରେ ବିଶେଷ ଆଲୋଡ଼ନ ସୃଷ୍ଟି କରିଥିଲା । ନୀଳମଣି ବିଦ୍ୟାରତ୍ନ ଏହି ପତ୍ରିକାର ଅନ୍ୟତମ ସମ୍ପାଦକ ଥିଲେ । ବିଭିନ୍ନ ପତ୍ରପତ୍ରିକାର ପ୍ରକାଶନରୁ ଜଣାଯାଏ ଯେ ବାଲେଶ୍ୱର, କଟକ, ସମ୍ବଲପୁର, ଗଞ୍ଜାମ ଓ ମୟୂରଭଞ୍ଜ ଓଡ଼ିଶାର ଶିକ୍ଷା, ସଂସ୍କୃତିର ପୀଠସ୍ଥଳୀ ଥିଲା । ଓଡ଼ିଶାର ଅଧିକାଂଶ ପତ୍ରପତ୍ରିକା ଏହି ସ୍ଥାନମାନଙ୍କରୁ ପ୍ରକାଶ ପାଇଛି ।

ମୟୂରଭଞ୍ଜ ରାଜାଙ୍କ ରାଜପ୍ରେସରୁ ୧୮୯୧ ମସିହା ଏପ୍ରିଲ ମାସରେ ଚୈତନ୍ୟ ପ୍ରସାଦ ରାୟଙ୍କ ସମ୍ପାଦନାରେ 'ଉତ୍କଳ ପ୍ରଭା' ପ୍ରକାଶ ପାଇଥିଲା । ରାଜନାରାୟଣ ମହାପାତ୍ର ମଧ୍ୟ କିଛିକାଳସକାଶେ ଏହାର ସମ୍ପାଦକ ଥିଲେ । ଏହି ପତ୍ରିକା ତତ୍କାଳୀନ ସାହିତ୍ୟିକ ଗୋଷ୍ଠୀର ମୁଖ୍ୟ ମୁଖପତ୍ର ଥିଲା । ଏହି ପତ୍ରିକା ସମ୍ପର୍କରେ ଫକୀରମୋହନ 'ମନାଙ୍କ ପାଞ୍ଜି'ରେ ଲେଖିଛନ୍ତି;

"ପ୍ରଭା ଉଦେ ଦେଖି କବିଏ ଭାବିଲେ ଯିବ ଆମ ସବୁ ଦୁଃଖ
ଲେଖିବୁ କବିତା ନେବୁ ଟଙ୍କା ଗଣି ପଢ଼ିବେ ସକଳ ଲୋକ ।"

ଏହି ପତ୍ରିକା ପ୍ରଥମ କରି ଲେଖକମାନଙ୍କୁ ଯଥାସାମାନ୍ୟ ପାରିତୋଷିକ ସେମାନଙ୍କର ସୃଷ୍ଟି ସକାଶେ ପ୍ରଦାନ କରିଥିଲା । ଏହି ପତ୍ରିକାରେ ରାମଶଙ୍କର ରାୟଙ୍କ 'ବିବାସିନୀ', ରାଧାନାଥ ରାୟଙ୍କ 'ଚିଲିକା' 'ମହାଯାତ୍ରା', 'ଯଯାତି-କେଶରୀ', ମଧୁସୂଦନ ରାଓଙ୍କର 'ତୃଷିତ ପ୍ରାଣେ ଦେବାଦତରଣ', ବିଶ୍ୱନାଥ,

କରଙ୍କ 'ସାହିତ୍ୟ ଚର୍ଚ୍ଚା', ଗଙ୍ଗାଧର ମେହେରଙ୍କ 'ଚନ୍ଦ୍ରମଣି' ପରି ବଳିଷ୍ଠ ଲେଖା ସମୂହ ପୁରସ୍କୃତ ହୋଇ ପ୍ରକାଶ ପାଇଥିଲା । 'ଉତ୍କଳ ପ୍ରଭା' ପରେ 'ଇନ୍ଦ୍ରଧନୁ' (୧୭।୮।୧୮୯୩), 'ବିଜୁଳି' (୧୭।୯।୧୮୯୩) ଯଥାକ୍ରମେ କଟକ ଓ ବାମଣ୍ଡାର ଦେଓଗଡ଼ରୁ ପ୍ରକାଶିତ ହୋଇଥିଲା । ଏହି ପତ୍ରିକା ଦ୍ୱୟ ଯଥାକ୍ରମେ ପ୍ରାଚୀନ ଓ ଆଧୁନିକ ସାହିତ୍ୟର ପୃଷ୍ଠପୋଷକତା କରିଥିଲା । ପ୍ରାୟ ବର୍ଷେ ପରେ ପରସ୍ପରର ବାଦାନୁବାଦ ହୋଇ ଏହି ପତ୍ରିକା ଦ୍ୱୟ ବିଲୟ ଭଜିଥିଲା ।

ଊନବିଂଶ ଶତକର ଶେଷ ପର୍ଯ୍ୟାୟରେ ବିଶ୍ୱନାଥ କରଙ୍କ ସମ୍ପାଦନାରେ ଉତ୍କଳ ସାହିତ୍ୟ (୧୮୯୭) ଆତ୍ମପ୍ରକାଶ ଲାଭ କରିଥିଲା । ଏହି ଉତ୍କଳ ସାହିତ୍ୟ ଦୀର୍ଘ ଅର୍ଦ୍ଧ ଶତାବ୍ଦୀରୁ ଊର୍ଦ୍ଧ୍ୱ ସମୟ ଧରି ବହୁ ଆଧୁନିକ ସାହିତ୍ୟ ସ୍ରଷ୍ଟାମାନଙ୍କୁ ସୃଷ୍ଟି କରି ଅକ୍ଷୟ କୀର୍ତ୍ତି ସ୍ଥାପନ କରିଯାଇଛି । ଏହି ପତ୍ରିକାରେ ଫକୀରମୋହନ, ରାଧାନାଥ, ମଧୁସୂଦନ, ଗଙ୍ଗାଧରଙ୍କ ଠାରୁ ଆରମ୍ଭ କରି କାଳିନ୍ଦୀଚରଣ, ବୈକୁଣ୍ଠନାଥ, ସଚ୍ଚିଦାନନ୍ଦ ପର୍ଯ୍ୟନ୍ତ ସମସ୍ତଙ୍କ ଲେଖା କାଳକ୍ରମେ ପ୍ରକାଶିତ ହୋଇଥିଲା ।

'ପ୍ରବୋଧ ଚନ୍ଦ୍ରିକା' ଠାରୁ ଓଡ଼ିଆ ପତ୍ରପତ୍ରିକା କ୍ରମୋନ୍ନତ ପଥରେ ଅଗ୍ରସର ହୋଇଛି । ଊନବିଂଶ ଶତକର ଏ ସବୁ ପତ୍ରପତ୍ରିକାର ଆତ୍ମପ୍ରକାଶରେ 'ପ୍ରବୋଧ ଚନ୍ଦ୍ରିକା' ପରି ମାସିକ ପତ୍ରିକା ଓ 'ଉତ୍କଳ ଦୀପିକା' ପରି ସାପ୍ତାହିକ ସମ୍ବାଦ, ସାହିତ୍ୟ ପତ୍ରର ପ୍ରେରଣାକୁ ଅସ୍ୱୀକାର କରି ହେବ ନାହିଁ । ଊନବିଂଶ ଶତକ ଅନ୍ଧକାରର ପରିବେଶରୁ ଏହି ପତ୍ରିକା ଦ୍ୱୟ ଜନ୍ମ ଲାଭକରି ଏ ଜାତିକୁ ଆଲୋକ ବର୍ତ୍ତିକା ଦେଖାଇଛନ୍ତି ।



# ପ୍ରବୋଧ ଚନ୍ଦ୍ରିକା

୯ ସଂଖ୍ୟା ।

ସନ ୧୨୭୩ । ମାଘ । ❋ ସନ ୧୮୬୭ । ଜାନୁଏରି ।

## ୧ । ପାଠକମାନଙ୍କ ପ୍ରତି ପ୍ରଥମ ପତ୍ର ।

---

### ଏ ପ୍ରବୋଧ ଚନ୍ଦ୍ରିକା ବିଷୟକ ।

ଓଡ଼ିଶା ନାମରେ ବିଖ୍ୟାତ ଏହି ଦେଶ ଉତ୍ତରରେ ସୁବର୍ଣ୍ଣରେଖା ନଦୀଠାରୁ ସମୁଦ୍ର କୂଳେ ୨ ଦକ୍ଷିଣରେ ଚିଲିକା ଓ ଗଞ୍ଜାମ ପ୍ରଦେଶ ପର୍ଯ୍ୟନ୍ତ ନିର୍ଦ୍ଦିଷ୍ଟ ଅଛି । ତାହାର ପୂର୍ବ ସୀମା ବଙ୍ଗ ସାଗର ଏବଂ ପଶ୍ଚିମ ସୀମା ଗଡ଼ଜାତ । ପୂର୍ବକାଳରେ ଉତ୍କଳ ଦେଶର ସୀମା ଅଧିକ ପ୍ରଶସ୍ତ ଥାଇ ରାଜମହେନ୍ଦ୍ର ଓ ବିଜୟ ନଗର ଏ ଦୁହେଁ ଏ ଦେଶ ରାଜାମାନଙ୍କର ପ୍ରଧାନ ୨ ନଗର ମଧ୍ୟରେ ଗଣିତ ଥିଲେ, ଆଉ ଦକ୍ଷିଣରେ ଗୋଦାବରୀ ନଦୀ ପର୍ଯ୍ୟନ୍ତ ରାଜ୍ୟର ଦକ୍ଷିଣ ସୀମା ବିସ୍ତୃତ ଥିଲା । ମାତ୍ର ଏ ପୁରାତନ ସୀମା ଛାଡ଼ି ଇଦାନୀଂ ଯେଉଂ ସୀମା ମଧ୍ୟରେ ନିର୍ଦ୍ଦିଷ୍ଟ ଅଛି ତଦୁପଲକ୍ଷରେ ଏଦେଶ ଅତିବୃହତ୍ ଓ ବିସ୍ତର ଯୋଗ୍ୟ ଅଟେ । କେବଳ ମୁଗଲବନ୍ଦି ଭିତରେ ଲୋକ ସଂଖ୍ୟା ପନ୍ଦରଲକ୍ଷରୁ ଅଧିକ । ଏ ବୃହଦ୍ଦେଶରେ ସର୍ବତ୍ର ଲୋକେ କି ପ୍ରକାର ଅଜ୍ଞାନରେ ପତିତ ହେବାରୁ ନାନାବିଧ କ୍ଲେଶ ଆଉ ଦୁରବସ୍ଥା ଭୋଗ କରୁଅଛନ୍ତି ତାହା ବିଜ୍ଞ ଲୋକଙ୍କଠାରେ ସୁବ୍ୟକ୍ତ । ଯଦ୍ୟପି ଅଳ୍ପ ବର୍ଷ ମଧ୍ୟରେ ସମୀପବର୍ତ୍ତୀ ବଙ୍ଗ ଦେଶରେ ବଙ୍ଗଲା ଭାଷା ଅତିଯତ୍ନପୂର୍ବକ ସେ ଦେଶର ଅନେକ ବିଦ୍ୱାନ୍ମହାଶୟ କର୍ତ୍ତୃକ ପରିଷ୍କୃତ ଓ ସୁଶୋଭିତ ହୋଇଅଛି ପୁଣି ଦେଶୀୟ ଏବଂ ଇଂରେଜୀ ବିଦ୍ୟା ଶିକ୍ଷାର୍ଥେ ଅନେକ ପାଠଶାଳା ଓ କାଲେଜ ନିଯୁକ୍ତ କରାଯାଇଅଛି ଏବଂ ଛାପା ଯନ୍ତ୍ର ସ୍ଥାପିତ ହୋଇଅଛି ଅଥଚ ଅତୀତ ସପ୍ତବିଂଶବର୍ଷ ମଧ୍ୟରେ ପ୍ରାୟ ଶହେ

ଗୋଟା ଭିନ୍ନ ୨ ସମାଚାର ପତ୍ର ଆଉ ଏ ପ୍ରବୋଧ ଚନ୍ଦ୍ରିକା ରୂପ ମାସିକ କିମ୍ବା ସାପ୍ତାହିକ ପୁସ୍ତକ ଆରମ୍ଭ ହୋଇ ଦେଶଯାକ ପ୍ରଚାର ହୋଇଅଛି ପୁଣି ବିବିଧ ଜ୍ଞାନସୂଚକ ଅନେକ ପୁସ୍ତକ ମୁଦ୍ରିତ ହୋଇ ପ୍ରକାଶ ପାଇ ଅଛନ୍ତି ତଥାପି ଏ ଉତ୍କଳ ଦେଶରେ ଏତାଦୃଶ ଅତ୍ୟାବଶ୍ୟକ ବିଷୟରେ ଅଳ୍ପମାତ୍ର ଉଦ୍‌ଯୋଗ ହୋଇଅଛି । ଏ ସକଳ ବିଷୟରେ ଏ ଦେଶୀୟ ଲୋକେ ଶିଥିଳ ଆଉ ନିଶ୍ଚେଷ୍ଟିତ । ଜ୍ଞାନଠାରୁ ଅଳ୍ପ ଧନସୁଖ ପ୍ରିୟରେ ବୋଧକରି ଯାହା ଦ୍ୱାରା ସେହି ଧନ ସର୍ବତ୍ର ପ୍ରଚୁରରୂପେ ଉପାର୍ଜିତ ହୁଅଇ ତାହା ଅନାଦାର କରି ଅଛନ୍ତି । ଅତଏବ ଫଳଦେଖ, ଏ ଦେଶ ସ୍ଥାପିତ ନାନା ସରକାରୀ କଚେରୀ ଇତ୍ୟାଦିରେ ବିଦେଶୀୟ ଅର୍ଥାତ୍ ବଙ୍ଗାଳି ଲୋକେ ପ୍ରାୟ ସବୁ ଉତ୍ତମ ୨ ପଦ ପ୍ରାପ୍ତ ହୋଇଅଛନ୍ତି ।

ଲୋକେ ଯେତେ ଅଜ୍ଞାନ ଓ ନିର୍ବୋଧ ହୋଇଥାନ୍ତି ତେତେ କ୍ଲେଶାପନ୍ନ ହୁଅନ୍ତି ମାତ୍ର ଜ୍ଞାନ ସର୍ବପ୍ରକାର ଲାଭର ଅଥଚ ମାନସିକ ପୁଣି ଶାରୀରିକ ସୁଖର ମାର୍ଗସ୍ୱରୂପ । ଯଥା ଏ ଦେଶର ଅତିପୁରାତନ ଜଣେ ପଣ୍ଡିତ ଏହି ଶ୍ଳୋକରେ ଲେଖି ଅଛନ୍ତି ।

ବିଦ୍ୟା ଦଦାତି ବିନୟଂ ବିନୟାଦ୍ୟାତି ପାତ୍ରତାଂ ।
ପାତ୍ରତ୍ୱାଦ୍ଧନମାପ୍ନୋତି ଧନାଦ୍ଧର୍ମଂ ତତଃ ସୁଖଂ ।

ଅର୍ଥାତ୍ ବିଦ୍ୟାରୁ ବିନୟ ଜନ୍ମଇ, ବିନୟୀ ଲୋକ ବିଶ୍ୱାସପାତ୍ର ହୁଏ, ବିଶ୍ୱାସ ପାତ୍ର ହେଲେ ଧନ ଉପାର୍ଜନ ହୁଅଇ, ତଦାଦ ଧନରୁ ଧର୍ମ ଅର୍ଥାତ୍ ଧର୍ମକର୍ମ କରିବାର ଶକ୍ତି ଆଉ ଉପାୟ ପ୍ରାପ୍ତ ହୁଏ ଏବଂ ଶେଷରେ ଧର୍ମରୁ ସୁଖ ମିଳେ । ଅନାୟାସରେ ଜଣାଯାଏ କି ଏଦେଶୀୟ ପ୍ରଜାସମୂହର ଅନେକ କ୍ଲେଶ ଆଉ ଦୁର୍ଦ୍ଦଶା ପୁଣି ଅନେକ କୁତ୍ସିତ ବ୍ୟବହାର ଜ୍ଞାନାଭାବର ଫଳ ଅଟଇ ।

ମାତ୍ର ଭରସା ହେଉଅଛି କି ଦେଶାଧିକାରୀ ଇଙ୍ଗରେଜ କମ୍ପନି ବାହାଦୂର ସର୍ବସାଧାରଣ ଲୋକଙ୍କ ମଧ୍ୟରେ ବିଦ୍ୟାଭ୍ୟାସ ଆଉ ଜ୍ଞାନ ପ୍ରବୃଦ୍ଧ୍ୟର୍ଥେ ବର୍ତ୍ତମାନ ଯେଉଁ ଉଦ୍‌ଯୋଗ କରୁଅଛନ୍ତି ତଦ୍ଦ୍ୱାରା ଏଦେଶରେ ମଧ୍ୟ ଯଥେଷ୍ଟ ଲାଭ ଉତ୍ପନ୍ନ ହୋଇ ପାରିବ । ସେଇ ଉଦ୍‌ଯୋଗରେ ଯତ୍କିଞ୍ଚିତ୍‌ରୂପେ ହେଲେହେଁ ଏକ୍ଷୁଦ୍ର ପତ୍ରିକା ସହକାରିଣୀ ହୋଇ ପାରିବ, ଇହା ସମ୍ପାଦକର ସମ୍ପୂର୍ଣ୍ଣ ମାନସ ଅଟେ ଫଳତଃ ସେଇ ଅଭିପ୍ରାୟରେ ଏପତ୍ରିକା ପ୍ରକଟିତ ହେଉଅଛି । ଅତଏବ ଏଦେଶୀୟ ଯେତେ ସମ୍ଭ୍ରାନ୍ତ ଲୋକେ ଏଜିଲ୍ଲା ମଧ୍ୟରେ ଉଚ୍ଚ ଓ

ମାନ୍ୟ ପଦ ପ୍ରାପ୍ତ ହୋଇଅଛନ୍ତି ସେମାନଙ୍କର ନିତାନ୍ତ କର୍ତ୍ତବ୍ୟ ଏହି କି ଏପତ୍ରିକାର ସର୍ବତୋଭାବେ ସାହାଯ୍ୟ କରିବେ । ଯଦ୍ୟପିସ୍ୟାତ୍ ତଦ୍ଦ୍ବାରା ସେମାନେ ନିଜେ ବିଶେଷ ଶ୍ରେୟ ପାଇ ନ ପାରିବେ ତଥାପି ଅବଶ୍ୟ ସାଧାରଣ ଜ୍ଞାନ ପ୍ରବୃଦ୍ଧିର ଏବଂ ଆପଣା ସ୍ବଦେଶୀୟ ପ୍ରଜା ସମୂହର କୁଶଳ ଓ ଉନ୍ନତି ଇଚ୍ଛା କରିଥିବେ ।

ଏ ପ୍ରବୋଧ ଚନ୍ଦ୍ରିକା ପ୍ରତ୍ୟେକ ଦେଶୀୟ ମାସ ଆରମ୍ଭରେ ପ୍ରକାଶିତ ହେବ । ପ୍ରତ୍ୟେକ ଖଣ୍ଡରେ ଷୋଡ଼ଏ କି ପଚିଶ ପୃଷ୍ଠାଗୁଡ଼ା ହେବ । ପ୍ରଥମରେ ଦେଶୀୟ ମହାବିଜ୍ଞ ପୁରାତନ କୌଣସି ପଣ୍ଡିତକର୍ତ୍ତୃକ ରଚିତ ଆଉ ଉତ୍ତମ ଶିକ୍ଷାଦାୟକ ଗ୍ରନ୍ଥ ନତୁବା ବଙ୍ଗଦେଶୀୟ ବିଦ୍ୱଜ୍ଜନଗଣ କର୍ତ୍ତୃକ ନାନା ସମୟରେ ଯେଉଁ ଉତ୍ତମ ୨ ପୁସ୍ତକ ପ୍ରକାଶ ହୋଇଅଛି କିମ୍ବା ଆଗାମିରେ ହେବ ତନ୍ମଧ୍ୟରୁ କୌଣସି ୨ ପୁସ୍ତକ ଆଦ୍ୟପ୍ରାନ୍ତ କ୍ରମେ ୨ ଏ ପ୍ରବୋଧ ଚନ୍ଦ୍ରିକାରେ ପ୍ରକାଶ କରାଇବାର ମାନସ ଅଛି । ତଦାଦି ଅନ୍ୟ ୨ ମନୋରଞ୍ଜକ ଆଉ ନୀତି ଶିକ୍ଷାଦାୟକ ବୃତ୍ତାନ୍ତ କିମ୍ବା ବିଶିଷ୍ଟ ମହାତ୍ମାମାନଙ୍କ ଜୀବନ ବିବରଣ ଅଥବା ଶିଳ୍ପ ଇତ୍ୟାଦି ବିଦ୍ୟା ସମ୍ବନ୍ଧୀୟ ପ୍ରସଙ୍ଗ ପ୍ରକାଶ କରାଯିବ । ଶେଷରେ ଏଜିଲ୍ଲା ମଧ୍ୟରେ ଯେତେବେଳେ ଯେଉଁ ଘଟଣା ହେବାର ଶୁଣାଯାଏ ଏବଂ ଦେଶ ବିଦେଶରୁ ଯେଉଁ ନାନା ମହଦାଶ୍ଚର୍ଯ୍ୟ ସମ୍ବାଦ ମିଳେ ତହିଁର ସାରାଂଶ କଲିକତାଠାରୁ ପ୍ରାପ୍ତ କେତେକ ଇଙ୍ଗରେଜୀ ଓ ବଙ୍ଗଳା ଖବର କାଗଜରୁ ଅନୁବାଦିତ ହୋଇ ଏ ପ୍ରବୋଧ ଚନ୍ଦ୍ରିକାରେ ପ୍ରକାଶ ପାଇବ । ପୁନର୍ବାର ପ୍ରତ୍ୟେକ ଖଣ୍ଡରେ ମାସିକ ପାଞ୍ଜି ଦେବାର ମାନସ ଅଛି ।

ଅତଏବ କେଉଁ ସ୍ଥାନରେ କି ଆଶ୍ଚର୍ଯ୍ୟ କର୍ମ ହେଉଅଛି ତାହା ଶ୍ରବଣରେ ଆଉ ସୁଗଳ୍ପ ପାଠରେ ସମସ୍ତଙ୍କ ଅନ୍ତଃକରଣରେ ଯେଉଁ କ୍ଷଣକାଳୀନ ଆହ୍ଲାଦ ଓ ହର୍ଷ ଜନ୍ମଇ ତଦ୍ଭିନ୍ନ ଅନେକ ନିତାନ୍ତ ଆବଶ୍ୟକ ଆଉ ଚିର ଶ୍ରେୟ ଦାୟକ ଜ୍ଞାନ ଏ କ୍ଷୁଦ୍ର ପତ୍ରିକା ଗ୍ରହଣରେ ଏଦେଶୀୟ ଲୋକେ ପ୍ରାପ୍ତ ହୋଇ ପାରିବେ ବୋଲି ଦୃଢ ପ୍ରତ୍ୟୟ ହେଉଅଛି । କୌଣସି ବିଶେଷ ଧର୍ମର ପ୍ରବୃଦ୍ଧି ଏପୁସ୍ତକର ଅଭିପ୍ରାୟ ନୁହଇ ଏସକାଶେ ତାହା ଆପଣା ୨ ଗୃହରେ ଗ୍ରହଣ କରି ପାଠ କଲେ କାହାର ଇଷ୍ଟ ଧର୍ମ ହାନି ହେବ ଏପ୍ରକାର ଶଙ୍କା କେହି ନ କରିବେ ।

ଏ ପୁସ୍ତକର ବାର୍ଷିକ ଅର୍ଥାତ୍ ବାରଖଣ୍ଡର ମୂଲ୍ୟ ଏକାବେଳକେ ଆଗତୁରା ଦେଲେ କେବଳ ଦେଢ ଟଙ୍କା ଦେବାକୁ ହେବ । ଏ ମୂଲ୍ୟ ଅତ୍ୟଳ୍ପ ହେବା ହେତୁରୁ କି ଧନବାନ୍ କି ସାମାନ୍ୟ ବ୍ୟକ୍ତି ସମସ୍ତେ ଇଚ୍ଛାନୁସାରେ ଗ୍ରହଣ

କରି ପାରିବେ । କଟକ ଶହର ବାହାରେ ଯେଉଁମାନେ ବାସ କରୁଥିବେ ସେମାନେ ଡାକରେ ଅତି ଶୀଘ୍ର ମାସକୁମାସ ଏ ପୁସ୍ତକ ପାଇ ପାରିବେ ଏହି ମାତ୍ର ଆବଶ୍ୟକ କି ନିର୍ଦ୍ଦିଷ୍ଟ ମୂଲ୍ୟର ଅତିରିକ୍ତ ବାରଅଣା ନତୁବା ବାରଗୋଟା ଡାକ ଟିକଲ ଦେବାକୁ ହେବ । ତାହାହେଲେ ନିର୍ବିଘ୍ନରୂପେ ମାସକୁମାସ ସେମାନଙ୍କ ନିକଟରେ ଡାକରେ ପହୁଞ୍ଚାଇ ଦିଆଯିବ ।

---

## ୨ । ପଞ୍ଚତନ୍ତ୍ରପ୍ରଭୃତି ନୀତିଶାସ୍ତ୍ରୋଦ୍ଧୃତ

### ମିତ୍ରଲାଭ—ସୁହୃଦ୍ଭେଦ—ବିଗ୍ରହ—ସନ୍ଧ୍ୟାଦ୍ୟଙ୍ଗ୍ୟାନ୍ୱିତ

### ବିଷ୍ଣୁଶର୍ମକର୍ତ୍ତୃକ ସଂଗୃହୀତ

### ହିତୋପଦେଶଃ ।

---

ଆଭାସଃ ।

ଏହି ହିତୋପଦେଶ ଶ୍ରୁତ ହେଲେ ସଂସ୍କୃତ ବାକ୍ୟରେ ପଟୁତା ଏବଂ ସର୍ବତ୍ର ବାକ୍ୟର ବିଚକ୍ଷଣତା ମଧ୍ୟ ନୀତିବିଦ୍ୟା ପ୍ରଦାନ କରେ ।

ଅଜରାମରବତ୍ ପ୍ରାଜ୍ଞୋ ବିଦ୍ୟାମର୍ଥଂଚ ଚିନ୍ତୟେତ୍ ।
ଗୃହୀତ ଇବ କେଶେଷୁ ମୃତ୍ୟୁନା ଧର୍ମମାଚରେତ୍ ॥

ପ୍ରାଜ୍ଞଲୋକ ଅଜର ଆଉ ଅମର ପ୍ରାୟ ହୋଇ ବିଦ୍ୟା ଓ ଅର୍ଥ ଚିନ୍ତା କରିବ, ଏବଂ ଯମ ଦ୍ୱାରା କେଶରେ ଗୃହୀତ ହେଲପରି ଧର୍ମାଚରଣ କରିବ ।

ସର୍ବଦ୍ରବ୍ୟେଷୁ ବିଦ୍ୟୈବ ଦ୍ରବ୍ୟମାହୁରନୁତ୍ତମଂ ।
ଅହାର୍ଯ୍ୟତ୍ୱାଦନର୍ଘ୍ୟତ୍ୱାଦକ୍ଷୟତ୍ୱାଚ୍ଚ ସର୍ବଦା ॥

ସକଳ ଦ୍ରବ୍ୟ ମଧ୍ୟରେ ବିଦ୍ୟା କେବଳ ଅତି ଉତ୍ତମ ଦ୍ରବ୍ୟ ବୋଲି ପଣ୍ଡିତମାନେ କହିଅଛନ୍ତି; ଯେହେତୁରୁ ବିଦ୍ୟାରୂପ ଧନକୁ ଚୋର ଅପହରଣ କରି ନ ପାରନ୍ତି, ଏବଂ ବିଦ୍ୟାର ମୂଲ୍ୟ ନାହିଁ, ଅଥଚ କଦାପି କ୍ଷୟ ହୁଏ ନାହିଁ ।

ସଙ୍ଗମୟତି ବିଦ୍ୟୈବ ନୀଚଗାପି ନରଂ ସରିତ୍ ।
ସମୁଦ୍ରମିବ ଦୁର୍ଦ୍ଧର୍ଷଂ ନୃପଂ ଭାଗ୍ୟମତଃପରଂ ॥

ଆଉ ଯେମନ୍ତ ନୀଚଗା ନଦୀ ମନୁଷ୍ୟଙ୍କୁ ଦୁଷ୍ପ୍ରାପ୍ୟ ଯେ ସମୁଦ୍ର ତାକୁ ପ୍ରାପ୍ତ କରାଇ ଦିଏ, ସେହିପରି ବିଦ୍ୟା ଯେବେ ନୀଚ ଲୋକର ହୁଏ ତେବେ ତାକୁ ଦୁଷ୍ପ୍ରାପ୍ୟ ରାଜାଙ୍କୁ ପ୍ରାପ୍ତ କରାଏ ଅଥଚ ରାଜାଙ୍କ ସଙ୍ଗେ ମେଳନ ହେତୁରୁ ଉତ୍କୃଷ୍ଟ ଭାଗ୍ୟକୁସୁଦ୍ଧା ପ୍ରାପ୍ତ କରାଏ ।

ବିଦ୍ୟାଦଦାତି ବିନୟଂ ବିନୟାଦ୍‌ଯାତି ପାତ୍ରତାଂ ।
ପାତ୍ରତ୍ୱାଦ୍ଧନମାପ୍ନୋତି ଧନାଦ୍ଧର୍ମଂ ତତଃ ସୁଖଂ ।

ବିଦ୍ୟାରୁ ବିନୟ ଜନ୍ମେ, ବିନୟରେ ଯୋଗ୍ୟତା ହୁଏ, ଯୋଗ୍ୟତା ହେତୁରୁ ଧନ ମିଳେ, ଧନ ହେତୁରୁ ଧର୍ମପ୍ରାପ୍ତି ହୁଏ, ଧର୍ମରୁ ସୁଖ ମିଳେ ।

ବିଦ୍ୟା ଶସ୍ତ୍ରସ୍ୟ ଶାସ୍ତ୍ରସ୍ୟ ଦ୍ୱେ ବିଦ୍ୟେ ପ୍ରତିପତ୍ତୟେ ।
ଆଦ୍ୟା ହାସ୍ୟାୟ ବୃଦ୍ଧତ୍ୱେ ଦ୍ୱିତୀୟାଦ୍ରିୟତେ ସଦା ॥

ଆଉ ଶସ୍ତ୍ର ବିଦ୍ୟା, ଶାସ୍ତ୍ର ବିଦ୍ୟା ଏ ଦୁଇ ବିଦ୍ୟା ପ୍ରତିପତ୍ତି ନିମନ୍ତେ ହୁଏ; ମାତ୍ର ବୃଦ୍ଧାବସ୍ଥାରେ ଶସ୍ତ୍ର ବିଦ୍ୟା ହାସ୍ୟ ଜନକ, ଶାସ୍ତ୍ର ବିଦ୍ୟା ସର୍ବକାଳରେ ଆଦରଣୀୟ ହୁଏ ।

ଯନ୍ନବେ ଭାଜନେ ଲଗ୍ନଃ ସଂସ୍କାରୋ ନାନ୍ୟଥା ଭବେତ୍ ।
କଥାଚ୍ଛଲେନ ବାଲାନାଂ ନୀତିସ୍ତଦିହ କଥ୍ୟତେ ॥

ଅଥଚ ନୂତନ ପାତ୍ରରେ ଯେଉଁ ଚିହ୍ନ ସଂଲଗ୍ନ ହୁଏ ତହିଁର ଅନ୍ୟଥା ହୁଏ ନାହିଁ, ସେ ହେତୁରୁ କଥାଚ୍ଛଳରେ ବାଳକମାନଙ୍କୁ ଏଗ୍ରନ୍ଥ ଦ୍ୱାରା ନୀତିଶିକ୍ଷା କରାଯାଉଅଛି । ମିତ୍ରଲାଭ, ସୁହୃଦ୍ଭେଦ, ବିଗ୍ରହ, ସନ୍ଧି, ଏହି ଚାରି ଭାଗରେ ବିଭକ୍ତ ଏ ନୀତିଶାସ୍ତ୍ର ପଞ୍ଚତନ୍ତ୍ର ଓ ଅନ୍ୟଗ୍ରନ୍ଥମାନଙ୍କରୁ ସଂଗୃହୀତ ହୋଇ ଲେଖା ଯାଉଅଛି ।

ଭାଗୀରଥୀତୀରରେ ପାଟଳିପୁତ୍ର ନାମରେ ଏକ ନଗର ଅଛି, ସେଠାରେ ସକଳ ରାଜଗୁଣବିଶିଷ୍ଟ ସୁଦର୍ଶନନାମକ ରାଜା ଥିଲେ । ସେ ରାଜା ଏକ ସମୟରେ କାହାର ଦ୍ୱାରା ପଠ୍ୟମାନ ଶ୍ଲୋକଦ୍ୱୟ ଶ୍ରବଣ କଲେ; ଯଥା ।

ଅନେକସଂଶୟୋଚ୍ଛେଦି ପରୋକ୍ଷାର୍ଥସ୍ୟ ଦର୍ଶକଂ ।
ସର୍ବସ୍ୟ ଲୋଚନଂ ଶାସ୍ତ୍ରଂ ଯସ୍ୟ ନାସ୍ତ୍ୟନ୍ଧ ଏବସଃ ।
ଯୌବନଂ ଧନସମ୍ପତ୍ତିଃ ପ୍ରଭୁତ୍ୱମବିବେକତା ।
ଏକୈକମପ୍ୟନର୍ଥାୟ କିମୁ ଯତ୍ର ଚତୁଷ୍ଟୟଂ ।

ଏଥିର ଅର୍ଥ ଏହି, ଅନେକ ସନ୍ଦେହର ନାଶକ ଏବଂ ଅପ୍ରତ୍ୟକ୍ଷ ବିଷୟ ଦର୍ଶକ ଏମନ୍ତ ଯେ ଶାସ୍ତ୍ର ସେ ସମସ୍ତଙ୍କର ଚକ୍ଷୁ, ତାହା ଯାହାର ନାହିଁ ସେ ଅନ୍ଧ । ପୁନଶ୍ଚ ଯୌବନ, ଧନସମ୍ପତ୍ତିଃ ପ୍ରଭୁତ୍ୱ, ଅବିବେକତା ଏହିଚତୁଷ୍ଟୟ ପ୍ରତ୍ୟେକରେ ଅନର୍ଥଜନକ ହୁଏ, ତେବେ ଯେଉଁଠାରେ ଏ ଚତୁଷ୍ଟୟ ମିଳି କରି ଥାନ୍ତି ସେଠାରେ କି ନୋହିବ ?

ଇହା ଶୁଣି ସେ ରାଜା ଅଜ୍ଞାତଶାସ୍ତ୍ର ଏବଂ ସର୍ବଦା ବିପଥଗାମି ଆପଣା ପୁତ୍ରମାନଙ୍କୁ ଶାସ୍ତ୍ର ପଢ଼ାଇବା ସକାଶେ ଉଦ୍‌ବିଗ୍ନଚିତ୍ତହୋଇ ଏପ୍ରକାର ଚିନ୍ତା କଲେ ।

କୋଽର୍ଥଃ ପୁତ୍ରେଣ ଜାତେନ ଯୋନ ବିଦ୍ୱାନ୍ନ ଧାର୍ମିକଃ ।
କାଣେନ ଚକ୍ଷୁଷା କମ୍ବା ଚକ୍ଷୁଃ ପୀଡ଼ୈବ କେବଳଂ ।

ଯେଉଁ ପୁତ୍ର ପଣ୍ଡିତ ଓ ଧାର୍ମିକ ନୁହେ ସେ ପୁତ୍ର ଦ୍ୱାରା କି ଫଳ ? କାଣ-ଚକ୍ଷୁ କେବଳ ପୀଡ଼ାର କାରଣ ହୁଏ ।

ଅଜାତ ମୃତ ମୂର୍ଖାଣାଂ ବରମାଦ୍ୟୌ ନ ଚାନ୍ତିମଃ ।
ସକୃଦ୍ଦୁଃଖକରାବାଦ୍ୟାବନ୍ତିମସ୍ତୁ ପଦେ ପଦେ ।

ପୁନଶ୍ଚ ଅଜାତ, ମୃତ ଓ ମୂର୍ଖ ଏମାନଙ୍କ ମଧ୍ୟରେ ଆଦ୍ୟ ଦ୍ୱୟ ଭଲ, ଅନ୍ତିମ ଭଲ ନୁହେଁ; ଯେହେତୁ ଆଦ୍ୟଦ୍ୱୟ ଅଳ୍ପମାତ୍ର ଦୁଃଖଦାୟକ ହୁଏ, ଅନ୍ତିମ ଅନୁକ୍ଷଣେ ଦୁଃଖଦାୟକ ହୁଏ ।

ବରଂ ଗର୍ଭସ୍ରାବୋ ବରମପି ଚ ନୈବାଭିଗମନଂ,
ବରଂ ଜାତଃ ପ୍ରେତୋ ବରମପି ଚ କନ୍ୟାବଜନିତା ।
ବରଂ ବନ୍ଧ୍ୟା ଭାର୍ଯ୍ୟା ବରମପି ଚ ଗର୍ଭେଷୁ ବସତିଃ,
ନ ଚାବିଦ୍ୱାନ୍‌ରୂପଦ୍ରବିଣଗୁଣଯୁକ୍ତୋଽପି ତନୟଃ ॥

ଗର୍ଭସ୍ରାବ ହେବାର ଭଲ, ଅଥବା ଅଭିଗମନ ନ କରିବା ଭଲ, କିମ୍ବା ଜାତ ହେଲା କ୍ଷଣି ମରିଯିବା ଭଲ, ଅବା କନ୍ୟା ଜନ୍ମିବା ଭଲ, ଅଥବା ଭାର୍ଯ୍ୟା ବନ୍ଧ୍ୟା ହେବା ଭଲ, କିଅବା ସର୍ବଦା ଗର୍ଭବାସ ଶ୍ରେଷ୍ଠ, ମାତ୍ର ରୂପ ଅନେକ ଧନସମ୍ପତ୍ତିଯୁକ୍ତ ପୁତ୍ର ମୂର୍ଖ ହେବା କଦାପି ଭଲ ନୁହେ ।

ସ ଜାତୋ ଯେନ ଜାତେନ ଯାତି ବଂଶଃ ସମୁନ୍ନତିଂ ।
ପରିବର୍ତ୍ତିନି ସଂସାରେ ମୃତଃ କୋବା ନ ଜାୟତେ ॥

ଯେଉଁ ପୁତ୍ର ଜନ୍ମିଲେ ବଂଶ ବୃଦ୍ଧି ହୁଏ ତାହାର ଜନ୍ମ ଯଥାର୍ଥ, ନତୁବା ଜନ୍ମ ମରଣ ଧର୍ମଶୀଳ ସଂସାରରେ କିଏ ଅବା ମରି ନ ଜନ୍ମେ ।

ଗୁଣିଗଣଗଣନାରମ୍ଭେ ନ ପତତି କଠିନୀ ସସମ୍ଭ୍ରମାଦ୍ୟସ୍ୟ ।
ତେନାମ୍ବା ଯଦି ସୁତିନୀ ବଦ ବନ୍ଧ୍ୟା କୀଦୃଶୀଭବତି ॥

ଗୁଣିସମୂହର ଗଣନାରମ୍ଭବେଳେ ଅମ୍ଭ୍ରମରେ ଯାହା ନାମରେ ଖଡ଼ି ନ ପଡ଼େ ସେ ପୁତ୍ର ଦ୍ୱାରା ମାତା ଯେବେ ପୁତ୍ରବତୀ ହୁଏ, ତେବେ କହ, ବନ୍ଧ୍ୟା କେମନ୍ତ ହୁଏ ?

ଦାନେ ତପସି ଶୌର୍ଯ୍ୟେ ଚ ଯସ୍ୟ ନ ପ୍ରଥିତଂ ଯଶଃ ।
ବିଦ୍ୟାୟାମର୍ଥଲାଭେ ଚ ମାତୁରୁଚ୍ଚାର ଏ ବସଃ ॥

ଦାନ, ତପସ୍ୟା, ଶୌର୍ଯ୍ୟ, ବିଦ୍ୟା ଏବଂ ଧନାର୍ଜନରେ ଯାହାର ଉତ୍ତମରୂପେ ଯଶ ନ ହୁଏ ସେ ପୁତ୍ର ପୁତ୍ର ନୁହେ, କିନ୍ତୁ ମାତାର ପୁରୀଷମାତ୍ର ଅଟେ ।

ବରମେକୋ ଗୁଣୀ ପୁତ୍ରୋ ନ ଚ ମୂର୍ଖଶତୈରପି ।
ଏକଶ୍ଚନ୍ଦ୍ରସ୍ତମୋହନ୍ତି ନ ଚ ତାରା ଗଣୈରପି ॥

ଗୁଣବାନ୍ ଏକ ପୁତ୍ର ଭଲ, ତଥାପି ଶତ ୨ ମୂର୍ଖ ପୁତ୍ର କିଛି ନୁହନ୍ତି; ଯେମନ୍ତ ଏକ ଚନ୍ଦ୍ର ଅନ୍ଧକାର ନଷ୍ଟ କରେ, ମାତ୍ର ତାରାସମୂହ କିଛି କରି ନ ପାରନ୍ତି । ଏବଂ କୌଣସି ପୁଣ୍ୟତୀର୍ଥରେ ଅତିଦୁଷ୍କର ତପସ୍ୟା ଯେ କରି ଥାଏ, ତାହାର ପୁତ୍ର ବଶ୍ୟ, ଧନବାନ୍, ଧାର୍ମିକ ଓ ପଣ୍ଡିତ ହୁଏ । ତାହା ପଣ୍ଡିତମାନେ କହି ଅଛନ୍ତି ଯଥା ।

ଅର୍ଥାଗମୋ ନିତ୍ୟମରୋଗିତା ଚ,
ପ୍ରିୟାଚ ଭାର୍ଯ୍ୟା ପ୍ରିୟବାଦିନୀ ଚ ।
ବଶ୍ୟଶ୍ଚ ପୁତ୍ରୋଽର୍ଥକରୀ ଚ ବିଦ୍ୟା,
ଷଡ଼୍ଜୀବ ଲୋକସ୍ୟ ସୁଖାନି ରାଜନ୍ ।

ପ୍ରତିଦିନ ଅର୍ଥର ଆଗମନ, ଅରୋଗିତା, ପ୍ରିୟବାଦିନୀ ପ୍ରିୟା ଭାର୍ଯ୍ୟା, ବଶ୍ୟ ପୁତ୍ର, ଅର୍ଥକରୀ ବିଦ୍ୟା ଏହି ଛ ସଂସାରରେ ସୁଖଦାୟକ ହୁଏ । ଆଉ ଗୋଲା ଘର ପୂରଣାର୍ଥେ ଯେଉଁ ଆଢ଼ି, ତତ୍ତୁଲ୍ୟ ଅନେକ ପୁତ୍ରରେ କିଏ ଧନ୍ୟ ହୁଏ ? କିନ୍ତୁ କୌଳିକ ଧର୍ମାବଲମ୍ବୀ ଏକ ପୁତ୍ରହିଁ ଭଲ, ଯାହା ଦ୍ୱାରା ପିତା ବିଖ୍ୟାତ ହୁଏ ।

ବର୍ତ୍ତମାନ ଆମ୍ଭର ଏହି ପୁତ୍ରମାନଙ୍କୁ ଗୁଣବନ୍ତ କରାଇବା ଉଚିତ, ଯେହେତୁର,

ଆହାରନିଦ୍ରାଭୟମୈଥୁନଂଚ,
ସାମାନ୍ୟମେତତ୍ ପଶୁଭିର୍ନରାଣାଂ ।
ଧର୍ମୋ ହିତେଷା ମଧିକୋ ବିଶେଷୋ,
ଧର୍ମେଣ ହୀନାଃ ପଶୁଭିଃ ସମାନାଃ ।

ଆହାର, ନିଦ୍ରା, ଭୟ, ମୈଥୁନ ଏହି ସକଳ ବ୍ୟବହାର ପଶୁମାନଙ୍କର ଯାଦୃଶ, ମନୁଷ୍ୟମାନଙ୍କରସୁଦ୍ଧା ତାଦୃଶ ହୁଏ; କିନ୍ତୁ ପଶୁମାନଙ୍କଠାରୁ ମନୁଷ୍ୟଙ୍କର ଅଧିକ ଧର୍ମ, ଏହି ବିଶେଷ । ଅତଏବ,

ଧର୍ମାର୍ଥକାମମୋକ୍ଷାଣାଂ ଯସ୍ୟୈକୋଽପି ନ ବିଦ୍ୟତେ,
ଅଜାଗଲସ୍ତନସ୍ୟେବ ତସ୍ୟ ଜନ୍ମ ନିରର୍ଥକଂ ।

ଧର୍ମହୀନ ମନୁଷ୍ୟମାନେ ପଶୁ ସମାନ; ଯେହେତୁରୁ ଧର୍ମ, ଅର୍ଥ, କାମ, ମୋକ୍ଷ ଏ ଚାରି ମଧ୍ୟରୁ ଯାହାର ଗୋଟିଏସୁଦ୍ଧା ନାହିଁ ତାହା ଜନ୍ମ ଛାଗଲ ଗଳଦେଶସ୍ଥିତ ସ୍ତନପରି ନିରର୍ଥକ ଅଟେ ।

ଆୟୁଃ କର୍ମ ଚ ବିତ୍ତଂଚ ବିଦ୍ୟା ନିଧନ ମେବଚ ।
ପଞ୍ଚୈତାନ୍ୟପି ସୃଜ୍ୟନ୍ତେ ଗର୍ଭସ୍ଥସ୍ୟୈବ ଦେହିନଃ ॥

ଆୟୁ, କର୍ମ, ଧନ, ବିଦ୍ୟା, ମରଣ ଏହି ପାଞ୍ଚ ଜୀବର ଗର୍ଭବାସ ଅବସ୍ଥାରେ ସର୍ଜନା ହୁଏ ।

ଅବଶ୍ୟଂ ଭାବିନୋ ଭାବା ଭବନ୍ତି ମହତାମପି ।
ନଗ୍ନତ୍ୱଂ ନୀଳକଣ୍ଠସ୍ୟ ମହାହିଶୟନଂ ହରେଃ ॥

ଅବଶ୍ୟଭାବି ପଦାର୍ଥ ସକଳ ବଡ଼ ଲୋକଙ୍କରସୁଦ୍ଧା ହୁଅନ୍ତି; ଦେଖ, ମହାଦେବଙ୍କର ନଗ୍ନତ୍ୱ, ଏବଂ ହରିଙ୍କର ମହାସର୍ପଶଯ୍ୟା ହୋଇଅଛି ।

ଯଦଭାବି ନ ତଦ୍ଭାବି ଭାବି ଚେନ୍ନତଦ ନ୍ୟଥା ।
ଇତି ଚିନ୍ତାବିଷଘ୍ନୋଽୟମଗଦଃ କିଂ ନ ପୀୟତେ ॥

ଯେ ହେବାର ଉପଯୁକ୍ତ ନୁହେ ସେ ହୋଇ ନ ପାରେ, ଯେ ହେବାର ଉପଯୁକ୍ତ ତାହାର ଅନ୍ୟଥା ହୋଇ ନ ପାରେ, ଏହି ଚିନ୍ତାରୂପବିଷନାଶକ ଔଷଧକୁ ଲୋକେ କି ହେତୁରୁ ପାନ ନ କରନ୍ତି ?

କୌଣସି କାର୍ଯ୍ୟାକ୍ଷମ ଲୋକମାନଙ୍କର ଏ ଆଳସ୍ୟ ବଚନ; କାରଣ କି,

ଯଥା ହ୍ୟେକେନ ଚକ୍ରେଣ ନ ରଥସ୍ୟ ଗତି ର୍ଭବେତ୍ ।
ଏବଂ ପୁରୁଷକାରେଣ ବିନା ଦୈବଂ ନ ସିଧ୍ୟତି ॥

ଯେମନ୍ତ ଏକ ଚକ୍ରରେ ରଥର ଗତି ହୁଏ ନାହିଁ, ସେହିରୂପ ପୁରୁଷାର୍ଥ ବ୍ୟତିରେକେ ଦୈବ ସିଦ୍ଧ ହୁଏ ନାହିଁ ।

ପୂର୍ବଜନ୍ମକୃତଂ କର୍ମ ତଦ୍ଦୈବମିତି କଥ୍ୟତେ ।
ତସ୍ମାତ୍ପୁରୁଷକାରେଣ ଯତ୍ନଂ କୁର୍ଯାଦତନ୍ଦ୍ରିତଃ ॥

ପୂର୍ବ ଜନ୍ମ କୃତକର୍ମକୁ ଦୈବ କୁହାଯାଏ; ସେହି ହେତୁରୁ ନିରାଳସ୍ୟ ହୋଇ ପୁରୁଷାର୍ଥରେ ଯତ୍ନ କରିବ ।

ଉଦ୍‌ଯୋଗିନଂ ପୁରୁଷସିଂହମୁପୈତି ଲକ୍ଷ୍ମୀ ।
ଦୈବେନ ଦେୟମିତି କାପୁରୁଷା ବଦନ୍ତି ।
ଦୈବଂ ନିହତ୍ୟ କୁରୁପୌରୁଷମାତ୍ମଶକ୍ତ୍ୟା ।
ଯତ୍ନେ କୃତେ ଯଦି ନ ସିଧ୍ୟତି କୋଽତ୍ର ଦୋଷଃ ॥

ଉଦ୍‌ଯୋଗି ପୁରୁଷସିଂହକୁ ଲକ୍ଷ୍ମୀ ମିଳନ୍ତି; ଅଦୃଷ୍ଟ ହେତୁରୁ ହୁଏ, ଇହା କାପୁରୁଷମାନେ ବୋଲନ୍ତି । ଅତଏବ ଅଦୃଷ୍ଟକୁ ଅନାଦର କରି ଆପଣା ଶକ୍ତ୍ୟନୁସାରେ ପୁରୁଷାର୍ଥ ପ୍ରକାଶ କର; ଯତ୍ନ କଲେ ଯେବେ କାର୍ଯସିଦ୍ଧି ନ ହୁଏ, ତେବେ କି ଦୋଷ ?

ଯଥା ମୃତ୍ପିଣ୍ଡତଃ କର୍ତ୍ତା କୁରୁତେ ଯଦ୍‌ଯଦିଚ୍ଛତି ।
ଏବମାତ୍ମକୃତଂ କର୍ମ ମାନବଃ ପ୍ରତିପଦ୍ୟତେ ।

ଯେମନ୍ତ କୁଲାଲ ଘଟଶରାବାଦି ଯାହା ୨ ଇଚ୍ଛା କରେ ତାହା ଏକ ମୃତ୍ପିଣ୍ଡରୁ ନିର୍ମାଣ କରେ, ତେମନ୍ତ ମନୁଷ୍ୟ ଆପଣା କୃତକର୍ମରୁ ନାନା ଫଳପାଏ ।

କାକତାଳୀୟବତ୍ପ୍ରାପ୍ତଂ ଦୃଷ୍ଟ୍ୱାପି ନିଧିମଗ୍ରତଃ ।
ନସ୍ୱୟଂ ଦୈବମାଦତ୍ତେ ପୁରୁଷାର୍ଥ ମପେକ୍ଷତେ ।

ସମ୍ମୁଖରେ କାକତାଳୀୟନ୍ୟାୟ ଅକସ୍ମାତ ପ୍ରାପ୍ତନିଧିକୁ ଦେଖିଲେ ସୁଦ୍ଧା ଦୈବ ଆପେ ଆଣି ଦିଏ ନାହିଁ, କିନ୍ତୁ ପୁରୁଷାର୍ଥ ଅପେକ୍ଷା କରେ; ଯେହେତୁରୁ

ଉଦ୍ୟମେନ ହି ସିଧ୍ୟନ୍ତି କାର୍ଯାଣି ନ ମନୋରଥୈଃ ।
ନହି ସୁପ୍ତସ୍ୟ ସିଂହସ୍ୟ ପ୍ରବିଶନ୍ତି ମୁଖେ ମୃଗାଃ ॥

ଉଦ୍‌ଯୋଗରେ ସବୁ କାର୍ଯ୍ୟ ସିଦ୍ଧ ହୁଏ, ମନୋରଥମାନରେ ହୁଏ ନାହିଁ ; କାହିଁକି ନା, ସୁପ୍ତସିଂହ ମୁଖରେ ମୃଗମାନେ ଆପେ ଆସି ପ୍ରବେଶ କରନ୍ତି ନାହିଁ ।

ମାତା ଶତ୍ରୁଃ ପିତା ବୈରୀ ଯେନ ବାଲୋ ନ ପାଠିତଃ ।
ନ ଶୋଭତେ ସଭାମଧ୍ୟେ ହଂସମଧ୍ୟେ ବକୋ ଯଥା ॥

ଯେଉଁ ପିତା ମାତା ବାଳକକୁ ପାଠ ନ ପଢ଼ାନ୍ତି ସେ ପିତା ମାତା ଶତ୍ରୁ; ସେ ବାଳକ ସଭାମଧ୍ୟରେ ଶୋଭା ପାଏ ନାହିଁ, ଯେମନ୍ତ ହଂସମଧ୍ୟରେ ବକ ।

ରୂପଯୌବନସମ୍ପନ୍ନା ବିଶାଳକୁଳସମ୍ଭବାଃ ।
ବିଦ୍ୟାହୀନା ନ ଶୋଭନ୍ତେ ନିର୍ଗନ୍ଧା ଇବ କିଂଶୁକାଃ ॥

ରୂପ ଓ ଯୌବନରେ ସମ୍ପନ୍ନ ଏବଂ ସତ୍କୁଳପ୍ରସୂତ ଯେଉଁମାନେ ସେମାନେସୁଦ୍ଧା ବିଦ୍ୟାହୀନ ହେଲେ ଶୋଭା ପାନ୍ତି ନାହିଁ, ଯେମନ୍ତ ଗନ୍ଧହୀନ ପଳାଶପୁଷ୍ପ ।

ଇହା ଚିନ୍ତା କରି ସେ ରାଜା ପଣ୍ଡିତସଭା କରାଇଲେ । ଅନନ୍ତର ରାଜା କହିଲେ, ହେ ପଣ୍ଡିତଗଣ, ଆପଣମାନେ ଆମ୍ଭ କଥା ଶ୍ରବଣ କରିବା ହେଉନ୍ତୁ; ନିତ୍ୟ କୁପଥଗାମି ଓ ଅବିଦ୍ଧତଶାସ୍ତ୍ର ଯେ ଆମ୍ଭ ପୁତ୍ରମାନେ ସେମାନଙ୍କୁ ବର୍ତ୍ତମାନ ନୀତି ଶାସ୍ତ୍ରୋପଦେଶ ଦ୍ୱାରା ପୁନର୍ଜନ୍ମ କରାଇବାକୁ ସମର୍ଥ ହେବେ, ଏମନ୍ତ ପଣ୍ଡିତ କେହି ଅଛନ୍ତି ? ଯେହେତୁରୁ,

କାଚଃ କାଞ୍ଚନସଂସର୍ଗାଦ୍ଧତ୍ତେ ମାରକତୀଂ ଦ୍ୟୁତିଂ ।
ତଥା ସତ୍ସନ୍ନିଧାନେନ ମୂର୍ଖୋ ଯାତି ପ୍ରବୀଣତାଂ ॥

କାଞ୍ଚନ ସଂସର୍ଗରେ କାଚ ଯେମନ୍ତ ମରକତ ମଣିର ଦୀପ୍ତି ଧାରଣ କରେ, ତେମନ୍ତ ପଣ୍ଡିତ ସନ୍ନିଧାନରେ ମୂର୍ଖସୁଦ୍ଧା ପ୍ରବୀଣତା ପ୍ରାପ୍ତ ହୁଏ ।

ହୀୟତେ ହି ମତିସ୍ତାତ ହୀନୈଃ ସହ ସମାଗମାତ୍ ।
ସମୈଶ୍ଚ ସମତାମେତି ବିଶିଷ୍ଟୈଶ୍ଚ ବିଶିଷ୍ଟତାଂ ॥

ହୀନ ଲୋକଙ୍କ ସଙ୍ଗ କଲେ ମତି ହୀନ ହୁଏ, ଏବଂ ସ୍ୱସମାନ ଲୋକଙ୍କ ସହବାସରେ ମତି ସମତାକୁ ପ୍ରାପ୍ତ ହୁଏ, ଅଥଚ ଉତ୍ତମ ଲୋକଙ୍କ ସଙ୍ଗରେ ମତି ଉତ୍ତମ ହୁଏ ।

ଏଥି ମଧ୍ୟରେ ବୃହସ୍ପତିତୁଲ୍ୟ ସକଳ ନୀତିଶାସ୍ତ୍ରର ଯଥାର୍ଥଜ୍ଞାତା ବିଷ୍ଣୁଶର୍ମ ନାମରେ ଜଣେ ପଣ୍ଡିତ କହିଲେ, ହେ ମହାରାଜ, ଏହି ରାଜପୁତ୍ରମାନେ ସତ୍କୁଳପ୍ରସୂତ ଅଟନ୍ତି, ଏହେତୁରୁ ଅମ୍ଭେ ସେମାନଙ୍କୁ ନୀତିଶାସ୍ତ୍ର ଗ୍ରହଣ କରାଇ ପାରୁଁ ; ଯେହେତୁରୁ,

ନା ଦ୍ରବ୍ୟେ ନିହିତା କାଚିତ୍କ୍ରିୟା ଫଳବତୀ ଭବେତ୍ ।
ନ ବ୍ୟାପାରଶତେନାପି ଶୁକବତ୍ପାଠ୍ୟତେ ବକଃ ॥

କୌଣସି ନିଃସ୍ୱ ଅସ୍ଥାନପତିତ ହେଲେ ଫଳବତୀ ହୁଏ ନାହିଁ, ଯେମନ୍ତ ନାନା ପ୍ରକାର ଯତ୍ନ ହେଲେହେଁ ବକ ଶୁକପକ୍ଷି ପରି କଦାପି ପଢେ ନାହିଁ ।

ଅପିଂସ୍ତୁ ନିର୍ଗୁଣଂ ଗୋତ୍ରେ ନାପତ୍ୟ ମୁପଜାୟତେ ।
ଆକରେ ପଦ୍ମରାଗାଣାଂ ଜନ୍ମ କାଚମଣେଃ କୁତଃ ॥

ପୁନଶ୍ଚ ଏ ଗୋତ୍ରରେ ନିର୍ଗୁଣ ସନ୍ତାନ ଜନ୍ମେ ନାହିଁ ; ଯେହେତୁର ପଦ୍ମରାଗମଣି ଆକରରେ କାଚମଣିର ଜନ୍ମ କେଉଁଠାରେ ? ଅତଏବ ଆମ୍ଭେ ଛ ମାସ ମଧ୍ୟରେ ଆପଣଙ୍କ ପୁତ୍ରମାନଙ୍କୁ ନୀତିଶାସ୍ତ୍ରଜ୍ଞ କରିବା ।

ରାଜା ପୁନର୍ବାର ବିନସ୍କାର କହିଲେ,

କୀଟୋଽପି ସୁମନଃସଙ୍ଗାଦାରୋହତି ସତାଂ ଶିରଃ ।
ଅଶ୍ମାପି ଯାତି ଦେବତ୍ୱଂ ମହଦ୍ଭିଃସୁପ୍ରତିଷ୍ଠିତଃ ॥

ପୁଷ୍ପସହବାସରେ କୀଟସୁଦ୍ଧା ସାଧୁ ଲୋକଙ୍କ ମସ୍ତକରେ ଆରୋହଣ କରେ, ମହତ୍ତ୍ୱ ଲୋକଙ୍କ ଦ୍ୱାରା ସୁପ୍ରତିଷ୍ଠିତ ହେଲେ ପ୍ରସ୍ତରମଧ୍ୟ ଦେବତା ହୁଏ ।

ଯଥୋଦୟଗିରୌ ଦ୍ରବ୍ୟଂ ସନ୍ନିକର୍ଷେଣ ଦୀପ୍ୟତେ ।
ତଥା ସତ୍ସନ୍ନିଧାନେନ ହୀନବର୍ଣ୍ଣୋଽପି ଦୀପ୍ୟତେ ॥

ଯେମନ୍ତ ଉଦୟାଚଳସ୍ଥ ଦ୍ରବ୍ୟ ସୂର୍ଯ୍ୟ ସନ୍ନିଧାନରେ ଦୀପ୍ତି ପାଏ, ତେମନ୍ତ ସତ୍ସନ୍ନିଧାନରେ ହୀନବର୍ଣ୍ଣ ହେଲେହେଁ ଦୀପ୍ତ ହୁଏ । ଆମ୍ଭର ଏହି ପୁତ୍ରଙ୍କୁ ନୀତି-ଶାସ୍ତ୍ରୋପଦେଶ ନିମନ୍ତେ ଆପଣ ପ୍ରମାଣ ହେଉନ୍ତୁ । ଇହା କହି ସେହି ବିଷ୍ଣୁ-ଶର୍ମାଙ୍କର ବହୁସମ୍ମାନପୂର୍ବକ ପୁତ୍ରମାନଙ୍କୁ ତାଙ୍କ ନିକଟରେ ସମର୍ପଣ କଲେ ।

ଅନନ୍ତର ପ୍ରାସାଦ ଉପରେ ସୁଖୋପବିଷ୍ଟ ରାଜପୁତ୍ରମାନଙ୍କ ସମ୍ମୁଖରେ ପ୍ରସ୍ତାବକ୍ରମରେ ସେହି ପଣ୍ଡିତ କହିଲେ,

ହେ ରାଜପୁତ୍ରମାନେ ଶ୍ରବଣ କର ।

କାବ୍ୟଶାସ୍ତ୍ରବିନୋଦେନକାଲୋ ଗଚ୍ଛତି ଧୀମତାଂ ।
ବ୍ୟସନେନ ଚ ମୂର୍ଖାଣାଂ ନିଦ୍ରୟା କଲହେନ ବା ॥

କାବ୍ୟଶାସ୍ତ୍ର ଆମୋଦରେ ଜ୍ଞାନୀମାନଙ୍କର କାଳଯାପନ ହୁଏ ; ବ୍ୟସନ ଅର୍ଥାତ୍ ସ୍ତ୍ରୀ, ଦ୍ୟୂତ, ପାନ, ବୃଥାପର୍ଯ୍ୟଟନ, ମୃଗୟା, ଦିବସ ନିଦ୍ରା ଓ କଳହ ଇତ୍ୟାଦିରେ ମୂର୍ଖମାନଙ୍କର କାଳଯାପନ ହୁଏ । ଅତଏବ ତୁମ୍ଭମାନଙ୍କ ଆମୋଦ ନିମନ୍ତେ କାକକୂର୍ମାଦିର ବିଚିତ୍ର କଥା କହିବା ।

ରାଜପୁତ୍ରମାନେ କହିଲେ, ବୋଲିବା ହେଉ ।

ବିଷ୍ଣୁଶର୍ମା କହୁଅଛନ୍ତି, ରାଜପୁତ୍ରମାନେ ଶ୍ରବଣ କର ।

—:o:—

# ୩ । ସୀତାଙ୍କ ବିବରଣ

## ୧—ଭାଗ

ସୀତା ମିଥିଳାଧିପତି ଜନକ ରାଜର୍ଷିଙ୍କ କୁମାରୀ ଥିଲେ । ବାଲ୍ମୀକି ମୁନି ଲେଖିଅଛନ୍ତି ଯେ ଜନକ ରାଜା ପୁତ୍ର କାମନାରେ ଯଜ୍ଞ ଭୂମି ଖୋଳୁଥିଲେ, ଏଥିମଧ୍ୟରେ ଲଙ୍ଗଳ ଫାଳରେ ଗୋଟିଏ ଅଣ୍ଡ ବାହାରିଲା । ରାଜା ସେଥି ମଧ୍ୟରୁ ଗୋଟିଏ କନ୍ୟା ପ୍ରାପ୍ତ ହୋଇ ତାହାର ନାମ ସୀତା ଦେଇ ଦୁହିତାର ନ୍ୟାୟ ପ୍ରତିପାଳନ କଲେ ପୁଣି ବିଦ୍ୟା ଶିକ୍ଷା କରାଇଲେ । ଏହି କନ୍ୟା ପରମ ରୂପବତୀ ଥିଲେ ପୁଣି କ୍ରମରେ ଗୁଣବତୀସୁଦ୍ଧା ହେଲେ । ତଦୋପରି ସୀତାଙ୍କର ବିବାହ ସମୟ ହେବାରୁ ଜନକ ରାଜା ଆପଣା ମନରେ ଏହି ସ୍ଥିର କଲେ, ଯେ ସର୍ବଗୁଣାନ୍ୱିତ ରାଜକୁମାର ମହାଦେବଙ୍କ ଧନୁର୍ଭଙ୍ଗ କରିବେ ତାଙ୍କୁ ଆମ୍ଭେ ଏହି କନ୍ୟା ସମ୍ପ୍ରଦାନ କରିବା । ଏହିରୂପ ପ୍ରତିଜ୍ଞା କରି ସେ ଦେଶଦେଶାନ୍ତରକୁ ଏହି ସମ୍ବାଦ ପଠାଇଲେ, ଯାହାର ସୀତାଙ୍କୁ ବିବାହ ହେବା ପାଇଁ ଇଚ୍ଛା ଥିବ ସେ ଆସି ଧନୁକ ଭଙ୍ଗ କରନ୍ତୁ । ଏହି ସମ୍ବାଦରେ କନ୍ୟା ରତ୍ନ ଲାଭ ଆକାଂକ୍ଷା କରି ଅନେକ ୨ ରାଜପୁତ୍ର ମିଥିଳା ନଗରକୁ ଆଗମନ କଲେ ; ମାତ୍ର ଧନୁକ ଭଙ୍ଗ କରି ନ ପାରି ସୀତାଙ୍କ ଆଶାରେ ନିରାଶ ହୋଇ ପ୍ରସ୍ଥାନ କଲେ ।

ଏହି ସମୟରେ କ୍ଷତ୍ରିୟବଂଶୀୟ ରାଜା ଦଶରଥ ଅଯୋଧ୍ୟାଧିପତି ଥିଲେ । ତାଙ୍କର ସାତ ଶ ମାହାଦେଈ ଥିଲେ ମାତ୍ର କାହାରିସୁଦ୍ଧା ସନ୍ତାନାଦି ହୋଇ ନ ଥିଲା । ତଦୋପରି କୌଶଲ୍ୟା, କେକୟୀ, ସୁମିତ୍ରା, ଏହି ତିନି ରାଣୀ ଏକାବେଳକେ ଗର୍ଭବତୀ ହେଲେ । କୌଶଲ୍ୟା ରାଣୀଙ୍କ ଗର୍ଭରୁ ରାମ, କେକେୟୀ ରାଣୀଙ୍କ ଗର୍ଭରୁ ଭରତ ଆଉ ସୁମିତ୍ରା ରାଣୀଙ୍କ ଗର୍ଭରୁ ଲକ୍ଷ୍ମଣ ଓ ଶତ୍ରୁଘ୍ନ ଯମଜ ପୁତ୍ର ଜନ୍ମିଲେ । ଏହି ଚାରି ପୁତ୍ର ଜନ୍ମିଲା ବାଦ ଜନଶ୍ରୁତି ହେଲା ଯେ, ସ୍ୱୟଂ ନାରାୟଣ ଅଂଶଚତୁଷ୍ଟୟରେ ଅବତୀର୍ଣ୍ଣ ହୋଇଅଛନ୍ତି । ତଦୋପରି ଏହି ଚାରି ଭ୍ରାତାଙ୍କର କିଞ୍ଚିଦ୍‌ବୟୋବୃଦ୍ଧି ହେଲାରୁ ସେମାନେ ବିଦ୍ୟାଭ୍ୟାସ କରିବାକୁ ଆରମ୍ଭ କଲେ, ଏବଂ ଅଳ୍ପକାଳ ଭିତରେ ଶାସ୍ତ୍ର ଓ ଶସ୍ତ୍ର ବିଦ୍ୟାରେ ଏପ୍ରକାର ସୁପଣ୍ଡିତ ହେଲେ ଯେ, ସେ ସମୟରେ ତାଙ୍କ ସମାନ ପଣ୍ଡିତ ବା ବୀର ପୃଥିବୀରେ କେହି ନ ଥିଲା । ଅଧିକନ୍ତୁ ଚାରି ଭ୍ରାତାଙ୍କର ଅତ୍ୟନ୍ତ ପ୍ରଣୟ ଜନ୍ମିଲା । ସେଇ

ସମସ୍ତରେ ନିରନ୍ତର ବିଧ୍ବଂସକ ରାକ୍ଷସମାନଙ୍କର ଅତ୍ୟନ୍ତ ଦୌରାତ୍ମ୍ୟ ଥିଲା । ବିଶେଷତଃ ବ୍ରାହ୍ମଣ ପଣ୍ଡିତମାନେ କୌଣସି ଯାଗଯଜ୍ଞ ବା ଧର୍ମକର୍ମ ଅନୁଷ୍ଠାନ କଲେ ସେମାନେ ଅସ୍ଥି ଓ ଶୋଣିତପ୍ରଭୃତି ପ୍ରକ୍ଷେପ କରି ତାହା ନଷ୍ଟ କରୁଥିଲେ, ତନ୍ନିମିତ୍ତରେ ବ୍ରାହ୍ମଣ ପଣ୍ଡିତମାନେ ଅତ୍ୟନ୍ତ ବିରକ୍ତ ହୋଇ ଥିଲେ । ଏହି ଉପଦ୍ରବ ନିବାରଣ ନିମନ୍ତେ ବିଶ୍ୱାମିତ୍ର ମୁନି ରାଜା ଦଶରଥଙ୍କ ନିକଟକୁ ଯାଇ ଏହି ପ୍ରାର୍ଥନା କଲେ, ଯେବେ ନିଶାଚରମାନଙ୍କ ଦୌରାତ୍ମ୍ୟ ନିବାରଣ ନିମନ୍ତେ ଆପଣ ରାମ ଓ ଲକ୍ଷ୍ମଣଙ୍କୁ ଦେବେ ତେବେ ଆମ୍ଭେମାନେ ନିର୍ବିଘ୍ନରେ ଯଜ୍ଞ ସମାଧା କରି ପାରିବୁଁ । ରାଜା ଦଶରଥ ଯେବେ ତନ୍ନିମିତ୍ତରେ ମନେ ମନେ ଅସମ୍ମତ ଥିଲେ, ତଥାପି ବ୍ରହ୍ମଶାପ ଆଶଙ୍କାରେ ଅନାୟତ୍ତ ହୋଇ ସମ୍ମତ ହେଲେ । ତଦାଦି ବିଶ୍ୱାମିତ୍ର ମୁନି ରାମ ଓ ଲକ୍ଷ୍ମଣ ଦୁଇ ଭାଇଙ୍କୁ ସଙ୍ଗେ ଘେନି ଗଲେ, ଏବଂ ସେମାନେ ତାଡ଼କାପ୍ରଭୃତି ଅନେକ ରାକ୍ଷସ ରାକ୍ଷସୀ ବଧ କଲେ, ସେଥିରେ ମୁନିଗଣ ସ୍ୱଚ୍ଛନ୍ଦରେ ଯଜ୍ଞ ସମାଧା କରି ରାମ ଲକ୍ଷ୍ମଣଙ୍କୁ ଅଶେଷ ପ୍ରକାରେ ଆଶୀର୍ବାଦ କଲେ ।

ଅନନ୍ତର ଯେତେବେଳେ ବିଶ୍ୱାମିତ୍ର ମୁନି ରାମ ଲକ୍ଷ୍ମଣଙ୍କୁ ଗୃହକୁ ପ୍ରତ୍ୟାଗତ କରୁଥିଲେ ସେତେବେଳେ ଜନକ ରାଜାଙ୍କ ଧନୁର୍ଭଙ୍ଗର ପ୍ରତିଜ୍ଞା କଥା ଶ୍ରବଣ କରି ସେମାନେ ତଦୀୟ ରାଜ୍ୟକୁ ଗମନେଚ୍ଛୁ ହେଲେ । ତନ୍ନିମିତ୍ତରେ ବିଶ୍ୱାମିତ୍ର ମୁନି ସେ ଦୁହିଙ୍କୁ ମିଥିଳା ନଗର ଜନକ ରାଜାଙ୍କ ସମୀପକୁ ଘେନି ଗଲେ । ଜନକ ରାଜା ନବ ଦୂର୍ବାଦଳ-ଶ୍ୟାମ ରାମଚନ୍ଦ୍ରଙ୍କୁ ଦେଖି ଏବଂ ତାଙ୍କ ଗୁଣାନୁବାଦ ଶୁଣିଲାରୁ ଆହ୍ଲାଦିତ ହୋଇ ନିର୍ଜନ ସ୍ଥାନରେ ବିଶ୍ୱାମିତ୍ର ମୁନିଙ୍କୁ କହିଲେ, ଆମ୍ଭେ ଇହାଙ୍କୁ କନ୍ୟା ଦାନ କରିବା, ଏହି ଆମ୍ଭର ନିତାନ୍ତ ବାଞ୍ଛା, ମାତ୍ର ଧନୁର୍ଭଙ୍ଗ ନ କଲେ ପ୍ରତିଜ୍ଞା ଭଙ୍ଗର ଅପଯଶ ହେବ, ଏହି ମାତ୍ର ଆଶଙ୍କ ହୁଏ । ସୀତା ମଧ୍ୟ ତଦ୍‌ଗୁଣ ଶ୍ରବଣରେ ମୋହିତ ହୋଇ ଅନ୍ତଃପୁରରୁ ତାଙ୍କୁ ଦର୍ଶନ କଲେ ଏବଂ ଦର୍ଶନାବଧି ତାଙ୍କଠାରେ ଆପଣା ମନ ସମର୍ପଣ କଲେ । ମାତ୍ର ତାଙ୍କର କୋମଳ ଶରୀର, ସେ ଏହି ବିଷମ ଧନୁକ କିରୂପେ ଭାଙ୍ଗିବେ ଏହି କଥା ଭାବନା କଲେ । ମାତ୍ର ରାମ ଭଗ୍ନୋତ୍ସାହ ବା ଭୀତ ନ ହୋଇ ଅନେକ ଅନେକ ମହାବଳ ରାଜାମାନେ ଯେଉଁ ଧନୁକ ନତ କରିବାକୁ ମଧ୍ୟ ପାରି ନ ଥିଲେ, ସେହି ଧନୁକ ଅନାୟାସରେ ଭାଙ୍ଗିଲେ ।

ରାମ ଧନୁକ ଭଙ୍ଗ କଲା ବାଦ ଜନକ ରାଜା ଅତ୍ୟନ୍ତ ଆହ୍ଲାଦିତ ହୋଇ ତାଙ୍କୁ କନ୍ୟା ପ୍ରଦାନ କରିବାକୁ ପ୍ରସ୍ତୁତ ହେଲେ । ମାତ୍ର ରାମ ପିତାଙ୍କ ଅନୁମତି ବିନା ବିବାହ କରିବାକୁ ସମ୍ମତ ନ ହୋଇ ପିତାଙ୍କୁ ଏହି ବୃତ୍ତାନ୍ତ ଜଣାଇ ଭରତ

ଶତ୍ରୁଘ୍ନଙ୍କୁ ଆଣାଇବା ଲାଗି ଦୂତ ପ୍ରେରଣ କରିବା ନିମନ୍ତେ କହିଲେ । ଜନକ ରାଜା ତଦନୁସାରେ ଅଯୋଧ୍ୟା ନଗରକୁ ଦୂତ ପଠାଇଲେ । ରାଜା ଦଶରଥ ଏହି ସମ୍ବାଦରେ ପରମାନନ୍ଦିତ ହୋଇ ଭରତ ଓ ଶତ୍ରୁଘ୍ନଙ୍କୁ ଘେନି ବନ୍ଧୁ-ସମାବେଶ ପୂର୍ବକ ମିଥିଲା ନଗରକୁ ଗମନ କଲେ । ଜନକ ରାଜା ଯଥୋଚିତ ସମାଦରପୂର୍ବକ ତାଙ୍କୁ ଅଭ୍ୟର୍ଥନା କରି ତଦାଦି ଶୁଭ ଲଗ୍ନ ସ୍ଥିର କରି ସେ ରାମଚନ୍ଦ୍ରଙ୍କୁ ସୀତା ସମ୍ପ୍ରଦାନ କଲେ । ପରନ୍ତୁ ଊର୍ମିଳା ନାମରେ ତାଙ୍କର ଆଉ ଏକ କନ୍ୟା ଥିଲା, ଲକ୍ଷ୍ମଣଙ୍କ ସହିତ ତାକୁ ବିବାହ କଲେ । ଏବଂ କୁଶଧ୍ୱଜ ନାମରେ ତାଙ୍କର ଏକ ଅନୁଜର ପରମ ସୁନ୍ଦରୀ ଦୁଇ କନ୍ୟା ଥିଲେ, ଭରତ ଓ ଶତ୍ରୁଘ୍ନଙ୍କୁ ସେହି ଦୁଇ କନ୍ୟା ଦାନ କଲେ । ଏହିରୂପେ ଚାରି ପୁତ୍ରଙ୍କୁ ବିବାହ କରାଇ ରାଜା ଦଶରଥ ପୁତ୍ର ଓ ପୁତ୍ରବଧୂମାନଙ୍କୁ ଘେନି ସ୍ୱଦେଶକୁ ପ୍ରତ୍ୟାଗମନ କଲେ; ସେମାନଙ୍କ ଆସିବାରେ ଅଯୋଧ୍ୟା ନଗରରେ ମହା ଆନନ୍ଦୋତ୍ସବ ହେଲା ଏବଂ ରାଜା ଦଶରଥ ଅନେକ ପୁଣ୍ୟ ଓ ଦାନ ବିତରଣ କଲେ ।

ତଦନନ୍ତର ଭରତ ଶତ୍ରୁଘ୍ନ ସମଭିବ୍ୟାହାରରେ ହସ୍ତିନା ନଗରସ୍ଥ ମାତା ମହାଳୟକୁ ଗମନ କଲେ । ଏଥିରେ କିଛି କାଳ ଗତ ହେଲାରୁ ରାଜା ଦଶରଥ ଆପଣାର ବୟୋଧିକ୍ୟ ହେତୁରୁ ଆପଣାକୁ ରାଜ କର୍ମରେ ଅକ୍ଷମ ବିବେଚନା କରି ସୁହୃଦ-ସ୍ୱଜନଗଣ ଓ ପାତ୍ରମିତ୍ରମାନଙ୍କ ପରାମର୍ଶ ଅନୁସାରେ ରାମଙ୍କୁ ରାଜତ୍ୱ ଦେଇ ଆପେ ସ୍ୱଚ୍ଛନ୍ଦରେ ରହିବା ବାଞ୍ଛାରେ ତାଙ୍କୁ କହିଲେ, ଆମ୍ଭେ ବୃଦ୍ଧ ଏବଂ ରାଜକର୍ମରେ ଅକ୍ଷମ ହୋଇଅଛୁଁ, ଅତଏବ ତୁମ୍ଭେ ଆମ୍ଭର ଜ୍ୟେଷ୍ଠ ପୁତ୍ର ତୁମ୍ଭଙ୍କୁ ରାଜ୍ୟ ପ୍ରଦାନ କରି ଆମ୍ଭେ ରାଜକର୍ମରୁ ଅବସର ହେବାକୁ ଇଚ୍ଛା କରୁଅଛୁଁ, ତୁମ୍ଭେ ରାଜ୍ୟଭାର ଗ୍ରହଣ କରି ଯଥା ନିୟମରେ ପ୍ରଜା ପାଳନ କର । ଯାହାର ଯେଉଁ ଅଭିଯୋଗ ଆଏ ତାହା ଶୁଣି ବିଚାର କରିବ । ରାଜନୀତି ଓ ଧର୍ମ ଶିକ୍ଷା କରି ଯହିଁରେ ଆପଣାର ମାନବୃଦ୍ଧି ହୁଏ ତାହା କରିବ । ପରର ସୁନ୍ଦରୀ ସ୍ତ୍ରୀ ଦେଖିଲେ ତାହାଠାରେ କୁଦୃଷ୍ଟି କରିବ ନାହିଁ । ପରହିଂସା ଓ ପରପୀଡ଼ନ କରିବ ନାହିଁ । ପରଧନରେ ଲୋଭ କରିବ ନାହିଁ । ବିନା ଅପରାଧରେ କାହାରିକୁ ମଧ୍ୟ ପ୍ରାଣଦଣ୍ଡ କରିବ ନାହିଁ । ପରଦାର ପରାଧୀନ ଓ ପରପୀଡ଼କଙ୍କୁ ଶାସ୍ତ୍ରାନୁସାରେ ଦଣ୍ଡ ଦେବ । ଯାହାର ଯେମନ୍ତ ଅପରାଧ ତାକୁ ସେହିରୂପ ଦଣ୍ଡ ବିଧାନ କରିବ । ତପ ଜପ ଓ ଧର୍ମ କର୍ମ କରିବ, ଏବଂ ଦେବତା ବ୍ରାହ୍ମଣଙ୍କଠାରେ ଭକ୍ତି ରଖିବ । ସମସ୍ତଙ୍କ ପ୍ରତି ସଦୟ ଓ ସଦାଶୟ

ହେବ, ଅନାଥ ଦୀନ ଦୁଃଖିଙ୍କୁ ପ୍ରତିପାଳନ କରିବ । ଅଧିକ କି କହିବା, ଯହିଁରେ କାହାରି ଦୁଃଖ ନ ହୁଏ ଏ ପ୍ରକାର କର୍ମ କରିବ । ଇତ୍ୟାଦି ନାନା ପ୍ରକାର ଉପଦେଶ ଦେଇ ପରିଦିନ ରାଜ୍ୟ ଦେବେ ଏହି ସ୍ଥିର କରି ଅଧିବାସ କରାଇଲେ ।

## ୪ । ଦେଶୀୟ ଭାଷା ନ ଜାଣିବାର ପ୍ରତିଫଳ ।

ଯେଉଁ ଦେଶରେ ଯେଉଁ ଭାଷା ଚଳୁଥାଏ ସେ ଦେଶୀୟ ମନୁଷ୍ୟମାନଙ୍କର ସକଳ ଅଭିପ୍ରାୟ ସେହି ଭାଷାରେ ବ୍ୟକ୍ତ ହୁଏ, ମାତ୍ର ସେଇ ସବୁ ଭାଷାର ଶବ୍ଦ ଅନେକ ଏବଂ ତାହାର ଅର୍ଥ ମଧ୍ୟ ନାନାପ୍ରକାର ଅଛି, ଦେଶୀୟ ଲୋକେ ସବୁ ଶବ୍ଦର ସମସ୍ତ ଅର୍ଥ ବୁଝି ପାରନ୍ତି ନାହିଁ ଅନ୍ୟ ଲୋକଙ୍କୁ ପଚାରି ଜ୍ଞାତ ହୁଅନ୍ତି, ଅତଏବ ଜ୍ଞାନି ଲୋକେ କହନ୍ତି ଯେବେ ଅନ୍ୟଦେଶୀୟ ଲୋକେ ଅପର ଦେଶର ଭାଷା ବ୍ୟବହାର କରନ୍ତି, ତେବେ ସେଥିର ଶବ୍ଦ ପୁଣି ଶାବ୍ଦାର୍ଥ ଶିକ୍ଷାରେ ବିଲକ୍ଷଣ ମନୋଯୋଗ କରିବେ । କାରଣ ଆପଣା ୨ ଶବ୍ଦ ବୋଧରେ ଅନଭିଜ୍ଞ ହେଲେ, ଅନ୍ୟ କାହାରିଠାରେ ଏକ ଶବ୍ଦ ଅନ୍ୟ ପ୍ରକାର କହି ପାରନ୍ତି, ଏବଂ ଶବ୍ଦାର୍ଥ ନ ଜାଣିଲେ ଏକ ଶବ୍ଦର ତାତ୍ପର୍ଯ୍ୟ ଅନ୍ୟ ପ୍ରକାର କହନ୍ତି, ତହିଁରେ ଶ୍ରୋତାମାନେ ଏକ ବିଷୟ ଅନ୍ୟ ପ୍ରକାର ବୁଝି, ଯଦ୍ୟପି ବିପରୀତ ବ୍ୟବହାର କରିବେ, ତେବେ ଅନିଷ୍ଟ ସମ୍ଭାବନାମଧ୍ୟ ହେବ, ଇହାର ଏକ ଉଦାହରଣ କହୁଅଛୁଁ ମନୋଯୋଗ କର ।

ଧାନ୍ୟ ନଗରରେ ମାଧବ ଦାସ ବୋଲି ଜଣେ କ୍ଷତ୍ରିୟ ଥିଲା, ସେ ପ୍ରଥମାବସ୍ଥାରେ ଯୁଦ୍ଧ ଶିକ୍ଷା କରି ଅସ୍ତ୍ରଶସ୍ତ୍ର ଚଳାଇବାରେ ନିପୁଣ ହେଲା ପୁଣି ସେଇ ବିଦ୍ୟାମହିମାରୁ ଅନେକ ରାଜ୍ୟ ଜୟ କଲା, ତଦାଦି ଦେଖିଲା ରାଜ୍ୟ ସାଧନ ବିଷୟରେ ତାହା ବାଞ୍ଛା ପୂର୍ଣ୍ଣ ହୋଇଅଛି । ତେତେବେଳେ କମଳପୁର ନାମକ ସୁଶୋଭିତ ରାଜଧାନୀରେ ଅବସ୍ଥାନ କଲା । ଏହି ସମୟରେ ଧାନ୍ୟ ନଗରରୁ ମାଧବ ଦାସର ଆପଣା ପରିବାରମାନେ ଆଗମନ କଲେ ପୁଣି ଜ୍ଞାତି କୁଟୁମ୍ବମାନେସୁଦ୍ଧା କ୍ରମରେ କମଳପୁରକୁ ଆଇଲେ; ଅନନ୍ତର ସମସ୍ତେ ମାଧବ ଦାସର ଗୁରୁପୁରୋହିତ ଏକତ୍ର ହୋଇ ପରାମର୍ଶ କଲେ, ମାଧବ ଦାସ କମଳ-ପୁରରେ ରାଜା ହୋଇଅଛି ତାହା ଆତ୍ମୀୟ ପରିବାର ଜ୍ଞାତି କୁଟୁମ୍ବସୁଦ୍ଧା ସେଠାକୁ

ଯାଇଅଛନ୍ତି, ତେବେ ଆମ୍ଭେମାନେ ଧାନ୍ୟ ନଗରରେ କ ଅବଲମ୍ବନରେ ରହିଲୁ, ଚାଲ, କମଳପୁରକୁ ଯାଇ ତାଙ୍କ ସଙ୍ଗେ ସାକ୍ଷାତ୍ କରିବା, ସେ ଅବଶ୍ୟ ଆମ୍ଭମାନଙ୍କୁ ପାଖରେ ରଖିବେ । ଏହି ପରାମର୍ଶ କରି ଗୁର୍ ପୁରୋହିତ କମଳପୁରକୁ ଗଲେ । ମାତ୍ର ସେହି ସମୟରେ ମାଧବ ଦାସ ଦ୍ୱାରରେ ଅନେକ ଦ୍ୱାରୀ ଥିଲେ, ସେମାନେ ଦେଶୀୟ ଲୋକ, ସଂସ୍କୃତ ଭାଷା କିଛିହିଁ ଜାଣନ୍ତି ନାହିଁ ତଥାଚ ସେଇ ଗୁର୍ ପୁରୋହିତ ସଂସ୍କୃତ ଭାଷାରେ କହିଲେ, ରାଜାଙ୍କୁ ସମାଚାର କହ, ଧାନ୍ୟ ନଗରରୁ ଗୁରୁ ପୁରୋହିତ ଆସିଅଛନ୍ତି । ଦୌବାରିକଙ୍କ ଠାରେ ବାରବାର କରି ଏକଥା କହିଲେ ସେମାନେ ତାହା ବୁଝି ପାରିଲେ ନାହିଁ, ଅତଏବ ଦ୍ୱାରୀମାନେ ମହା ବିରକ୍ତ ହୋଇ ଭାବନା କଲେ ରାଜାଙ୍କ ନିକଟରେ ସମାଚାର ନ ଦେଲେ ସେମାନଙ୍କୁ ଦଣ୍ଡ ହେବ ଅତଏବ ଜଣେ ସେଇ କଥା ଶୁଣି ରାଜାଙ୍କ ନିକଟକୁ କହିବାକୁ ଗଲା, ମାତ୍ର ଯାହିଁ ? ଆନୁ-ପୂର୍ବକ ଭୁଲି ଯାଇ ହିନ୍ଦି ଭାଷାରେ କହିଲା, ହେ ମହାରାଜ ଗୁରୁନଗରଠାରୁ ଧାନ୍ୟ ଆସିଅଛି, କି ଆଜ୍ଞା ହେଉଅଛି । ରାଜା ଭାବନା କଲେ ତାଙ୍କ ଗ୍ରାମର ନାମ ଗୁର୍ ନଗର ଅଟେ ସେହିଠାରୁ ଧାନ୍ୟ ଆସିଥିବ ଅତଏବ କହିଲେ ଧାନ୍ୟ ନେଇ ଗୋଲାରେ ରଖ, ଏପରି ବିବେଚନା ହେବ । ଏହି କଥା ଦ୍ୱାରୀ ଶୁଣି ତଳେ ଯାଇ କହିଲା, ତୁମ୍ଭମାନଙ୍କୁ ଗୋଲାରେ ରଖିବାପାଇଁ ଆଜ୍ଞା ଦେଲେ ଚାଲ, ସେହିଠାରେ ରଖି ଆସିବା । ତହିଁରେ ଗୁରୁ ପୁରୋହିତ ଭାବନା କଲେ, ଗୋଲା ନାମରେ କୌଣସି ଉତ୍ତମ ଗୃହ ଅଛି, ସେହିଠାକୁ ଆମ୍ଭମାନଙ୍କୁ ନେଇ ଯାଉଅଛି, ଇହା ବାଦ ରାଜା ଆସି ସାକ୍ଷାତ୍ କରିବେ; ଏବଂ ଗୋଲାର କବାଟ ଫିଟାଇ ଯେତେବେଳେ ଧାନ ଉପରେ ବସିବାକୁ କହିଲା ତେତେ-ବେଳେ ମନରେ ବିଚାର କଲେ ଏ ଦେଶର ଏହି ବ୍ୟବହାର ଥିବ ଯେ, ଗୁର୍ ପୁରୋହିତ ଆସିଲେ ତାଙ୍କୁ ପ୍ରଥମେ ଲକ୍ଷ୍ମୀ ଭଣ୍ଡାରରେ ବସାଇବାକୁ ହୁଏ ଏହି କାରଣ ବୁଝି ଗୋଲାକୁ ପେନ ଆସିଲା । ମାତ୍ର ଯେତେବେଳେ ଚାବି ଦେଇ ଦ୍ୱାରୀ ଚାଲିଗଲା, ସନ୍ଧ୍ୟା ପର୍ଯ୍ୟନ୍ତ ପୁଜା କେହି ପଚାରିଲେ ନାହିଁ, ତେତେବେଳେ ସେମାନେ ବିଚାର କଲେ ଆମ୍ଭମାନଙ୍କଦୁଃଖର କୌଣସି କାରଣ ଘଟିଅଛି, ନତୁବା ମାଧବଦାସ ଯଥାର୍ଥ ଜାଣି ପାରିଲେ କଦାଚ ଏପରି ହୁଅନ୍ତା ନାହିଁ, ଅତଏବ ଗୁର୍ ପୁରୋହିତ ଏବଂ ଭୃତ୍ୟ ଏମାନେ ମହା କୋଳାହଳ ଚିତ୍କାର ଶବ୍ଦ କଲେ, ମାତ୍ର ତହିଁରେ ପୁଣ୍ଡା ଦୌବାରିକମାନେ କବାଟ ଫିଟାଇ ନ ଦେଲେ, ବରଂ ବାହାରେ ରହି ଆତୁର ତର୍ଜନ ଗର୍ଜନ କଲେ । ପୁନଶ୍ଚ ସେଇ କୋଳାହଳ ରାଜାଙ୍କ କର୍ଣ୍ଣଗୋଚର ହେଲା ଯେ ଧାନ୍ୟ

ଗୋଲାରେ କୌଣସି ଲୋକ ବନ୍ଦ ହୋଇଅଛି, ଅତଏବ ରାଜା ଦୌବାରିକ-ମାନଙ୍କୁ ଡାକି ପଚାରିଲେ, ଧାନ୍ୟ ଗୋଲାଭିତରେ କାହିଁକି ଗୋଳମାଳ ହେଉଅଛି, ତହିଁରେ ଦୌବାରିକ କହିଲା, ଦାସ ତେତେବେଳେ କହୁଅଛି ଗୁରୁ ପୁରୁଙ୍କୁ ଧାନ୍ୟ ଆସିଅଛି, କି ଆଜ୍ଞା ହେଉ, ତହିଁରେ ମହାରାଜ ଧାନ୍ୟ ଗୋଲାରେ ରଖିବାଲାଗି ଅନୁମତି କରିଅଛନ୍ତି, ସେମାନଙ୍କୁ ସେହିଠାରେ ରଖି-ଅଛି । ବର୍ତ୍ତମାନ ସେମାନେ ଚିତ୍କାର ଶବ୍ଦ କରୁଅଛନ୍ତି । ଏଥିରେ ରାଜା କହିଲେ, ଆରେ ମୂର୍ଖ, ଏ ଯେ ମନୁଷ୍ୟଙ୍କର ଚିତ୍କାର ଶୁଣୁଅଛୁ । ଧାନ୍ୟ କି ମନୁଷ୍ୟ ପ୍ରାୟ ଚିତ୍କାର କରିପାରେ, କେମନ୍ତ ଧାନ୍ୟ ରଖିଅଛୁ, ଏଠାକୁ ଘେନି-ଆସ, ବିବେଚନା କରିବା । ତତ୍ପରେ ଦୌବାରିକ ଯାଇ ଗୋଲା କବାଟ ଫିଟାଇ ଗୁରୁ ପୁରୋହିତ, ଭୃତ୍ୟ ଏମାନଙ୍କୁ ଆଣିବାରୁ ମାଧବଦାସ ମହାଲଜ୍ଜିତ ହେଲେ ଏବଂ ନାନାପ୍ରକାର ସ୍ତୁତି ବାକ୍ୟରେ ସେମାନଙ୍କୁ ଶାନ୍ତ କରି ଭୃତ୍ୟ ଦ୍ୱାରିକୁ ଦଣ୍ଡ ଦେଲେ । ମାତ୍ର ସେଇ ବ୍ୟକ୍ତି ସେ ଦେଶ ଭାଷାର ପଦ ପଦାର୍ଥ ଜାଣି ସର୍ବଜ୍ଞ ହୋଇଥିଲେ ତାହାର ଏ ଦଶା ନ ହୁଅନ୍ତା ଏବଂ ଗୁରୁ ପୁରୋହିତମାନେ ମଧ୍ୟ ଏତେ କ୍ଳେଶ ପାଇ ନ ଥାନ୍ତେ ।



## ୪ । କନ୍ଦଜାତି ।

କନ୍ଦଜାତିଙ୍କ ବାସ ସ୍ଥାନ ପର୍ବତ ଉପର ଭାଗରେ; ସେଇ ସ୍ଥାନ ସମୁଦ୍ର ଜଳ ପତନରୁ ଦୁଇ ତିନି ସହସ୍ର ଫୁଟ ଉଚ୍ଚ ହେବ । ସେମାନଙ୍କ ଦେଶରେ ଶୀତ ଗ୍ରୀଷ୍ମ ଦୁହେଁ ଅଧିକ ହୁଅନ୍ତି ଏବଂ ଶୀତ ଗ୍ରୀଷ୍ମର ବଦଳ ମଧ୍ୟ ଅତିଶୀଘ୍ର ହେଉଥାଏ ।

କନ୍ଦମାନଙ୍କ ମଧ୍ୟରେ ଜାତି ବିଷୟରେ କିଞ୍ଚିତ୍ ପାର୍ଥକ୍ୟ ଅଛି ସତ୍ୟ ମାତ୍ର ପର୍ବତୀୟମାନେ ନୀଚସ୍ଥଳବାସି ହିନ୍ଦୁମାନଙ୍କ ନ୍ୟାୟ ଜାତି ବିଷୟରେ ଶୁଚିବାଇ ନୁହନ୍ତି । କନ୍ଦ ଦେଶରେ ପାଞ୍ଚ ପ୍ରକାର ଜାତି ଅଛନ୍ତି, ସେଥି ମଧ୍ୟରେ ଶୁଣ୍ଡି ଜାତିକୁ ସମସ୍ତେ ପ୍ରଧାନ ବୋଧ କରନ୍ତି । ଶୁଣ୍ଡି ଜାତିଙ୍କର ପ୍ରଧାନ ବ୍ୟବସାୟ ମଦ୍ୟ ପ୍ରସ୍ତୁତ କରିବା ଏବଂ ଅସଭ୍ୟ ନୀଚ ଲୋକେ ମଦ୍ୟ ଦେଖିବା

ମାନେ ଯେ ରୂପ ଆନନ୍ଦିତ ହୁଅନ୍ତି କନ୍ଧମାନେ ସେଇରୂପ ଆନନ୍ଦରେ ମଦ୍ୟ-ପାନ କରନ୍ତି । ସେମାନଙ୍କ ମଧ୍ୟରେ ଗନ୍ଧ ବୋଲି ଅପର ଏକ ଜାତି ଅଛନ୍ତି ସେମାନେ ବାଣିଜ୍ୟ କରନ୍ତି । ସେମାନଙ୍କୁ ଗୁମୁସର ଦେଶର ସଉଦାଗର ବୋଲି କୁହାଯାଏ ଏବଂ କାନ୍ଦସ ନାମରେ ଯେଉଁ ଅପର ଜାତି ଅଛନ୍ତି ସେମାନେ ଯୋଦ୍ଧା, ସେମାନଙ୍କ ଅସ୍ତ୍ର ଟାଙ୍ଗୀ ଏବଂ ଧନୁର୍ବାଣ ମୁଦ୍ଧା ସଙ୍ଗେ ଥାଏ । ବିଶେଷତଃ ଧନୁର୍ବିଦ୍ୟାରେ ଅତି ସୁଶିକ୍ଷିତ ହୁଅନ୍ତି, ଲକ୍ଷ କରି ତୀର ଛାଡ଼ିଲେ ପ୍ରାୟ ତାହା ବ୍ୟର୍ଥ ହୁଏ ନାହିଁ । ଅପର ଜାତିମାନେ ସକଳ ଲୋକଙ୍କ ପରିଧାନାର୍ଥେ ବସ୍ତ୍ର ତୟାର କରନ୍ତି । କାର୍ପାସ ଗଛ ପର୍ବତରେ ଜନ୍ମଇ ମାତ୍ର ଏମାନେ ସୂତା କାଟନ୍ତି କି ନାହିଁ ତାହାବ୍ୟକ୍ତ ନୁହଇ, ଅନେକ ଲୋକମାନେ ଅନୁମାନ କରନ୍ତି ସେମାନେ ନୀଚସ୍ଥ ଦେଶରୁ ସୂତା ଆଣନ୍ତି । ପାନ୍ନା ନାମରେ ଏକ ଜାତୀୟ ଲୋକ କହନ୍ତି କି ନୀଚସ୍ଥ ଦେଶର ହିନ୍ଦୁମାନେ ସେହି ଦେଶକୁ ଯାଇ ବାସ କରି ପାନ୍ନା ହୋଇ ଅଛନ୍ତି । ଏହି ଜାତି କୃଷି କର୍ମ କରନ୍ତି ଏବଂ ମଜୁରି କାର୍ଯ୍ୟ ମୁଦ୍ଧା କରିଥାନ୍ତି ଆଉ ସମସ୍ତେ କହନ୍ତି ସକଳ ପ୍ରକାର ବାଣିଜ୍ୟ କର୍ମରେ ସେମାନେ ନିପୁଣ । ପୂର୍ବରେ ଯେଉଁ ନରବଳିର କଥା କୁହା ଯାଇଅଛି ତାହା ଏହି ଲକ୍ଷ୍ମୀଛଡ଼ା ଜାତିଙ୍କର କର୍ମ । ସେଇ ପାଞ୍ଚ ଜାତିର କେତେକ ଲୋକଙ୍କ ଅନ୍ୟ ଜାତିରେ ଅନ୍ନ ଆହାର କରନ୍ତି ମାତ୍ର ସମସ୍ତେ କରନ୍ତି ନାହିଁ । ପୂର୍ବୋକ୍ତ ଯୋଦ୍ଧା ଲୋକେ କେବଳ ପାନ୍ନା ଜାତିଙ୍କ ଅନ୍ନ ଗ୍ରହଣ କରନ୍ତି ନାହିଁ, ମାତ୍ର ଆଉ ସକଳ ଜାତିଙ୍କ ଘରେ ଆହାର କରନ୍ତି । ଅନ୍ନ ଗ୍ରହଣ ବିଷୟରେ ପାନ୍ନା ଜାତିଙ୍କର ଆସ୍ତୁର ବିଚାର ନାହିଁ, ସେମାନେ ସମସ୍ତଙ୍କ ଘରେ ଖାନ୍ତି । ଗନ୍ଧ ଜାତିଙ୍କର ଏହି ନିୟମ, ସେମାନେ କେବଳ ଆପଣା ୨ ଜାତିଙ୍କ ଘରେ ଆହାର କରି ଅଧିକ କୌଣସି ଜାତିଙ୍କ ଅନ୍ନ ଖାଆନ୍ତି ନାହିଁ ପ୍ରଧାନ ଜାତିମାନେ କେବଳ ଗୋମାଂସ ବ୍ୟତିରିକ୍ତ ସକଳ ପ୍ରକାର ମାଂସ ବ୍ୟବହାର କରନ୍ତି, କିନ୍ତୁ ପାନ୍ନା ଜାତିମାନେ ଗୋମାଂସ ମୁଦ୍ଧା ଛାଡ଼ନ୍ତି ନାହିଁ । କୌଣସି ଜାତିକୁ ମଦ୍ୟପାନ ନିଷେଧ ନାହିଁ, ତେବେ ଯାହାର ଯେମନ୍ତ ଇଚ୍ଛା ସେ ତେମନ୍ତ କରେ ମାତ୍ର ମଦ୍ୟ ପାଇଲେ ଉତ୍ତମ ମଦ୍ୟକୁ ମନୋନୀତ ଜ୍ଞାନ କରନ୍ତି ।

ଗୁମସର ଲୋକେ ଧର୍ମ ବିଷୟରେ ଅଜ୍ଞାନ । ସେମାନେ ପୃଥିବୀକୁ ଦେବୀ ଜ୍ଞାନ କରି ଧରଣୀ ବୋଲି ସମ୍ବୋଧନ କରନ୍ତି ଆଉ ଆକାଶକୁ ମଧ୍ୟ ଦେବତା ବୋଲନ୍ତି । ଉକ୍ତ ଦେଶରେ ନରବଳିଦାନ ଯେ ବାହୁଲ୍ୟରୂପେ ଚଳିତ ଥିଲା

ସେଇ କୁବ୍ୟବହାର ବର୍ତ୍ତମାନ ସମ୍ବନ୍ଧେ ଜାଣ୍ ଅଛନ୍ତି । ପ୍ରତି ବର୍ଷ କପାର ପୁଷ୍ପୋତ୍ପତ୍ତି ସମୟରେ ଅର୍ଥାତ୍ ମାଘ ପୌର୍ଣ୍ଣମୀରେ ଏକ ଏକ ପର୍ବ ହୋଇ-ଥାଏ ସେହି ସମୟରେ ନରବଳି ଦିଅନ୍ତି । ଏହି ନରବଳିର ସୃଷ୍ଟି କି କାରଣ ହୋଇଅଛି ତାହାର ଗଳ୍ପ ଏହି ପ୍ରକାର ଶୁଣାଅଛି । କନ୍ଦ ଜାତିମାନେ କହନ୍ତି କି ସେମାନଙ୍କ ସହସ୍ର ପୁରୁଷ ପୂର୍ବରେ ଲୋକେ ଯେତେବେଳେ ଦକ୍ଷିଣ ଦେଶୀୟ ଦାଡାନାମକ ପର୍ବତରୁ ଉଠି ଏହି ପର୍ବତରେ ପହୁଞ୍ଚିଲେ ତେତେବେଳେ ଆତ୍ମାଗ୍ରଣୀ ସେମାନଙ୍କୁ ଆଣିଥିଲେ ମାତ୍ର ତହାଁରେ ଏହି ପର୍ବତର ମାଟି ଏ ପ୍ରକାର ନରମ ଥିଲା କି ପାଦର ଚାପ୍ପ ବସି ଯାଉଥିବାରୁ ଲୋକଙ୍କ ବସତିର ଉପଯୁକ୍ତ ନ ଥିଲା । ତହିଁ ଉତ୍ତାରେ ହଠାତ୍ ଏକ ଦିନ ଆତ୍ମାଗ୍ରଣୀର ଅଙ୍ଗୁଳି କଟିଯାଇ ପୃଥିବୀରେ ରକ୍ତ ପଡ଼ିବା ମାତ୍ରକେ ମାଟି ଶକ୍ତ ହେଲା ଏବଂ ତହିଁରେ ବାସ କରି ପାରିଲେ । ତତ୍ପରେ ଆତ୍ମାଗ୍ରଣୀ ଜାଣିଲେ, ମନୁଷ୍ୟଙ୍କ ରୁଧିରରେ ମୃତ୍ତିକା ଶକ୍ତ ହୁଏ ଅତଏବ ସ୍ୱଇଚ୍ଛା ପୂର୍ବକ ଆପଣା ଗଳାକାଟି ପୃଥିବୀକୁ ରକ୍ତ ଦେଇ ପ୍ରାଣତ୍ୟାଗ କଲେ ଏ ନିମନ୍ତେ ଅଦ୍ୟାବଧି ଲୋକେ ନରବଳି ବହୁମୂଲ୍ୟ ଜ୍ଞାନ କରନ୍ତି ।

ଭାରତବର୍ଷର ଅନ୍ୟାନ୍ୟ ପ୍ରଦେଶରେ ଯେଉଁ ପ୍ରକାର ଗୃହାଦି ଦେଖା ଯାଏ ଗୁମସରର ଗୃହ ସବୁ ସେହିରୂପେ ଦେଖାଯାଏ ନାହିଁ । ସେ ସ୍ଥାନ ନିବାସିମାନେ ପାର୍ବତୀୟ ପଶୁଙ୍କୁ ଦୂର କରି ଉଭୟ ପର୍ବତ ମଧ୍ୟ ସ୍ଥଳରେ କୃଷି ଏବଂ ବସତି କରନ୍ତି । ସେମାନେ ବୃହତ୍ ନଗର ନିର୍ମାଣ କରି ତନ୍ମଧ୍ୟରେ ବାସ କରିବାକୁ ଅନିଚ୍ଛୁକ, କିଞ୍ଚିତ୍ ୨ ଦୂରରେ କ୍ଷୁଦ୍ର ୨ ଗ୍ରାମ କରି ରହନ୍ତି ଏବଂ ଗୃହ ସବୁ କାଷ୍ଠରେ ନିର୍ମାଣ କରନ୍ତି ।

କନ୍ଦଜାତିର ଆଲୌକିକ ବ୍ୟବହାର କିଞ୍ଚିତ୍ ଜଣା ଯାଇଅଛି । ସେମାନେ ଅପରଦେଶୀୟ ଅଜ୍ଞାନ ଲୋକଙ୍କ ନ୍ୟାୟ ସ୍ତ୍ରୀ ପୁରୁଷେ ସ୍ୱତନ୍ତ୍ର ୨ ଆହାର କରନ୍ତି ଆଉ କୃଷି ଇତ୍ୟାଦି ବାହାର କର୍ମ ପୁରୁଷ କରନ୍ତି, ସ୍ତ୍ରୀ ଲୋକେ କେବଳ ଗୃହ କର୍ମ କରନ୍ତି ଏବଂ ସେମାନଙ୍କ ପରିଚ୍ଛଦାଦି ଏତଦ୍ଦେଶୀୟ ଲୋକଙ୍କର ସମାନ ।

ଅନ୍ୟାନ୍ୟ ଅସଭ୍ୟ ଜାତିର ଯେଉଁ ସବୁ ଗୁଣ ଥାଏ ତାହାମଧ୍ୟ କନ୍ଦ ଜାତି ଲୋକଙ୍କ ମଧ୍ୟରେ ପ୍ରକାଶ ହୁଏ । ଅତିଥି ଘରକୁ ଆସିଲେ ପ୍ରାୟ ସମସ୍ତେ ତାହାକୁ ସମାଦରପୂର୍ବକ ରଖନ୍ତି ଏବଂ କୌଣସି ୨ ବିଷୟରେ ଯଥାର୍ଥ ବ୍ୟବହାର କରନ୍ତି ମାତ୍ର ଯୁଦ୍ଧରେ କିଞ୍ଚିତ୍ ମାତ୍ର ଦୟା ନାହିଁ । ଏବଂ

ବୈରି ନାଶାର୍ଥେ ବିଶ୍ୱାସଘାତକତା କରନ୍ତି । ଗୁମସର ଲୋକେ ବହୁ ପରିଶ୍ରମରେ କାତର ହୁଅନ୍ତି ନାହିଁ ଏବଂ ଅତି କଠିନ ବିଷୟ ଉପସ୍ଥିତ ହେଲେହେଁ ବିରକ୍ତ ହୋଇ ତାହା ତ୍ୟାଗ କରନ୍ତି ନାହିଁ ।

ବହୁ ବିବାହ ବ୍ୟବହାର କନ୍ଧଜାତିଙ୍କ ମଧ୍ୟରେ ପ୍ରଚଳିତ ଅଟେ କିନ୍ତୁ ବର ଇଚ୍ଛାପୂର୍ବକ ବିବାହ କରିବାକୁ ଚାହିଲେ କନ୍ୟାର ପିତାମାତାଙ୍କୁ ତାହାର କିଛି ଦେବାର ଆବଶ୍ୟକ ଅଥବା ଉଭୟପକ୍ଷୀୟ କର୍ତ୍ତା ମାନେ ବିବାହ ବିଷୟ ସ୍ଥିର କରନ୍ତି । ଅନେକ ସ୍ଥାନରେ ଏହି ବ୍ୟବହାର ଚଳେ ଅର୍ଥାତ୍ ଗୋରୁ ଇତ୍ୟାଦି ବହୁମୂଲ୍ୟ ବସ୍ତୁ ଦିଅନ୍ତି ଏବଂ ଅନ୍ୟସ୍ଥଳରେ କନ୍ୟାର ପିତାମାତାଙ୍କୁ କିଛି ନ ଦେଇ କେବଳ କନ୍ୟାକୁ ବର କିଛି ଦେଲେ ହୁଏ । ଗୁମସରରେ ବ୍ୟଭିଚାର ବ୍ୟାପାର ପ୍ରାୟ ଘଟେ ନାହିଁ, ଯଦ୍ୟପି ହୁଏ ତଥାଚ କେହି ଜାଣି ପାରେ ନାହିଁ, ଯଦ୍ୟପି ଜଣାଯାଏ ତେବେ ଦୁଇଜଣଙ୍କୁ ଯମାଳୟକୁ ପ୍ରେରଣ କରନ୍ତି ।

---

## ସମାଚାର ପତ୍ରିକା

ଏ ପତ୍ରିକା ଗ୍ରାହକଙ୍କ ବିଜ୍ଞାପନ ନିମନ୍ତେ ପ୍ରକାଶ କରି ଯାଉଅଛି କି ଉତ୍କଳ ଖବର ଏ ପ୍ରବୋଧ ଚନ୍ଦ୍ରିକା ନୂତନସୃଷ୍ଟ ହେବାରୁ ସେଥିର ନିୟମ ନିର୍ଦ୍ଦିଷ୍ଟ କରିବାରେ କିଞ୍ଚିତ୍ ବିଳମ୍ବ ହୋଇଅଛି ଅତଏବ ପ୍ରଥମ ସଂଖ୍ୟାରେ ଅଧିକ ସମ୍ବାଦ ଅନୁବାଦିତ ହୋଇ ନ ପାରିଲା, କିନ୍ତୁ ଦ୍ୱିତୀୟ ସଂଖ୍ୟା ପ୍ରଭୃତିରେ ଅବଶ୍ୟ ପ୍ରକାଶ ହେବ ।

---

କନ୍ଧମାଳଠାରୁ ସମାଚାର ମିଳିଅଛି କି ଡିସେମ୍ବର ମାସ ୬ ତାରିଖ ଅତି ପ୍ରତ୍ୟୁଷରେ ଅନେକ କନ୍ଧମାନେ ଏକତ୍ର ହୋଇ ତୀରଧନୁ ଘେନି କନ୍ଧମାଳରେ ଥିବା ଏଜେଣ୍ଟ ସାହେବଙ୍କ ଉପରେ ଚଢ଼ାଉ କଲେ । ସାହେବଙ୍କ ସଙ୍ଗେ କେତେଜଣ ଲସ୍କର ଥିବାରେ ଏବଂ କନ୍ଧମାନେ ଆପଣା ତରଫରୁ ତୀର ଚଳାଇବାରୁ ଉକ୍ତ ସାହେବ ସେମାନଙ୍କ ଉପରେ ଗୁଳିମାରିବାକୁ ଲସ୍କରମାନଙ୍କୁ ହୁକୁମ ଦେଲେ । ତହିଁରେ ଜଣେ କନ୍ଧଠାରେ ଗୁଳି ବାଜି ସେ ମରି ଯିବାରୁ ଅନ୍ୟ ସବୁ କନ୍ଧମାନେ ପଳାଇ ଯାଇ କିଛି ଦୂରରେ ପୁନର୍ବାର ଜମା ହୋଇଅଛନ୍ତି । କନ୍ଧମାନେ କି ହେତୁରୁ ସରକାରଙ୍କ ବିରୁଦ୍ଧରେ ଏହି ପ୍ରକାର ବିଦ୍ରୋହ କର୍ମ କରୁଅଛନ୍ତି ତାହା ଅଦ୍ୟାବଧି

ନିଶ୍ଚୟରୂପେ ଜଣା ଯାଇ ନାହିଁ ମାତ୍ର ସେମାନଙ୍କର ·ଏରୂପେ ଉଠି ବିଦ୍ରୋହିତା କରିବାର ବିଶେଷ ଶଙ୍କା ଅଛି ଅତଏବ ଜିଲ୍ଲାର ଶ୍ରୀଯୁତ କମିଶନର ସାହେବ କଟକ ମୁକାମରେ ଥିବା ପ୍ରଧାନ ସେନାପତି ସାହେବଙ୍କୁ ଆଜ୍ଞା କରି ଅଛନ୍ତି କି ବାଲେଶ୍ୱରଠାରୁ ଏ ପଲଟଣର ଦୁଇ କମ୍ପାନି ଫେରାଇ ଆଣି କଟକ ମୁକାମରେ ପ୍ରସ୍ତୁତ ରଖିବେ । ଏବଂ ଅତିଶୀଘ୍ର କଏଦମାନେ ସୁସ୍ଥିର ନୋହିଲେ ଶ୍ରୀଯୁତ କମିଶନର ସାହେବ ସିପାହୀଙ୍କୁ ସେହି କଏଦମାନଙ୍କୁ ନିଜେ ଯାଞ୍ଚା କରିବେ ।

ଉପରୋକ୍ତ ତାରିଖ ଉତ୍ତାରେ କଏଦମାନେ ପୁନର୍ବାର ଯୁଦ୍ଧ କରିବା ସକାଶେ ପ୍ରବେଶ ହେବାରୁ ସେମାନଙ୍କ ମଧ୍ୟରୁ ୫ ଜଣ ମାରା ଯାଇଅଛନ୍ତି ମାତ୍ର ବୋଧ ହୁଅଇ ସେମାନେ ବର୍ତ୍ତମାନ ସୁସ୍ଥିର ହୋଇ ରହିଅଛନ୍ତି ।

---

କଟକ ମୁକାମର ମାଜିଷ୍ଟ୍ରେଟ, କଲେକ୍ଟର ଏବଂ ନିମକର ଏଜେଣ୍ଟ ଶ୍ରୀଯୁତ ଆର. ପି. ହାରିସନ ସାହେବ ମୁର୍ଶିଦାବାଦର ଜଜ୍ଜ ପଦରେ ନିଯୁକ୍ତ ହୋଇଅଛନ୍ତି ଏବଂ ଶେଷୋକ୍ତ ସାହେବଙ୍କ କାର୍ଯ୍ୟଭାର କିଛିକାଳ ଚଳାଇବା ସକାଶେ ପୁରୀ ଜିଲ୍ଲାର ଡେପୁଟୀ କଲେକ୍ଟର ଓ ଜଏଣ୍ଟ ମାଜିଷ୍ଟ୍ରେଟ ଶ୍ରୀଯୁତ ଜେନକିନ୍ସ ସାହେବ କଟକ ମୁକାମକୁ ଆସିବା ଲାଗି ହୁକୁମ ପାଇ ଏଠାରେ ଉପସ୍ଥିତ ହୋଇଅଛନ୍ତି ଏବଂ ଶ୍ରୀଯୁତ ଜେନକିନ୍ସ ସାହେବଙ୍କ କର୍ମଭାର ପୁରୀର ଡେପୁଟୀ ମାଜିଷ୍ଟ୍ରେଟ ଶ୍ରୀଯୁତ କ୍ଲାର୍କ ସାହେବଙ୍କ ଦ୍ୱାରା ନିର୍ବାହ କରାଯିବ । ଶୁଣାଯାଉଅଛି କି ଶ୍ରୀଯୁକ୍ତ ଶୋର ସାହେବ ଏ ଜିଲ୍ଲାର କଲେକ୍ଟର ଓ ମାଜିଷ୍ଟ୍ରେଟି ପଦ ଗ୍ରହଣାର୍ଥେ ମନୋନୀତ ହୋଇଅଛନ୍ତି । କେତେକ ବର୍ଷ ହେଲା ଉକ୍ତ ସାହେବ ଏ ଜିଲ୍ଲାରେ ନିଯୁକ୍ତ ହୋଇଥିଲେ ।

---

## ସାନ୍ତାଲମାନଙ୍କ ସମାଚାର ।

ଏ ପ୍ରବୋଧ ଚନ୍ଦ୍ରିକା ପାଠକମାନଙ୍କ ମଧ୍ୟରୁ ଅନେକ ଲୋକ ଅବଶ୍ୟ ଶୁଣିଥିବେ କି ଗତ ଜୁନ କିମ୍ବା ଜୁଲାଇ ମାସରେ ରାଜମହାଲ ବୀରଭୂମି ଇତ୍ୟାଦି ବଙ୍ଗଳାଦେଶ ଜିଲ୍ଲାରେ ଥିବା ସାନ୍ତାଲ ଲୋକେ ଉଠି ଅସ୍ତ୍ରଶସ୍ତ୍ର ଘେନି ସେ ଦେଶନିବାସି ଲୋକଙ୍କ ଉପରେ ଚଢ଼ାଉ କରିଥିଲେ । ଅନେକ ଗ୍ରାମ ପୋଡ଼ି

ଦେଇ ଓ ଅନେକ ୨ ସ୍ତ୍ରୀ ପୁରୁଷଙ୍କୁ ଅତିଶୟ ଭୟଙ୍କରରୂପେ ହତ୍ୟା କରି ସେମାନଙ୍କ ଧନଦ୍ରବ୍ୟ ଲୁଣ୍ଠତରାଜ କରିଥିଲେ । ଏତଦ୍ଭିନ୍ନ ଦୁଇ ଚାରି ଜଣ ସାହେବ ଲୋକଙ୍କୁ ଆଉ ଦୁଇ ଜଣ ଇଂରେଜୀ ସ୍ତ୍ରୀଙ୍କୁ ପ୍ରାଣରେ ବଧ କରି ଅଛନ୍ତି । ଏରୂପେ ସନ୍ତାଳ ଲୋକେ ଉପଦ୍ରବ ଓ ଦେଶ ଉଜାଡ଼ କରିବା ହେତୁରୁ ସରକାର ସେମାନଙ୍କ ସଙ୍ଗେ ଯୁଦ୍ଧ ଆରମ୍ଭ କରି କେତେକ ପଲ୍‌ଟଣ ପଠାଇ ଅଛନ୍ତି । ଅଦ୍ୟାବଧି ଯୁଦ୍ଧ ଲାଗିଅଛି ଏବଂ ଅଳ୍ପ ଦିନ ତଳେ ଯୁଦ୍ଧ ସ୍ଥାନରୁ ଯେଉଁ ସମ୍ବାଦ ମିଳିଅଛି ତାହା ତଳେ ଲେଖା ଯାଉଅଛି ।

ରାଜମହଲ ଡ଼ିସେମ୍ବର ମାସ ୪ ଓ ୮ ତାରିଖ । ଆମ୍ଭମାନଙ୍କର ଅନେକ ସୈନ୍ୟ ସନ୍ତାଳଙ୍କ ସନ୍ଧାନରେ ଅରଣ୍ୟ ମଧ୍ୟରେ ପ୍ରବେଶ କରିଅଛନ୍ତି, ମାତ୍ର ସେମାନେ ବନ ମଧ୍ୟରେ କି କରୁଅଛନ୍ତି ସେଥିର କୌଣସି ସମାଚାର ମିଳି ନାହିଁ । ମିଲେଟେରୀ ଆଇନ ପ୍ରଚାର ହେବା ହେତୁରୁ ବିଦ୍ରୋହି ସନ୍ତାଳମାନେ ଅସ୍ତ୍ରଶସ୍ତ୍ର ତ୍ୟାଗ କରି କୃଷି କାର୍ଯ୍ୟ ଆରମ୍ଭ କରି ଅଛନ୍ତି । ଶୁଣା ଯାଉଅଛି କି ବୀରଭୂମି ଜିଲାର ଅନ୍ତର୍ଗତ ଅରଣ୍ୟ ମଧ୍ୟରେ ସନ୍ତାଳମାନେ ପୁନର୍ବାର ହତିଆର ଧରି ସାହାସପୂର୍ବକ ସିପାହୀମାନଙ୍କ ସଙ୍ଗେ ଯୁଦ୍ଧ କରୁଅଛନ୍ତି । ୩୧ ସଂଖ୍ୟକ ଦେଶୀୟ ପଦାତିକ ପଲ୍‌ଟଣର ୭ । ୮ ଜଣ ସିପାହୀ ସନ୍ତାଳ ଯୁଦ୍ଧରେ ହତ ହୋଇଅଛନ୍ତି । ଜେନରଲ ଇଲ୍‌ଏଡ଼ ସାହେବ ଜଣେ ମିସ୍ ଅର୍ଥାତ୍ ଅବିବାହିତା ବିଲାଏତଜାତ ସ୍ତ୍ରୀକୁ ସେ ଦୁରାତ୍ମାମାନଙ୍କ ହସ୍ତରୁ ରକ୍ଷା କରି ଅଛନ୍ତି ।

ଭାଗଲପୁରର କମିଶନର ଶ୍ରୀଯୁତ ବ୍ରୌନ ସାହେବ ସନ୍ତାଳଙ୍କ ବିଷୟ ସଂକ୍ରାନ୍ତ କୌଣସି ଅପରାଧ ସକାଶେ ଆପଣା ସରକାରୀ କର୍ମରୁ ବହିଷ୍କୃତ ହୋଇ ଅଛନ୍ତି । ଜେନରଲ ଇଲ୍‌ଏଡ଼ ସାହେବ ତୃତୀୟ ଦିବସରେ ସୁରୀନାମକ ନଗରରେ ପହୁଞ୍ଚିବେ ବୋଲି ବାସନା ହୋଇଥିଲା । ଗୁଳି ଓ ଫାସି ଦ୍ୱାରା ଅନେକ ସନ୍ତାଳଙ୍କ ପ୍ରାଣଦଣ୍ଡ କରାଯାଇଅଛି ଏବଂ ଅନେକଙ୍କୁ ଦ୍ୱୀପାନ୍ତର ପଠିଆ ଯାଇଅଛି । ମାତ୍ର ତହିଁରେ ସୁଦ୍ଧା ଏହି ପର୍ଯ୍ୟନ୍ତେ ମେଲିଆ ସନ୍ତାଳମାନଙ୍କର ଉତ୍ତମରୂପେ ଦମନ ହୋଇ ନାହିଁ ।

ସନ୍ତାଳମାନଙ୍କର କାନୁ ନାମକ ଜଣେ ସରଦାର ଧରାଯାଇ ଜେନରଲ ଇଲ୍‌ଏଡ଼ ସାହେବଙ୍କ ନିକଟକୁ ନିଆଗଲା ବାଦ ସେ ସମ୍ମୁଖେ ନିର୍ଭୟରୂପେ ଏହି କଥା ସ୍ୱୀକାର କଲା କି "ଜମୀଦାର ଓ ମହାଜନମାନେ ସନ୍ତାଳ ଲୋକଙ୍କ ଉପରେ ଭାରି ଅତ୍ୟାଚାର କରିବା ହେତୁରୁ ଆମ୍ଭେ ସନ୍ତାଳମାନଙ୍କୁ ମେଳି

କରିବା ସକାଶେ ପ୍ରବୃତ୍ତ କରାଇଅଛୁଁ ଯେମନ୍ତ ଉକ୍ତ ଅତ୍ୟାଚ୍ଚାରୀ ଜମୀଦାର ଆଉ ମହାଜନମାନଙ୍କୁ ମାରି ଏକାବେଳକେ ଆମ୍ଭେମାନେ ଗବର୍ଣ୍ଣର ଜେନରଲ ବାହାଦୂରଙ୍କ ସମ୍ମୁଖରେ ଆପଣା ଦୁଃଖ ଜଣାଇ ପାରବୁ । କୌଣସି ଇଙ୍ଗରେଜ ଲୋକଙ୍କୁ ମାରିବା ନିମନ୍ତେ ଆମ୍ଭମାନଙ୍କର ମାନସ ନ ଥିଲା ମାତ୍ର, ପୂର୍ବରୁ ଆମ୍ଭେ ଏହି ପ୍ରକାର ସ୍ୱପ୍ନ ଦେଖିଥିଲୁଁ କି ଇଙ୍ଗରେଜ ଲୋକଙ୍କୁ ଦୂର କରି ଆମ୍ଭେମାନେ ରାଜା ହେବୁଁ ତାହା ବାଦ ଆଉ ଏକ ସ୍ୱପ୍ନରେ ଜାଣି ପାରିଅଛୁଁ କି ଆମ୍ଭର ଫାଂସି ହେବ ” ।

ଏଥି ପୂର୍ବରେ ଓପେବନ୍ଦା ନାମକ ସ୍ଥାନର ଘାଟୁଆଳ ଦ୍ୱାରା କାନୁମାଝି ଆଉ ତାହାର ଦୁଇ ଭ୍ରାତୃଷ୍ପୁତ୍ର ଚାନ୍ଦ ଓ ଭୈରବ ଧରାଯାଇ ସେନାପତି ସାହେବମାନଙ୍କଠାରେ ସମର୍ପଣ ହୋଇଥିଲେ । ତାହା ବାଦ ତୃତୀୟ ଦିନ ପ୍ରଭାତ କାଳରେ କାନୁ ଆଉ ତାହାର ଏକ ଭାଇର ପୁଅ ଫାଁସି ପାଇଲେ । ତାହା ଦଳ ମଧ୍ୟରୁ ଆଉରି କେତେକ ସରଦାର ଧରା ପଡ଼ି ଅଛନ୍ତି । ଡିସେମ୍ବର ମାସ ୧୫ ତାରିଖର ସମ୍ବାଦ ଭାସ୍କର ।

---

ଇଙ୍ଗରେଜମାନେ କ୍ରମେ୨ ଯେତେ ସଭ୍ୟ ହେଉଅଛନ୍ତି ତେତିକି ପ୍ରତିଦିନ ଶିଳ୍ପ କାର୍ଯ୍ୟରେ ଆଶ୍ଚର୍ଯ୍ୟ ଶକ୍ତି ପ୍ରକାଶ କରୁଅଛନ୍ତି, ବାଷ୍ପୀୟ ନୌକା, ବାଷ୍ପୀୟ ଶକଟ, ବିଦ୍ୟୁତୀୟ ବାର୍ତ୍ତାବହ, ଗ୍ୟାସାଲୁଅ, ଆଶ୍ଚର୍ଯ୍ୟ ଯନ୍ତ୍ର ସବୁ କେଉଁକାଳରେ ଏଦେଶୀୟ ଲୋକଙ୍କର ଦୃଷ୍ଟିଗୋଚର ହୋଇଥିଲା । ଇଙ୍ଗରେଜମାନଙ୍କର ଶୁଭାଗମନ ହେଲରୁ ଏଦେଶୀୟ ଲୋକସୁଦ୍ଧା କ୍ରମରେ ଶିଳ୍ପୀ ହୋଇ ଉଠିଲେ, ପୂର୍ବକାଳରେ ହିନ୍ଦୁମାନେ କାଗଜର ବାର୍ତ୍ତାସୁଦ୍ଧା ଜାଣି ନ ଥିଲେ, ତାଳପତ୍ର, ତେରଟପତ୍ର ଭୂର୍ଜପତ୍ରରେ ପୁସ୍ତକ ଓ ପତ୍ରାଦି ଲେଖୁଥିଲେ, ତଦନନ୍ତର ଜବନମାନେ ଏ ଦେଶରେ କାଗଜ ପ୍ରକାଶ କରି ପ୍ରଚଳିତ କଲେ, ଇଙ୍ଗରେଜମାନେ ବର୍ତ୍ତମାନ ବିଲାଏତଠାରୁ ନାନାପ୍ରକାର ଚିତ୍ରବିଚିତ୍ର କାଗଜ ଆଣୁଅଛନ୍ତି, ନାନା ଦ୍ରବ୍ୟରେ ସେଇ ସବୁ କାଗଜ ପ୍ରସ୍ତୁତ ହୁଏ କିନ୍ତୁ ତହିଁରେ ଛିନ୍ନ ବସ୍ତ୍ରର ଭାଗ ଅଧିକ, ଛିନ୍ନବସ୍ତ୍ର ସଂଗ୍ରହ କରିବାରେ ଭାରି କ୍ଲେଶ ଏଥିନିମନ୍ତେ କେତେକ ଜଣ ଇଙ୍ଗରେଜ ଅନ୍ୟ କେଉଁ୨ ଦ୍ରବ୍ୟରେ କାଗଜ ପ୍ରସ୍ତୁତ ହୋଇପାରେ ତହିଁର ପରୀକ୍ଷା କରୁଥିଲେ । ସଂପ୍ରତି ତାଙ୍କ ମଧ୍ୟରୁ ଜଣେ ସାହେବ କଦଳୀ ପଟୁଆରେ ଏକ ପ୍ରକାର ଉତ୍ତମ କାଗଜ ପ୍ରସ୍ତୁତ କରିଅଛନ୍ତି, ଲଣ୍ଡନ ଟାଇମସ ସମ୍ପାଦକଙ୍କର କୌଣସି ମିତ୍ର ଇଙ୍ଗଲଣ୍ଡରୁ କଦଳୀ ପଟୁଆରେ

ନର୍ମିତ ଉକ୍ତ କାଗଜର ଦୁଇ ପ୍ରକାର ଆଦର୍ଶ ପଠାଇଥିଲେ, ଉକ୍ତ ସମ୍ପାଦକ କହୁଥିଲେ କ, କଦଳୀ ଗଛର ଜାତ ପାଉଲ ଡାକର କାଗଜ ଓ ମୋଟା କାଗଜ ବସ୍ତ୍ରର ଜାତ କାଗଜର ତୁଲ୍ୟ ଲଘୁ ଓ ଚିରସ୍ଥାୟୀ ହୋଇଅଛି । ଯେବେ ଏ ସମାଚାର ସତ୍ୟ ହେବ ତେବେ ମୂଲ୍ୟ ଆହୁରି ନ୍ୟୂନ ହେବ । ଭାସ୍କର ।

---

୧୨୭୩ ସାଲ ମକର ମାସର ଉତ୍କଳ ପଞ୍ଜିକା ।

୧ ମାଘ । ଶନିବାର ପଞ୍ଚମୀ ୩୧ । ୫୩ ପୂର୍ବ ଭାଦ୍ର ୪୬ । ୪୦ କୁମ୍ଭ ୩୨ । ୨୦ ବରୀୟାନ୍ ୩୨ । ୩୯ କୌଳବ ୪ । ୫୪ ରବ୍ୟଂଶ ୨୯ । ୨୧ । ୨୪ ଶିଶିରଋତୁ, ଦିନାର୍ଦ୍ଧ ୧୩ । ୩୬ ଜାନୁଏରି ୧୨ ତାରିଖ ।

୨ ମାଘ । ରବିବାର ଷଷ୍ଠୀ ୨୫ । ୫୨ ଉତ୍ତରଭାଦ୍ର ୪୦ । ୫୮ ମୀନ ୬୦ ପରିଘ ୨୪ । ୪୧ ତୈତିଲ ୨୫ । ୫୬ ରବ୍ୟଂଶ ୦ ୨୫ । ୩୬ ଦିନାର୍ଦ୍ଧ ୧୩ । ୩୭ ଜାନୁଏରି ମାସ ୧୩ ତାରିଖ ।

୩ ମାଘ । ସୋମବାର ସପ୍ତମୀ ୨୦ । ୧୨ ରେବତୀ ୨୮ । ୧୧ ମୀନ ୩୮ । ୧୧ ଶିବ ୧୬ । ୨ ବାଣିଜ୍ୟ ୨୦ । ୧୨ ରବ୍ୟଂଶ ୧୨୩ । ୮ ଦିନାର୍ଦ୍ଧ ୧୩ । ୩୮ ଜାନୁଏରି ୧୪ ତାରିଖ ।

୪ ମାଘ । ମଙ୍ଗଳବାର ଅଷ୍ଟମୀ ୧୫ । ୪ ଅଶ୍ୱିନୀ ୩୪ । ୭ ମେଷ ୬୦ ସିଦ୍ଧି ୯ । ୩୯ ବବ ୧୫ । ୧୪ ରବ୍ୟଂଶ ୨୨୫ । ୨୮ ଦିନାର୍ଦ୍ଧ ୧୩ । ୩୮ ଜାନୁଏରି ୧୫ ତାରିଖ ।

୫ ମାଘ । ବୁଧବାର ନବମୀ ୧୦ । ୩୯ ଭରଣୀ ୩୨ । ୧୧ ମେଷ ୪୨ । ୪୦ ସାଧ୍ୟ ୨ । ୫୦ କୌଳବ ୧୦ । ୩୯ ରବ୍ୟଂଶ ୩୨୭ । ୫ ଦିନାର୍ଦ୍ଧ ୧୩ । ୩୮ ଯୋଗକ୍ଷୟ । ଜାନୁଏରି ୧୬ ତାରିଖ ।

୬ ମାଘ । ଗୁରୁବାର ଦଶମୀ ୬ । ୪୯ କୃତ୍ତିକା ୩୦ । ୨ ବୃଷ ୬୦ ଶୁକ୍ଳ ୫୦ । ୪୧ ଗର ୬ । ୪୯ ରବ୍ୟଂଶ ୪୨୮ । ୨୨ ଦିନାର୍ଦ୍ଧ ୧୩ । ୩୯ ସୁଦଶାବ୍ରତ ସମ୍ବତ୍ସର । ଜାନୁଏରି ୧୭ ତାରିଖ ।

୭ ମାଘ । ଶୁକ୍ରବାର ଏକାଦଶୀ ୩ । ୫୮ ରୋହିଣୀ ୨୯ । ୩୦ ବୃଷ ୫୯ । ୪୩ ବ୍ରହ୍ମ ୪୬ । ୭ ବଣିଜ ୩ । ୫୮ ରବ୍ୟଂଶ ୫୨୯ । ୪୦ ଦିନାର୍ଦ୍ଧ ୧୩ । ୩୯ ଜାନୁଏରି ୧୮ ତାରିଖ ।

୮ ମାଘ । ଶନିବାର ଦ୍ୱାଦଶୀ ୨ । ୧୫ ମୃଗଶିର ୨୯ । ୪୯ ମିଥୁନ ୬୦ ଇନ୍ଦ୍ର ୪୨ । ୧୯ ବାଳବ ୨ । ୫ ରବ୍ୟଂଶ ୬୩୦ । ୫୮ ଦିନାର୍ଦ୍ଧ ୧୩ । ୩୯ ଜାନୁଏରି ୧୯ ତାରିଖ ।

୯ ମାଘ । ରବିବାର ତ୍ରୟୋଦଶୀ ୧ । ୫୪ ଆର୍ଦ୍ରା ୩୮ । ୪୧ ମିଥୁନ ୬୦ ବୈଧୃତ ୪୧ । ୧ ତୈତିଳ ୧ । ୫୪ ରବ୍ୟଂଶ ୭୩୧ । ୨୨ ଦିନାର୍ଦ୍ଧ ୧୩ । ୪୦ ଜାନୁଏରି ୨୦ ତାରିଖ ।

୧୦ ମାଘ । ସୋମବାର ଚତୁର୍ଦ୍ଦଶୀ ୨ । ୩୨ ପୁନର୍ବସୁ ୩୦ । ୧୨ ମିଥୁନ ୧୮ । ୩୪ ବିଷ୍କୁମ୍ଭ ୩୮ । ୧ ବାଣିଜ୍ୟ ୨ । ୩୨ ରବ୍ୟଂଶ ୮୩୨ । ୩୭ ଦିନାର୍ଦ୍ଧ ୧୩ । ୪୦ ଜାନୁଏରି ୨୧ ତାରିଖ ।

୧୧ ମାଘ । ମଙ୍ଗଳବାର ପୌର୍ଣ୍ଣମୀ ୪ । ୩୮ ପୁଷ୍ୟା ୩୭ । ୫୮ କର୍କଟ ୬୦ ପ୍ରୀତ ୩୭ । ୨ ବବ ୪ । ୩୮ ରବ୍ୟଂଶ ୯୩୪ । ୨ ଦିନାର୍ଦ୍ଧ ୧୩ । ୪୦ ପୁଷ୍ୟାଭିଷେକ । ଜାନୁଏରି ୨୨ ତାରିଖ ।

୧୨ ମାଘ । ବୁଧବାର ପ୍ରତିପଦା ୭ । ୫୭ ଅଶ୍ଳେଷା ୪୩ । ୧୮ କର୍କଟ ୪୩ । ୧୮ ଆୟୁଷ୍ମାନ ୩୭ । ୨୩ କୌଳବ ୭ । ୫୭ ରବ୍ୟଂଶ ୧୦୩୫ । ୫ ଦିନାର୍ଦ୍ଧ ୧୩ । ୪୧ ଜାନୁଏରି ୨୩ ତାରିଖ ।

୧୩ ମାଘ । ଗୁରୁବାର ଦ୍ୱିତୀୟା ୧୧ । ୨୮ ମଘା ୪୯ । ୨୩ ସିଂହ ୬୦ ସୌଭାଗ୍ୟ ୩୮ । ୧୪ ଗର ୧୧ । ୨୮ ରବ୍ୟଂଶ ୧୧୩୬ । ୧୭ ଦିନାର୍ଦ୍ଧ ୧୩ । ୪୨ ଜାନୁଏରି ୨୪ ତାରିଖ । ଗ୍ରହ ୧୫ ଦଣ୍ଡପରେ ବିବାହ ।

୧୪ ମାଘ । ଶୁକ୍ରବାର ତୃତୀୟା ୧୭ । ୨୨ ପୂର୍ବ ଫାଲଗୁନୀ ୫୫ । ୪୭ ସିଂହ ୬୦ ଶୋଭନ ୩୯ । ୨୦ ବିଷ୍ଟି ୧୭ । ୨୨ ରବ୍ୟଂଶ ୧୨୩୭ । ୨୩ ଦିନାର୍ଦ୍ଧ ୧୩ । ୪୪ ଜାନୁଏରି ୨୫ ତାରିଖ ।

୧୫ ମାଘ । ଶନିବାର ଚତୁର୍ଥୀ ୨୨ । ୪୫ ଉତ୍ତର ଫାଲଗୁନୀ ୬୦ ସିଂହ ୧୨ । ୨୯ ଅତିଗଣ୍ଡ ୪୦ । ୫୮ ବାଲବ ୨୨ । ୪୫ ରବ୍ୟଂଶ ୧୩୩୮ । ୧୩ ଦିନାର୍ଦ୍ଧ ୧୩ । ୪୫ ବିବାହ । ଜାନୁଏରି ୨୬ ତାରିଖ ।

୧୬ ମାଘ । ରବିବାର ପଞ୍ଚମୀ ୨୮ । ୧୬ ଉତ୍ତର ଫାଲ୍‌ଗୁନ ୩ । ୩୫ କନ୍ୟା ୬୦ ଶୁଭ କର୍ମ ୦୭ । ୧୧ କୌଳବ ୨୮ । ୧୬ ରବ୍ୟଂଶ ୧୪୪୦ । ୨୪ ଦିନାର୍ଦ୍ଧ ୧୩ । ୪୬ ଜାନୁଏରି ୨୭ ତାରିଖ ।

୧୭ ମାଘ । ସୋମବାର ଷଷ୍ଠୀ ୩୩ । ୨ ହସ୍ତା ୮ । ୫୪ କନ୍ୟା ୪୧ । ୩୬ ଧୃତ ୪୩ । ୪ ଗର ୧୩ । ୨ ରବ୍ୟଂଶ ୧୫୪୧ । ୨୯ ଦିନାର୍ଦ୍ଧ ୧୩୪୭ ଜାନୁଏରି ୨୮ ତାରିଖ ।

୧୮ ମାଘ । ମଙ୍ଗଳବାର ସପ୍ତମୀ ୩୭ । ୧୮ ରେବତୀ ୧୪ । ୨୦ ତୁଳା ୬୦ ଶୂଳ ୪୩ । ୧୨ ବଣିଜ ୫ । ୧୦ ରବ୍ୟଂଶ ୧୭୪୨ । ୩୬ ଦନାର୍ଦ୍ଧ ୧୩ । ୪୯ ଜାନୁଏର ୨୯ ତାରିଖ ।

୧୯ ମାଘ । ବୁଧବାର ଅଷ୍ଟମୀ ୪୦ । ୧୨ ସ୍ୱାତୀ ୧୮ । ୫ ତୁଳା ୬୦ ଗଣ୍ଡ ୪୩ । ୧୨ ବାଳବ ୯ । ୧୦ ରବ୍ୟଂଶ ୧୭୪୩ । ୩୧ ଦନାର୍ଦ୍ଧ ୧୩ । ୪୯ ଜାନୁଏର ୩୦ ତାରିଖ ।

୨୦ ମାଘ । ଗୁରୁବାର ନବମୀ ୪ । ୫୪ ବିଶାଖା ୨୨ । ୨୭ ତୁଳା ୬ । ୨୪ ବୃଦ୍ଧ ୪୦ । ୫୯ କୈଳବ ୧୧ । ୩ ରବ୍ୟଂଶ ୧୮୪୩ । ୩୭ ଦନାର୍ଦ୍ଧ ୧୩ । ୫୧ ଜାନୁଏର ୩୧ ତାରିଖ ।

୨୧ ମାଘ । ଶୁକ୍ରବାର ଦଶମୀ ୫୬ । ୪ ଅନୁରାଧା ୨୪ । ୨୦ ବିଚ୍ଛା ୬୦ ଧ୍ରୁବ ୩୮ । ୪୦ ବାଣିଜ୍ୟ ୧୨ । ୦ ରବ୍ୟଂଶ ୧୯୪୮ । ୪୮ ଦନାର୍ଦ୍ଧ ୧୩ । ୫୨ ଫେବୃଏର ୧ ତାରିଖ ।

୨୨ ମାଘ । ଶନିବାର ଏକାଦଶୀ ୪୧ । ୨୮ ଜ୍ୟେଷ୍ଠା ୨୫ । ୩୦ ବିଚ୍ଛା ୨୫ । ୩୦ ବ୍ୟାଘାତ ୩୪ । ୩୧ ବବ ୧୧ । ୫୧ ରବ୍ୟଂଶ ୨୦୪୬ । ୦ ଦନାର୍ଦ୍ଧ ୧୩ । ୫୩ ସୂର୍ଯ୍ୟ ୧୨ । ୪୪ ଉତ୍ତର ବିବାହ । ଫେବୃଏର ୨ ତାରିଖ ।

୨୩ ମାଘ । ରବିବାର ଦ୍ୱାଦଶୀ ୩୯ । ୫୦ ମୂଳା ୨୫ । ୩୪ ଧନୁ ୬୦ ହର୍ଷଣ ୩୪ । ୧୮ କୈଳବ ୧୦ । ୩୧ ରବ୍ୟଂଶ ୨୧୪୬ । ୫୧ ଦନାର୍ଦ୍ଧ ୧୩ । ୫୫ ଉଦୟ ୨୫ ଦଣ୍ଡ ଭିତରେ ବିବାହ । ଫେବୃଏର ୩ ତାରିଖ ।

୨୪ ମାଘ । ସୋମବାର ତ୍ରୟୋଦଶୀ ୩୬ । ୧୦ ପୂର୍ବାଷାଢ଼ା ୨୩ । ୫୬ ଧନୁ ୩୮ । ୨୧ ବଜ୍ର ୨୪ । ୨୩ ଗର ୭ । ୫୭ ରବ୍ୟଂଶ ୨୨୪୮ । ୫୧ ଦନାର୍ଦ୍ଧ ୧୩ । ୫୫ ଫେବୃଏର ୪ ତାରିଖ ।

୨୫ ମାଘ । ମଙ୍ଗଳବାର ଚତୁର୍ଦ୍ଦଶୀ ୩୧ । ୧୯ ଉତ୍ତରାଷାଢ଼ା ୨୧ । ୩୭ ମକର ୬୦ ସିଦ୍ଧ ୧୮ । ୧୯ ବିଷ୍ଟି ୩ । ୪୧ ରବ୍ୟଂଶ ୨୩୪୯ । ୪୭ ଦନାର୍ଦ୍ଧ ୧୩ । ୫୭ ଫେବୃଏର ୫ ତାରିଖ ।

୨୬ ମାଘ । ବୁଧବାର ଅମାବାସ୍ୟା ୨୨ । ୮ ଶ୍ରବଣା ୧୮ । ୪୩ ମକର ୪୬ । ୫୦ ବ୍ୟତିପାତ ୧୧ । ୨୭ ଚତୁଷ୍ପଦ ୨୨ । ୮ ରବ୍ୟଂଶ ୨୪୫୦ । ୫୫ ଦନାର୍ଦ୍ଧ ୧୩ । ୫୭ ତ୍ରିବେଣୀ । ଫେବୃଏର ୬ ତାରିଖ । ଶୁକ୍ର ବୃଦ୍ଧ ଅଶୁଭକାଳ ।

୨୭ ମାଘ । ଗୁରୁବାର ପ୍ରତିପଦା ୨୧ । ୩୩ ଧନିଷ୍ଠା ୧ । ୫୯ କୁମ୍ଭ ୭୦ ବରୀୟାନ_ ୪ । ୩୭ ବବ ୨୧ । ୩ ରବ୍ୟଂଶ ୨୫୫୧ । ୩ ଦିନାର୍ଦ୍ଧ ୧୩ । ୫୯ ଯୋଗ ୧୯ କ୍ଷୟ । ଫେବ୍ରୁଏର ୭ ତାରିଖ ।

୨୮ ମାଘ । ଶୁକ୍ରବାର ଦ୍ୱିତୀୟା ୧୫ । ୫୧ ଶତଭିଷା ୧୧ । ୩ କୁମ୍ଭ ୫୨ । ୫୪ ଶିବ ୪୮ । ୩୬ କୌଳବ ୧୫ । ୫୧ ରବ୍ୟଂଶ ୨୬୫୨ । ୩୧ ଦିନାର୍ଦ୍ଧ ୧୪ । ୧ ଫେବ୍ରୁଏର ୮ ତାରିଖ ।

୨୯ ମାଘ । ଶନିବାର ତୃତୀୟା ୯ । ୫୫ ପୂର୍ବାଭାଦ୍ର ୬ । ୫୦ ମୀନ ୭୦ ସିଦ୍ଧି ୪୦ । ୪୫ ଗର ୯ । ୨୫ ରବ୍ୟଂଶ ୨୭୫୩ । ୨୫ ଦିନାର୍ଦ୍ଧ ୧୪ । ୩ ଫେବ୍ରୁଏର ୯ ତାରିଖ ।

୩୦ ମାଘ । ରବିବାର ଚତୁର୍ଥୀ ୪ । ୦ ଉତ୍ତରଭାଦ୍ର ୨ । ୪୩ ମୀନ ୨୭ । ୨ ସାଧ୍ୟ ୩୨ । ୭ ବିଷ୍ଟି ୪ । ୦ ରବ୍ୟଂଶ ୨୮୫୪ । ୬ ଦିନାର୍ଦ୍ଧ ୧୪ । ୫ ଶ୍ରୀପଞ୍ଚମୀ । ତିଥି କ୍ଷୟ ୫୪ । ନକ୍ଷତ୍ର କ୍ଷୟ ୫୫ । ଗଣେଶ ବ୍ରତ ଫେବ୍ରୁଏର ୧୦ ତାରିଖ । ବୃହସ୍ପତି ବୃଦ୍ଧ ଅଶୁଦ୍ଧକାଳ ।

—:*:—

# ପ୍ରବୋଧ ଚନ୍ଦ୍ରିକା

୩ ସଂଖ୍ୟା ।

ସନ ୧୨୭୩ । ମିନ । ॥ ସନ ୧୮୬୭ । ମାର୍ଚ୍ଚ ।

ଅଥ ବିଷ୍ଣୁଶର୍ମକର୍ତ୍ତୃକ ହିତୋପଦେଶଃ ।

---

ଏଥି ନିମନ୍ତେ ସର୍ବଥା ଅବିଶ୍ୱସ୍ତ କର୍ମ କର୍ତ୍ତବ୍ୟ ନୁହେ ; ଯେହେତୁର,

ସୁଜୀର୍ଣ୍ଣମନ୍ନଂ ସୁବିଚକ୍ଷଣଃ ସୁତଃ,
ସୁଶାସିତା ସ୍ତ୍ରୀ ନୃପତିଃ ସୁସେବିତଃ ।
ସୁଚିନ୍ତ୍ୟ ଚୋକ୍ତଂ ସୁବିଚାର୍ଯ୍ୟ ଯତ୍କୃତଂ,
ସୁଦୀର୍ଘକାଳେଽପି ନ ଯାତି ବିକ୍ରିୟାଂ ॥

ଉତ୍ତମରୂପେ ଜୀର୍ଣ୍ଣ ଅନ୍ନ ଉତ୍ତମ ପଣ୍ଡିତ ପୁତ୍ର, ଅତିଶୟ ବଶୀଭୂତ ସ୍ତ୍ରୀ, ସୁସେବିତ ରାଜା ଏବଂ ସୁନ୍ଦରରୂପେ ବିଚାର କରି ଯାହା କରାଯାଏ, ଏମାନେ ଚିରକାଳରେ ସୁଦ୍ଧା ବିକାର ପ୍ରାପ୍ତ ହୁଅନ୍ତି ନାହିଁ ।

ଏକଥା ଶୁଣି କୌଣସି କପୋତ ଗର୍ବ କରି କହିଲା, ଆଃ ଏ କି କହୁଅଛ ?

ବୃଦ୍ଧସ୍ୟ ବଚନଂ ଗ୍ରାହ୍ୟମାପତ୍କାଲେ ହ୍ୟୁପସ୍ଥିତେ ।
ସର୍ବତ୍ରୈବଂ ବିଚାରେଣ ଭୋଜନେ ତ୍ୱପ୍ରବର୍ତ୍ତିନଂ ॥

ଆପତ୍କାଳ ଉପସ୍ଥିତ ହେଲେ ବୃଦ୍ଧ ଲୋକର ବଚନ ଗ୍ରାହ୍ୟ ହୁଏ, ଅନ୍ୟାନ୍ୟସୁଦ୍ଧା ବିଚାର ଦ୍ୱାରା ଗ୍ରାହ୍ୟ ହୁଏ; ମାତ୍ର ଭୋଜନ ବିଷୟରେ ଗ୍ରାହ୍ୟ ନୁହେ; ଯେହେତୁର,

ଶଙ୍କାଭିଃ ସର୍ବମାକ୍ରାନ୍ତମନ୍ନଂ ପାନଂ ଚ ଭୂତଲେ ।
ପ୍ରବୃତ୍ତିଃ କୁତ୍ର କର୍ତ୍ତବ୍ୟା ଜୀବିତବ୍ୟଂ କଥଂନୁବା ॥

ପୃଥିବୀମଣ୍ଡଳରେ ସକଳ ଅନ୍ନ ଓ ଜଳାଦି ଶଙ୍କା ଦ୍ୱାରା ବ୍ୟାପ୍ତ ଅଛି, ତହିଁରେ କେଉଁଠାରେ ପ୍ରବୃତ୍ତି କର୍ତ୍ତବ୍ୟ ? କି ପ୍ରକାରେ ବା ଜୀବନଧାରଣ କର୍ତ୍ତବ୍ୟ ? ସେହିରୂପେ ପଣ୍ଡିତମାନେ କହିଅଛନ୍ତି, ଯଥା,

ଈର୍ଷ୍ୟୀ ଘୃଣୀ ତ୍ୱସନ୍ତୁଷ୍ଟଃ କ୍ରୋଧନୋ ନିତ୍ୟଶଙ୍କିତଃ ।
ପରଭାଗ୍ୟୋପଜୀବୀ ଚ ଷଡ଼େତେ ଦୁଃଖଭାଗିନଃ ॥

ଈର୍ଷ୍ୟା ବିଶିଷ୍ଟ, ଘୃଣାଯୁକ୍ତ, ଅସନ୍ତୁଷ୍ଟ, କ୍ରୁଦ୍ଧ, ସର୍ବଦା ଶଙ୍କ ଆଉ ପରଭାଗ୍ୟୋପଜୀବୀ ଏହି ଛ ଜଣ ଦୁଃଖଭାଗୀ ହୁଅନ୍ତି ।

ଇହା ଶୁଣି ସକଳ କପୋତମାନେ ସେଠାରେ ପ୍ରବେଶ ହେଲେ; ଯେହେତୁରୁ,

ସୁମହାନ୍ତ୍ୟପି ଶାସ୍ତ୍ରାଣି ଧାରୟନ୍ତୋ ବହୁଶ୍ରୁତାଃ ।
ଛେତ୍ତାରଃ ସଂଶୟାନାଂ ଚ କ୍ଲିଶ୍ୟନ୍ତେ ଲୋଭମୋହିତାଃ ।

ପଣ୍ଡିତମାନେ ମହାଶାସ୍ତ୍ର ଜାଣିକରିସୁଦ୍ଧା ପୁନଶ୍ଚ ସଂଶୟର ଛେଦନକର୍ତ୍ତା ହେଲେହେଁ ଲୋଭରେ ମୁଗ୍‌ଧ ହୋଇ କ୍ଳେଶପ୍ରାପ୍ତ ହୁଅନ୍ତି ।

ଲୋଭାତ୍ କ୍ରୋଧଃ ପ୍ରଭବତି ଲୋଭାତ୍କାମଃ ପ୍ରଜାୟତେ ।
ଲୋଭାନ୍ମୋହଶ୍ଚ ନାଶଶ୍ଚ ଲୋଭଃ ପାପସ୍ୟ କାରଣଃ ॥

ଲୋଭରୁ କ୍ରୋଧ ହୁଏ, ଲୋଭରୁ କାମ ଜନ୍ମେ, ଲୋଭରୁ ମୋହ ଓ ନାଶ ହୁଏ; କେବଳ ଲୋଭ ପାପର କାରଣ ଅଟେ । ତହିଁହିଁରୁ ସମସ୍ତେ ଜାଲରେ ବନ୍ଧ ହେଲେ,

ଅନନ୍ତର ଯାହା କହିବାରେ ସେ ସ୍ଥାନରେ ପ୍ରବେଶ ହୋଇଥିଲେ, ତାକୁ ସମସ୍ତେ ତିରସ୍କାର କଲେ । ସେ ପ୍ରକାର ମଧ୍ୟ ଉକ୍ତଅଛି ।

ନ ଗଣସ୍ୟାଗ୍ରତୋ ଗଚ୍ଛେତ୍ସିଦ୍ଧେ କାର୍ଯ୍ୟେ ସମଂ ଫଳଂ ।
ଯଦି କାର୍ଯ୍ୟବିପତ୍ତିଃସ୍ୟା ନ୍ମୁଖରସ୍ତତ୍ର ହନ୍ୟତେ ॥

ସମସ୍ତଙ୍କ ଅଗ୍ରରେ ଯିବ ନାହିଁ, କାରଣ କି କାର୍ଯ୍ୟସିଦ୍ଧି ହେଲେ ସମସ୍ତଙ୍କର ସମାନ ଫଳ, କିନ୍ତୁ କାର୍ଯ୍ୟରେ ବିଘ୍ନ ହେଲେ ପ୍ରଧାନ ବ୍ୟକ୍ତି ଦୋଷଭାଗୀ ହୁଏ ।

ଆପଦାଂ କଥିତଃ ପନ୍ଥା ଇନ୍ଦ୍ରିୟାଣାମସଂ ଯମଃ ।
ତଜ୍ଜୟଃ ସମ୍ପଦାଂ ମାର୍ଗୋ ଯେନେଷ୍ଟଂ ତେନ ଗମ୍ୟତାଂ ।

ଏବଂ ଇନ୍ଦ୍ରିୟ ସକଳର ଦମନ ନ କରିବା ବିପତ୍ତିର ମାର୍ଗ ଅଟେ, ଆଉ ସେମାନଙ୍କର ଦମନକରିବା ସମ୍ପତ୍ତିର ପଥ ଅଟଇ; ବର୍ତ୍ତମାନ ଯେଉଁ ମାର୍ଗରେ ଇଚ୍ଛା ସେହି ମାର୍ଗରେ ଯାଅ ।

ତାଙ୍କ ପ୍ରତି ସମସ୍ତଙ୍କର ତିରସ୍କାର ବାକ୍ୟ ଶୁଣି ଚିତ୍ରଗ୍ରୀବ କହିଲା, ଇହାର ଏ ଦୋଷ ନୁହେଁ; ଯେହେତୁର୍,

ଆପଦାମାପତନ୍ତୀନାଂ ହିତୋଽପ୍ୟାୟାତି ହେତୁତାଂ
ମାତୃଜଙ୍ଘା ହି ବତ୍ସସ୍ୟ ସ୍ତମ୍ଭୀଭବତି ବନ୍ଧନେ ।

ହିତକାରୀସୁଦ୍ଧା ପତନଶୀଳ ଆପଦର କାରଣ ହୁଏ, ଯେମନ୍ତ ମାତୃଜଙ୍ଘା ବତ୍ସର ବନ୍ଧନ ନିମନ୍ତେ ସ୍ତମ୍ଭ ହୁଏ ।

ସ ବନ୍ଧୁର୍ଯୋ ବିପନ୍ନାନାମାପଦୁଦ୍ଧାରଣକ୍ଷମଃ ।
ନ ତୁ ଭୀତପରିତ୍ରାଣବସ୍ତୁପାଲମ୍ଭପଣ୍ଡିତଃ ॥

ଅଥଚ ଯେଉଁ ବ୍ୟକ୍ତି ବିପଦ୍‌ଗ୍ରସ୍ତ ଲୋକଙ୍କୁ ଆପଦରୁ ଉଦ୍ଧାର କରିପାରେ ସେହି ବନ୍ଧୁ, କିନ୍ତୁ ଯେ ଭୀତ ଲୋକର ପରିତ୍ରାଣ ନିମନ୍ତେ ଧନ ଗ୍ରହଣରେ ପଣ୍ଡିତ ସେ ବନ୍ଧୁ ନୁହେ ।

ବିପତ୍କାଳରେ ବିସ୍ମୟାପନ୍ନ ହେବା କୁତ୍ସିତ ପୁରୁଷର ଲକ୍ଷଣ; ଅତଏବ ଏ ସମୟରେ ଧୈର୍ଯ୍ୟ ଅବଲମ୍ବନ କରି ଉପାୟ ଚିନ୍ତା କର; ଯେହେତୁର୍,

ବିପଦି ଧୈର୍ଯ୍ୟମଥାଭ୍ୟୁଦୟେ କ୍ଷମା
ସଦସି ବାକ୍‌ପଟୁତା ଯୁଧି ବିକ୍ରମଃ ।
ଯଶସି ଚାଭିରୁଚି ର୍ବ୍ୟସନଂ ଶ୍ରୁତୌ,
ପ୍ରକୃତିସିଦ୍ଧମିଦଂ ହି ମହାତ୍ମନାଂ ॥

ବିପତ୍କାଳରେ ଧୈର୍ଯ୍ୟ, ବୃଦ୍ଧିକାଳରେ କ୍ଷମା, ସଭାରେ ବାକ୍ୟର ପଟୁତା, ଯୁଦ୍ଧରେ ପରାକ୍ରମ, ଯଶରେ ଅଭିରୁଚି, ଏବଂ ଶାସ୍ତ୍ରଶ୍ରବଣରେ ଆସକ୍ତି, ଏହିସବୁ ଉତ୍ତମ ଲୋକଙ୍କର ସ୍ୱଭାବସିଦ୍ଧ ଅଟଇ ।

ସଂପଦି ଯସ୍ୟ ନ ହର୍ଷୋ,
ବିପଦି ବିଷାଦୋ ନ ରଣେ ଚ ଧୀରତ୍ୱଂ ।
ତଂ ଭୁବନତ୍ରୟତିଲକଂ,
ଜନୟତି ଜନନୀ ସୁତଂ ବିରଳଂ ॥

ଯାହାର ଜନ୍ମକାଳରେ ଆହ୍ଲାଦ ହୁଏନାହିଁ, ବିପତ୍କାଳରେ ବିଷାଦ ହୁଏ ନାହିଁ, ଅଥଚ ଯୁଦ୍ଧରେ ପଣ୍ଡିତ ଅଟେ ଏମନ୍ତ ତ୍ରିଭୁବନଶ୍ରେଷ୍ଠ ପୁତ୍ର ଦୁର୍ଲଭ ।

ଷଡ୍ଦୋଷାଃ ପୁରୁଷେଣେହ ହାତବ୍ୟା ଭୂତିମିଚ୍ଛତା ।
ନିଦ୍ରା ତନ୍ଦ୍ରା ଭୟଂ କ୍ରୋଧ ଆଲସ୍ୟଂ ଦୀର୍ଘସୂତ୍ରତା ॥

ପୁନଶ୍ଚ ନିଦ୍ରା, ତନ୍ଦ୍ରା, ଭୟ, କ୍ରୋଧ, ଆଲସ୍ୟ ଓ ଦୀର୍ଘସୂତ୍ରତା ଏହି ଛ ଦୋଷ ଐଶ୍ୱର୍ଯ୍ୟେଚ୍ଛୁ ପୁରୁଷ ତ୍ୟାଗ କରିବ । ବର୍ତ୍ତମାନ ମଧ୍ୟ ଇହା କର ସମସ୍ତେ ଏକମନ ହୋଇ ଜାଲ ଘେନି ଉଡ; ଯେହେତୁରୁ,

ଅଳ୍ପାନାମପି ବସ୍ତୂନାଂ ସଂହତିଃ କାର୍ଯ୍ୟସାଧିକା ।
ତୃଣୈର୍ଗୁଣତ୍ୱମାପନ୍ନୈର୍ବଧ୍ୟନ୍ତେ ମତ୍ତଦନ୍ତିନଃ ॥

ତୁଚ୍ଛ ବସ୍ତୁର ଯେ ସମୂହ ତହିଁରେ ଯୁକ୍ତ କାର୍ଯ୍ୟ ସାଧନ ହୁଏ; ଯେମନ୍ତ ତୃଣ ସମୂହ ଦ୍ୱାରା ପ୍ରସ୍ତୁତ ରଜ୍ଜୁରେ ମତ୍ତ ହସ୍ତୀ ବନ୍ଧ ହୁଏ ।

ସଂହତିଃ ଶ୍ରେୟସୀ ପୁଂସାଂ ସ୍ୱକୁଲୈରଳ୍ପକୈରପି ।
ତୁଷେଣାପି ପରିତ୍ୟକ୍ତା ନ ପ୍ରରୋହନ୍ତି ତଣ୍ଡୁଲାଃ ॥

ସ୍ୱଜାତୀୟ ତୁଚ୍ଛ ବସ୍ତୁରସୁଦ୍ଧା ସମୂହ ପୁରୁଷର ମଙ୍ଗଳଦାୟକ ହୁଏ। ତହିଁର ଦୃଷ୍ଟାନ୍ତ, ତୁଷରେ ବିହୀନ ହେଲେ ତଣ୍ଡୁଳର ଅଙ୍କୁର ଜନ୍ମେ ନାହିଁ ।

ଇହା ଚିନ୍ତା କରି ସକଳ ପକ୍ଷିମାନେ ଜାଲ ଘେନି ଉପରକୁ ଉଡ଼ିଲେ । ଅନନ୍ତର ସେ ବ୍ୟାଧ ଅତିଦୂରରୁ ଜାଲର ଅପହାରକ କପୋତମାନଙ୍କୁ ଦେଖି ପଶ୍ଚାଦ୍ଧାବମାନ ହୋଇ ଏହି ଭାବନା କଲା, ଏ କପୋତମାନେ ସମସ୍ତେ ଏକତ୍ର ହୋଇ ଆମ୍ଭ ଜାଲକୁ ଘେନି ଯାଉଅଛନ୍ତି; କିନ୍ତୁ ଯେତେବେଳେ ତଳେ ପଡ଼ିବେ ସେତେବେଳେ ଆମ୍ଭର ବଶୀଭୂତ ହେବେ । ତଦନନ୍ତର ସେ ପକ୍ଷିସବୁ ବ୍ୟାଧର ଚକ୍ଷୁ ଦୃଷ୍ଟିରୁ ଅତିକ୍ରମ ହେଲାରୁ ସେହି ବ୍ୟାଧ ନିବର୍ତ୍ତି ହେଲା । ସେଠାରୁ ବ୍ୟାଧକୁ ନିବର୍ତ୍ତି ଦେଖି କପୋତମାନେ କହିଲେ, ହେ ସ୍ୱାମିନ୍, ସମ୍ପ୍ରତି କ କର୍ତ୍ତବ୍ୟ ? ଚିତ୍ରଗ୍ରୀବ କହିଲା,

ମାତା ମିତ୍ରଂ ପିତା ଚେତି ସ୍ୱଭାବାତ୍ ତ୍ରିତୟଂ ହିତଂ ।
କାର୍ଯ୍ୟକାରଣତଶ୍ଚାନ୍ୟେ ଭବନ୍ତି ହିତବୁଦ୍ଧୟଃ ॥

ମାତା, ପିତା ଓ ମିତ୍ର ଏ ତିନି ଜଣେ ସ୍ୱଭାବରେ ହିତକାରୀ ହୁଅନ୍ତି, ଆଉ ଅନ୍ୟ ଲୋକସବୁ କାର୍ଯ୍ୟକାରଣପ୍ରଯୁକ୍ତ ହିତକାରୀ ହୁଏ । ଅତଏବ ଆମ୍ଭମାନଙ୍କ ମିତ୍ର ହିରଣ୍ୟକ ନାମରେ ମୂଷିକରାଜ ଚିତ୍ରବନରେ ଗଣ୍ଡକୀ ନଦୀ ତୀରରେ ବାସ କରି ଅଛନ୍ତି, ସେ ଆମ୍ଭମାନଙ୍କ ପାଶ ଚ୍ଛେଦନ କରିବେ । ଇହା ବିବେଚନା କରି ସମସ୍ତେ ହିରଣ୍ୟକ ଗର୍ତ୍ତ ନିକଟକୁ ଗଲେ ।

ହିରଣ୍ୟକ ସର୍ବଦା ଉପଦ୍ରବ ଶଙ୍କାରେ ଶତଦ୍ୱାର ଗର୍ତ୍ତ କରି ବାସ କରି- ଥାଏ । ସେଠାରୁ ହିରଣ୍ୟକ କପୋତମାନଙ୍କ ପତନ ଶବ୍ଦ ଭୟରେ ଭୀତ ହୋଇ ତୁଷ୍ଣୀଭାବରେ ରହିଲା । ଅନନ୍ତର ଚିତ୍ରଗ୍ରୀବ କହିଲା, ହେ ମିତ୍ର ହିରଣ୍ୟକ, କାହିଁକି ଆମ୍ଭମାନଙ୍କୁ କଥା କହୁ ନାହଁ ? ତେତେବେଳେ ହିରଣ୍ୟକ ମିତ୍ରର ବାକ୍ୟ ବୁଝି ଶୀଘ୍ର ବାହାର ହୋଇ କହିଲା, ଆଃ ଆମ୍ଭେ କି ପୁଣ୍ୟବାନ୍ ଆମ୍ଭର ପରମ ସୁହୃତ୍ ଚିତ୍ରଗ୍ରୀବ ଆସିଛନ୍ତି ।

ଯସ୍ୟ ମିତ୍ରେଣ ସମ୍ଭାଷୋ ଯସ୍ୟ ମିତ୍ରେଣ ସଂସ୍ଥିତିଃ ।
ଯସ୍ୟ ମିତ୍ରେଣ ସଂଲାପସ୍ତତୋ ନାସ୍ତୀହ ପୁଣ୍ୟବାନ ।।

ମିତ୍ର ସହିତ ଯାହାର କଥୋପକଥନ ଓ ମିତ୍ର ସହିତ ଯାହାର ବାସ ଏବଂ ମିତ୍ର ସହିତ ଯାହାର ଆଳାପ ହୁଏ, ପୃଥିବୀରେ ତାହାଠାରୁ ପୁଣ୍ୟବାନ୍ ଆଉ କେହି ନାହିଁ । ତାହାବାଦ ସେ କପୋତମାନଙ୍କୁ ଜାଲରେ ବଦ୍ଧ ଦେଖି ବିସ୍ମୟାପନ୍ନ ହୋଇ କିଞ୍ଚିତ୍କାଳ ରହି କହିଲା, ସଖେ ଏ କି? ଚିତ୍ରଗ୍ରୀବ କହିଲା, ହେ ମିତ୍ର, ଆମ୍ଭମାନଙ୍କର ପୂର୍ବଜନ୍ମକୃତ କର୍ମର ଫଳ ଏହି,

ଯସ୍ମାଚ୍ଚ ଯେନ ଚ ଯଥା ଚ ଯଦା ଚ ଯଚ୍ଚ,
ଯାବଚ୍ଚ ଯତ୍ର ଚ ଶୁଭାଶୁଭମାତ୍ମକର୍ମ ।
ତସ୍ମାଚ୍ଚ ତେନ ଚ ତଥାଚ ତଦା ଚ ତଚ୍ଚ,
ତାବଚ୍ଚ ତତ୍ର ଚ ବିଧାତୃବଶାଦୁପୈତି ।

ଯାହାଠାରୁ, ଯଦ୍ଦ୍ୱାରଣକ, ଯେଉଁ ପ୍ରକାରରେ, ଯେଉଁ କାଳରେ, ଯେଉଁ ସ୍ଥାନରେ, ଯେତେ ଶୁଭ କମ୍ବା ଅଶୁଭ ଆତ୍ମକୃତ କର୍ମ, ସେ ସବୁ ତାହାଠାରୁ, ତଦ୍ଦ୍ୱାରଣକ, ସେହି ପ୍ରକାରରେ, ତେତିକବେଳେ, ସେହି ସ୍ଥାନରେ, ଇଶ୍ୱରେଚ୍ଛାପ୍ରଯୁକ୍ତ ଜୀବକୁ ପ୍ରାପ୍ତ ହୁଏ ।

ରୋଗଶୋକପରୀତାପବନ୍ଧନବ୍ୟସନାନିଚ ।
ଆତ୍ମାପରାଧବୃକ୍ଷସ୍ୟ ଫଳାନ୍ୟେତାନି ଦେହିନାଂ ॥

ଦେହିର ନିଜକୃତ ଅପରାଧରୂପ ବୃକ୍ଷର ରୋଗ ଶୋକ ପରିତାପ ବନ୍ଧନ ବ୍ୟସନରୂପ ଫଳ ହୁଏ ।

ଇହା ଶୁଣି ହିରଣ୍ୟକ ଚିତ୍ରଗ୍ରୀବର ବନ୍ଧନ ଚ୍ଛେଦନ କରିବାକୁ ଶୀଘ୍ର ନିକଟକୁ ଯାନ୍ତେ ଚିତ୍ରଗ୍ରୀବ ତାହା ଦେଖି କହିଲା, ହେ ମିତ୍ର ଏମନ୍ତ କର ନା ପ୍ରଥମେ ଆମ୍ଭର ଆଶ୍ରିତ ଏହି କପୋତମାନଙ୍କ ପାଶ ଚ୍ଛେଦନ କର, ପଶ୍ଚାତ୍ ଆମ୍ଭର ଜାଲ ଚ୍ଛେଦନ କରିବ । ତେତେବେଳେ ହିରଣ୍ୟକ କହିଲା, ଆମ୍ଭେ ଅଲ୍ପବଳ, ଆଉ ଆମ୍ଭର ଦନ୍ତମଧ୍ୟ କୋମଳ, ଅତଏବ ଏହି ସମସ୍ତଙ୍କର ବନ୍ଧନ ଚ୍ଛେଦନ କରିବା ପାଇଁ କିରୂପେ ସମର୍ଥ ହେବା ? ତେବେ ଆମ୍ଭର ଦନ୍ତ ଯେତେବେଳ ପର୍ଯ୍ୟନ୍ତେ ଭଙ୍ଗି ନ ଯିବ ତେତେବେଳ ପର୍ଯ୍ୟନ୍ତେ ତୁମ୍ଭର ପାଶ ଚ୍ଛେଦନ କରୁଂ; ପଶ୍ଚାତ୍ ଏମାନଙ୍କର ମୁକ୍ତା ଯେତେ ପାରିବା ଚ୍ଛେଦନ କରିବୁଂ । ଚିତ୍ରଗ୍ରୀବ କହିଲା, ଏମନ୍ତ ହେଉ, ତଥାପି ଯଥାଶକ୍ତି ଏମାନଙ୍କର ବନ୍ଧନ ଖଣ୍ଡନ କର । ହିରଣ୍ୟକ କହିଲା, ଆପଣାକୁ ପରିତ୍ୟାଗ କରି ଆଶ୍ରିତ ଲୋକର ଯେଉଂ ରକ୍ଷା କରିବା, ତାହା ନୀତିଜ୍ଞ ଲୋକର ସମ୍ମତ ନୁହେଁ ; ଯେହେତୁର୍,

ଆପଦର୍ଥେ ଧନଂ ରକ୍ଷେଦ୍ଦାରାନ୍ ରକ୍ଷେଦ୍ଧନୈରପି ।
ଆତ୍ମାନଂ ସତତଂ ରକ୍ଷେଦ୍ଦାରୈରପି ଧନୈରପି ॥

ବିପତ୍ତି ନିମନ୍ତେ ଧନ ରକ୍ଷା କରିବ, ଧନଦ୍ୱାରା ସ୍ତ୍ରୀକୁ ରକ୍ଷା କରିବ, ଏବଂ ଆପଣାକୁ ସର୍ବଦା ସ୍ତ୍ରୀ ଦ୍ୱାରା ମଧ୍ୟ ଧନଦ୍ୱାରା ରକ୍ଷାକରିବ ।

ଧର୍ମାର୍ଥକାମମୋକ୍ଷାଣାଂ ପ୍ରାଣାଃ ସଂସ୍ଥିତିହେତବଃ ।
ତାନ୍ନିଘ୍ନତା କିଂ ନ ହତଂ ରକ୍ଷତା କିଂ ନ ରକ୍ଷିତଂ ॥

ଅଥଚ ଧର୍ମ ଅର୍ଥ କାମ ମୋକ୍ଷ ଏମାନଙ୍କ ସଂସ୍ଥିତି ନିମନ୍ତେ ଯେଉଂ ପ୍ରାଣ, ସେ ପ୍ରାଣକୁ ଯେଉଂ ଲୋକ ନଷ୍ଟ କରେ, ସେ କି ନଷ୍ଟ ନ କରେ ? ଆଉ ପ୍ରାଣକୁ ଯେ ରକ୍ଷା କରେ, ସେ ବ୍ୟକ୍ତି କି ରକ୍ଷା କରେ ? ଚିତ୍ରଗ୍ରୀବ କହିଲା, ହେ ମିତ୍ର, ନୀତିଶାସ୍ତ୍ର ଏହିରୂପ ସତ୍ୟ, କିନ୍ତୁ, ଆମ୍ଭେ ଆପଣା ଆଶ୍ରିତ ଲୋକଙ୍କ ଦୁଃଖ କୌଣସି ପ୍ରକାରରେ ସହିପାରୁ ନା, ସେଥି ନିମନ୍ତେ ଇହା ବୋଲୁଁ ; ଯେହେତୁର୍,

ଧନାନି ଜୀବିତଞ୍ଚୈବ ପରାର୍ଥେ ପ୍ରାଜ୍ଞ ଉତ୍ସୃଜେତ ।
ସନ୍ନିମିତ୍ତେ ବରଂ ତ୍ୟାଗୋ ବିନାଶେ ନିୟତେ ସତି ॥

ପଣ୍ଡିତମାନେ ପର ନିମନ୍ତେ ଧନ ଓ ପ୍ରାଣ ତ୍ୟାଗ କରନ୍ତି; ହେତୁ କି, ବସ୍ତୁମାତ୍ରର ବିନାଶ ଅବଶ୍ୟ ହୁଏ, ଅତଏବ ସାଧୁଲୋକ ନିମନ୍ତେ ପ୍ରାଣାଦର ତ୍ୟାଗ ଉତ୍ତମ । ଆଉ ଅସାଧାରଣ କାରଣ ଏହି,

ଜାତିଦ୍ରବ୍ୟବଲାନାଞ୍ଚ ସାମ୍ୟମେଷାଂ ମୟା ସହ ।
ମତ୍ପ୍ରଭୁତ୍ୱଫଳଂ ବ୍ରୂହି କଦା କିଂ ତଦ୍ଭବିଷ୍ୟତି ॥

ଆମ୍ଭ ସହିତ ଏମାନଙ୍କର ଜାତି, ଦ୍ରବ୍ୟ, ବଳ ତୁଲ୍ୟ ଅଟେ, ତେବେ ଆମ୍ଭ ପ୍ରଭୁତ୍ୱର ଫଳ କେତେବେଳେ କି ହେବ ତାହା କହ ।

ବିନା ବର୍ତ୍ତନମେବୈତେ ନ ତ୍ୟଜନ୍ତି ମମାନ୍ତିକଂ ।
ତନ୍ମେ ପ୍ରାଣବ୍ୟୟେନାପି ଜୀବୟୈତାନ୍ମମାଶ୍ରିତାନ୍ ॥

ପୁନଶ୍ଚ ଏମାନେ ବେତନ ବ୍ୟତିରେକରେ ମୁଁ ଆମ୍ଭର ସଙ୍ଗ ତ୍ୟାଗ କରନ୍ତି ନାହିଁ, ସେହେତୁରୁ ଆମ୍ଭର ପ୍ରାଣ ନଷ୍ଟ ହେଲେହେଁ ଆମ୍ଭର ଏହି ଆଶ୍ରିତମାନଙ୍କୁ ଜୀବନ ଦାନ କର ।

ମାଂସମୂତ୍ରପୁରୀଷାସ୍ଥିନିର୍ମିତେ ଚ କଲେବରେ ।
ବିନଶ୍ୱରେ ବିହାୟାସ୍ଥାଂ ଯଶଃ ପାଳୟ ମିତ୍ର ମେ ॥

ଆହୁରି ହେ ମିତ୍ର, ମାଂସ ଅସ୍ଥି ଦ୍ୱାରା ନିର୍ମିତ ବିନାଶଶୀଳ ଶରୀରରେ ସ୍ନେହ ପରିତ୍ୟାଗ କରି କୀର୍ତ୍ତି ରକ୍ଷା କର ।

ଯଦି ନିତ୍ୟମନିତ୍ୟେନ ନିର୍ମଳଂ ମଳବାହିନା ।
ଯଶଃ କାୟେନ ଲଭ୍ୟେତ ତଦାଲବ୍ଧଂ ଭବେନ୍ନୁ କିଂ ॥

ଆହେ ଦେଖ, ଅନିତ୍ୟ ଏବଂ ମଳବାହି ଶରୀରଦ୍ୱାରା ନିତ୍ୟ ଅଥଚ ନିର୍ମଳ ଯଶ ଯେବେ ଲବ୍ଧ ହୁଏ, ତେବେ କି ଲବ୍ଧ ନ ହୁଏ ? ସେହେତୁରୁ,

ଶରୀରସ୍ୟ ଗୁଣାନାଞ୍ଚ ଦୂରମତ୍ୟନ୍ତମନ୍ତରଂ ।
ଶରୀରଂ କ୍ଷଣବିଧ୍ୱଂସି କଳ୍ପାନ୍ତସ୍ଥାୟିନୋ ଗୁଣାଃ ॥

ଶରୀର ଓ ଗୁଣର ଯେ ଦୂରତା ସେ ଅତ୍ୟନ୍ତ ଅନ୍ତର, କାରଣ କି, ଶରୀର ଅଳ୍ପକାଳ ସ୍ଥାୟି, ଗୁଣ କଳ୍ପାନ୍ତସ୍ଥାୟୀ ।

ଇହା ଶୁଣି ହିରଣ୍ୟକ ହୃଷ୍ଟଚିତ୍ତ ଓ ପୁଲକିତ ହୋଇ କହିଲା, ସାଧୁ, ଏହି ଆଶ୍ରିତ ବାତ୍ସଲ୍ୟରେ ତିନିଲୋକର ପ୍ରଭୁତ୍ୱ ତୁମ୍ଭଠାରେ ଉପଯୁକ୍ତ ହୁଏ । ଇହା କହି ସେ ହିରଣ୍ୟକ କପୋତମାନଙ୍କ ବନ୍ଧନ ଛେଦନ କଲା । ଅନନ୍ତର

ହିରଣ୍ୟକ କପୋତମାନଙ୍କୁ ସମ୍ମାନ କରି କହିଲା, ହେ ସଖେ ଚିତ୍ରଗ୍ରୀବ, ଏହି ଜାଲରେ ବନ୍ଧନ ହେବାରେ ଦୋଷ ଆଶଙ୍କା କରି ଆପଣାଠାରେ ଅବଜ୍ଞା କର୍ତ୍ତବ୍ୟ ନୁହେ, ଯେହେତୁକ,

ଯୋଽଧିକାଦ୍ୟୋଯନଶତାତ୍ ପଶ୍ୟତୀହାମିଷଂ ଖଗଃ ।
ସ ଏବ ପ୍ରାପ୍ତକାଲସ୍ତୁ ପାଶବନ୍ଧଂ ନ ପଶ୍ୟତି ॥

ଯେଉଂ ପକ୍ଷୀ ଶତ ଯୋଜନ ଅଧିକରୁ ସୁଦ୍ଧା ଆହାର ଦେଖେ, ସେହି ପକ୍ଷୀ ମୃତ୍ୟୁକାଳ ଉପସ୍ଥିତ ହେଲେ ପାଶବନ୍ଧନ ଦେଖିପାରେ ନାହିଁ ।

ଶଶି ଦିବାକରୟୋର୍ଗ୍ରହପୀଡ଼ନଂ
ଗଜଭୁଜଙ୍ଗମୟୋରପି ବନ୍ଧନଂ ।
ମତିମତାଞ୍ଚ ବିଲୋକ୍ୟ ଦରିଦ୍ରତାଂ,
ବିଧିରହୋ ବଲବାନିତି ମେ ମତିଃ ॥

ଅଥଚ ଚନ୍ଦ୍ର, ସୂର୍ଯ୍ୟଙ୍କ ଗ୍ରହଣ ଏବଂ ହସ୍ତି ଓ ସର୍ପର ବନ୍ଧନ, ବୁଦ୍ଧିମାନ୍ ବ୍ୟକ୍ତିର ଦରିଦ୍ରତା ଦେଖି ଆମ୍ଭର ଏହି ବିବେଚନା ହେଉଅଛି, କେବଳ ବିଧାତା ବଳବାନ୍ ।

ବ୍ୟୋମୈକାନ୍ତବିହାରିଣୋଽପି ବିହଗାଃ ସଂପ୍ରାପ୍ନୁବନ୍ତ୍ୟାପଦଂ,
ବଧ୍ୟନ୍ତେ ନିପୁଣୈରଗାଧସଲିଲାନ୍ମତ୍ସ୍ୟାଃ ସମୁଦ୍ରାଦପି ।
ଦୁର୍ଣ୍ଣୀତଂ କମିହାସ୍ତି କିଂ ସୁଚରିତଂ କଃ ସ୍ଥାନଲାଭେ ଗୁଣଃ,
କାଲୋ ହି ବ୍ୟସନପ୍ରସାରିତକରୋ ଗୃହ୍ଣାତି ଦୂରାଦପି ॥

ପୁନର୍ବାର ଆକାଶବିହାରି ପକ୍ଷିମାନେ ସୁଦ୍ଧା ବିପଦ ପାନ୍ତି, ଏବଂ ବୁଦ୍ଧିମାନ୍ ଲୋକେ ଅତଳସ୍ପର୍ଶଜଳ ଯେଉଂ ସମୁଦ୍ର ତହିଁରୁ ସୁଦ୍ଧା ମତ୍ସ୍ୟଧାରଣ କରନ୍ତି; ଏଥିରେ ଦୁର୍ଣ୍ଣୀତି ଓ ସୁଚରିତ୍ର କି ଅଛି ? ସ୍ଥାନଲାଭରେ କି ଗୁଣ ? ଯେହେତୁକ, ବ୍ୟସନରୂପ ବିସ୍ତାରିତ ହସ୍ତ ଯେ କାଳ ସେ ଦୂରରୁ ମଧ୍ୟ ଗ୍ରହଣ କରନ୍ତି । ଏହି ପ୍ରକାରେ ପ୍ରବୋଧ ଦେଇ ଆତିଥ୍ୟପୂର୍ବକ ଆଲିଙ୍ଗନ କରି ବିଦା କରି ଦେଲା । ସେଠାରୁ ଚିତ୍ରଗ୍ରୀବ ସପରିବାର ହୋଇ ଆପଣା ବାଞ୍ଛିତ ଦେଶକୁ ଗଲା । ହିରଣ୍ୟକ ମଧ୍ୟ ଆପଣା ଗର୍ତ୍ତରେ ପ୍ରବେଶ ହେଲା । ଏତଏବ ଲୋକେ ଶତ ଶତ ମିତ୍ର କରିବେ; ଦେଖ, ମୂଷିକ ମିତ୍ର ଦ୍ୱାରା କପୋତମାନେ ବନ୍ଧନରୁ ମୁକ୍ତ ହେଲେ ।

---

## ୬। ସୀତାଙ୍କ ବିବରଣ।

ରାମ କହିଲେ ହେ ପ୍ରିୟତମେ ! ସେ ବନ ଅତିଭୟାନକ ଏବଂ ସିଂହ ବ୍ୟାଘ୍ର ଓ ରାକ୍ଷସମାନଙ୍କରେ ପୂର୍ଣ୍ଣ । ତୁମ୍ଭେ ନବୀନ ଯୁବତୀ, ଏହି ଦୁର୍ଗମ ଭୟାନକ ଅରଣ୍ୟକୁ କିରୂପେ ଯିବ, ଏବଂ ଫଳ ମୂଳ ଆହାର କରି କିରୂପେ ପ୍ରାଣଧାରଣ କରିବ । ଆଉ ତୁମ୍ଭର କୋମଳ ଅଙ୍ଗ ଏବଂ ତୁମ୍ଭେ କୋମଳ ଶଯ୍ୟାରେ ଶୟନ କରି ଥାଅ, ମୃତ୍ତିକାରେ କିରୂପେ ଶୟନ କରିବ । ଆଉମଧ୍ୟ ତୁମ୍ଭେ କେତେବେଳେ ଘରୁ ବାହାର ହୋଇ ନାହିଁ, ତୁମ୍ଭେ କିରୂପେ ପଦବ୍ରଜରେ ଗମନ କରିବ; ତୁମ୍ଭର କୋମଳ ଚରଣ କୁଶାଙ୍କୁରରେ ବିଦ୍ଧ ହେଲେ ତୁମ୍ଭର ଯନ୍ତ୍ରଣାର ଶେଷ ରହିବ ନାହିଁ । ଇହା ଛଡ଼ା ବନବାସରେ ଦୁହିଙ୍କର ବିକୃତ ମୂର୍ତ୍ତି ହେବ, ସେଥିରେ ପରସ୍ପର ଦର୍ଶନରେ ସୁଖ ହେବ ନାହିଁ । ଅତଏବ ତୁମ୍ଭେ ଅନ୍ତଃପୁରରେ ବାସ କର, ଚତୁର୍ଦ୍ଦଶ ବର୍ଷ ଗତ ହେଲେ ଆମ୍ଭେ ପୁନର୍ବାର ତୁମ୍ଭ ସଙ୍ଗେ ସୁଖରେ କାଳଯାପନ କରିବୁଁ । ସ୍ୱାମିର ଏ ସକଳ କଥାରେ ଜାନକୀ ଅତିଶୟ କାତର ହୋଇ କହିଲେ, ହେ ନାଥ, ତୁମ୍ଭେ ପଣ୍ଡିତ ହୋଇ କାହିଁକି ଏରୂପ ଅନ୍ୟାୟ କଥା କହୁଅଛ, ଆଉ ଭୂମଣ୍ଡଳରେ ତୁମ୍ଭେ ବୀର ନାମରେ ବିଖ୍ୟାତ, କିନ୍ତୁ ଯେଉଁ ବ୍ୟକ୍ତି ଆପଣା ଭାର୍ଯ୍ୟା ରକ୍ଷା କରିବାକୁ ଅକ୍ଷମ ହୁଏ, ତାହାର ବୀରତ୍ୱ କି ? ଦେଖ, ଭରତ ତୁମ୍ଭ ରାଜ୍ୟ ନେବା ପାଇଁ କିଛି ଉପେକ୍ଷା କଲା ନାହିଁ, ତାହା ରାଜ୍ୟରେ ତୁମ୍ଭ ଭାର୍ଯ୍ୟାକୁ କିଏ ରକ୍ଷା କରିବ ? ତୁମ୍ଭର ପ୍ରାପ୍ତ ରାଜ୍ୟ ଯେ ଅନାୟାସରେ ନେଲା, ତୁମ୍ଭ ସ୍ତ୍ରୀକୁ ନେବା ପାଇଁ ତାହାର ବିଳମ୍ବ କି ? ତୁମ୍ଭେ କହୁଅଛ ବନ ଗମନରେ ଆମ୍ଭ ଚରଣରେ କଣ୍ଟା ଫୁଟିଯିବ, ମାତ୍ର ତୁମ୍ଭେ ନିକଟରେ ଥିଲେ ସେ କଣ୍ଟାକୁ ତୃଣଜ୍ଞାନ କରିବୁଁ । ଆଉ ମୃତ୍ତିକାରେ ଶୟନ କଲେ ଯେବେ ଅଙ୍ଗେ ଧୂଳି ଲାଗିବ ତାହାସବୁ ତୁମ୍ଭ ପ୍ରଭାବରେ ଅଗୁରୁ ଚନ୍ଦନ ଜ୍ଞାନ କରିବୁଁ, ଆଉ ତୁମ୍ଭ ସଙ୍ଗେ ଯେବେ ତରୁମୂଳେ ବାସ କରିବୁଁ ତାହାସବୁ ସ୍ୱର୍ଣ୍ଣପୁରୀରୁ ସହସ୍ର ଗୁଣରେ ସୁଖଜନକ ହେବ । ତୁମ୍ଭ ଦୁଃଖରେ ଦୁଃଖ, ତୁମ୍ଭ ସୁଖରେ ସୁଖ, ତୁମ୍ଭ ବିନା ସକଳ ଅନ୍ଧକାର । ଯେବେ କାନନ ଭ୍ରମଣରେ କ୍ଷୁଧା ବା ତୃଷା ହେବ ତେବେ ତୁମ୍ଭ ଶ୍ୟାମରୂପ ଦର୍ଶନରେ ତାହା ନିବାରଣ କରିବୁଁ । ବିଶେଷ, ଅନେକ ତୀର୍ଥ ପର୍ଯ୍ୟଟନ ହେବ, ଅପୂର୍ବ ବନ ଓ ଗିରି ଦର୍ଶନ କରିବୁଁ । ଆମ୍ଭେ ଯେତେବେଳେ ପିତାଙ୍କ ଗୃହରେ ଥିଲୁ, ବ୍ରାହ୍ମଣ ପଣ୍ଡିତମାନେ କହନ୍ତି ଏହି

କନ୍ୟା ପତି ସଙ୍ଗେ ବନବାସ କରିବ ବ୍ରାହ୍ମଣଙ୍କ ବାକ୍ୟ କେତେବେଳେ ମିଥ୍ୟା ନୁହେ, ଆମ୍ଭ ଅଦୃଷ୍ଟରେ ବନବାସ ଅଛି ତାହା କିଏ ଖଣ୍ଡନ କରି ପାରିବ । ବର୍ତ୍ତମାନ ତୁମ୍ଭେ ଯେବେ ଆମ୍ଭଙ୍କୁ ସଙ୍ଗେ ନେଇ ନ ଯିବ ତେବେ ଆମ୍ଭେ ଆତ୍ମହତ୍ୟା କରିବୁଁ ତହିଁରେ ତୁମ୍ଭେ ସ୍ତ୍ରୀ ବଧର ଅପରାଧୀ ହେବ ।

ଜନକନନ୍ଦିନୀ ଏହି ପ୍ରକାର ଉତ୍ତର କଲାରୁ, ରାମ କହିଲେ, ହେ ସୀତେ, ତୁମ୍ଭ ମନ ପରୀକ୍ଷା ନିମନ୍ତେ ଆମ୍ଭେ ଏହି ସକଳ କଥା କହୁଥିଲୁଁ । ତୁମ୍ଭେ ଯେବେ ନିତାନ୍ତ ଆମ୍ଭ ସଙ୍ଗେ ଯିବାକୁ ଇଚ୍ଛା କର ତେବେ ଅଙ୍ଗାଭରଣ ପରିତ୍ୟାଗ କର । ଏହି କଥା ଶୁଣି ସୀତା ମହାଆହ୍ଲାଦିତା ହୋଇ ଆଭରଣ ଖୋଲି, ଯାହାକୁ ସମ୍ମୁଖରେ ଦେଖିଲେ, ତାହାକୁ ଦେଲେ ଏବଂ ଭଣ୍ଡାରରେ ଯେତେ ବସ୍ତ୍ର ଓ ଧନ ଥିଲା ତେତିକବେଳେ ତାହା ସକଳ ବିତରଣ କଲେ ।

ଅନନ୍ତର ରାମଚନ୍ଦ୍ର ଲକ୍ଷ୍ମଣଙ୍କୁ କହିଲେ, ଭାଇ ତୁମ୍ଭେ ଘରେ ରହି ସମସ୍ତଙ୍କୁ ପାଳନ କର; ଦାସ ଦାସୀମାନଙ୍କ ସର୍ବଦା ତତ୍ତ୍ୱାବଧାରଣ କରିବ; କେତେବେଳେ ରାଜ୍ୟ ନେବାର ଆଶା କରିବ ନାହିଁ । ପିତାମାତା ଆମ୍ଭଙ୍କୁ ନ ଦେଖି କାତର ହେବେ; ମାତ୍ର ତୁମ୍ଭ ଆମ୍ଭର ଅଭେଦାତ୍ମା ଅତଏବ ତୁମ୍ଭଙ୍କୁ ଦେଖିଲେ ସୁଦ୍ଧା ଅନେକ ସାନ୍ତ୍ୱନା ପାଇବେ । ଲକ୍ଷ୍ମଣ କହିଲେ ଆମ୍ଭେ ଆପଣଙ୍କ ସେବକ, ଆପଣ ଯେବେ ଅରଣ୍ୟକୁ ଯିବ ଆମ୍ଭେସୁଦ୍ଧା ଆପଣଙ୍କ ଅନୁଚର ହୋଇ ସଙ୍ଗେ ଯିବୁଁ । ବିଶେଷ, ତୁମ୍ଭେ ଆମ୍ଭେ ଏକ, ବିମାତା ତାହା ଜାଣନ୍ତି; ଅତଏବ ଆମ୍ଭେ ତୁମ୍ଭ ସଙ୍ଗେ ଗମନ ନ କଲେ ସେ କଣ ମନରେ କରିବେ; ଏବଂ ସେବକ ଛାଡ଼ି ତୁମ୍ଭେ ସୀତାଙ୍କୁ ଘେନି କି ପ୍ରକାରେ ବନମାନଙ୍କରେ ଭ୍ରମଣ କରିବ । ଅତଏବ ଆମ୍ଭେ ଏଠାରେ ରହିବୁଁ ନାହିଁ ତୁମ୍ଭ ସଙ୍ଗରେ ଯିବୁଁ । ରାମ କହିଲେ ଯେବେ ନିତାନ୍ତ ସମଭିବ୍ୟାହାରୀ ହୁଅ ତେବେ ଉତ୍ତମ ଧନୁକ ଓ ଶର ସଙ୍ଗେ ନିଅ । କାହିଁକନା ବନ ମଧ୍ୟରେ ଅନେକ ରାକ୍ଷସ ରାକ୍ଷସୀ ଅଛନ୍ତି ସେମାନଙ୍କ ସଙ୍ଗେ ସତତ ଯୁଦ୍ଧ ଦ୍ୱନ୍ଦ୍ୱ ହେବ । ଏହି କଥା ଶୁଣି ଲକ୍ଷ୍ମଣ ଉତ୍ତମ ଉତ୍ତମ ଧନୁକ ଓ ଶର ବାଛି ନେଲେ । ତଦନନ୍ତର ରାମ କହିଲେ, ଆମ୍ଭେମାନେ ବନକୁ ଯାଉଅଛୁଁ, ଆମ୍ଭମାନଙ୍କର ଧନରେ ପ୍ରୟୋଜନ ନାହିଁ; ଅତଏବ ପୁରୋହିତ ଓ ସଜ୍ଜ୍ବଳଜାତ ବ୍ରାହ୍ମଣ ଅଣାଇ, ଯେ ଯାହା ଇଚ୍ଛା କରନ୍ତି ତାହାଙ୍କୁ ତାହା ଦାନ କର; ଏବଂ ଦରିଦ୍ର ଭିକ୍ଷୁକ ଦୀନ ଅନାଥ ଯେଉଁମାନେ ଆମ୍ଭମାନଙ୍କ ଦୁଃଖରେ ଦୁଃଖୀ ସେମାନଙ୍କ ମଧ୍ୟରୁ ଯେ ଯାହା ଯାଚଞା କରନ୍ତି ତାହା ସେମାନଙ୍କୁ ଦିଅ; ଚତୁର୍ଦ୍ଦଶ ବର୍ଷ ମଧ୍ୟରେ ଯେ ରୂପେ କାହାକୁ

ସୁଦ୍ଧା ଅନ୍ୟତ୍ର ଭିକ୍ଷା କରିବାକୁ ନୋହିବ । ଏହି ଆଜ୍ଞା ପାଇ ଲକ୍ଷ୍ମଣ ମୁକ୍ତ ହସ୍ତରେ ସେହି ଧନ ବିତରଣ କଲେ । ଏହିରୂପେ ଅନେକେ ଅନେକ ଧନ ପାଇଲେ ଏବଂ ଯେ ଅତି ଦରିଦ୍ର ଥିଲା ସେ ସୁଦ୍ଧା ଧନାଢ୍ୟ ହେଲା ।

ଅନନ୍ତର ରାମ, ଲକ୍ଷ୍ମଣ ଓ ସୀତା ଅରଣ୍ୟ ଗମନ କରିବା ଲାଗି ପ୍ରସ୍ତୁତ ହେଲେ । ଯେଉଁ ରାମ ଲକ୍ଷ୍ମଣ ସୁନାର ଚତୁର୍ଦୋଳାରେ ଗମନ କରୁଥିଲେ, କେତେବେଳେ ଭୂମିରେ ପାଦ କ୍ଷେପଣ କରନ୍ତି ନାହିଁ; ଓ ଯେଉଁ ସୀତା କେତେବେଳେ ସୂର୍ଯ୍ୟଙ୍କ ମୁଖାବଲୋକନ କରି ନ ଥିଲେ; ସେମାନେ ଅଟ୍ଟାଳିକାରୁ ବାହାର ହୋଇ ରାଜ ମାର୍ଗରେ ଛିଡ଼ା ହୋଇ ଅଛନ୍ତି । ସେମାନଙ୍କର ଏହି ଅବସ୍ଥା ଦେଖି ଅଯୋଧ୍ୟାବାସୀ ସ୍ତ୍ରୀ ପୁରୁଷ ଆବାଳବୃଦ୍ଧ ସମସ୍ତେ ହାହାକାର କରି କ୍ରନ୍ଦନ କଲେ । ରାଜା ଦଶରଥ କେକୟୀଙ୍କ ବଶତାପନ୍ନ ହୋଇ ସେମାନଙ୍କୁ ବନବାସ କରାଇଲେ ଏହି ଅପବାଦରେ ତାବନ୍ତ ନଗର ପୂର୍ଣ୍ଣ ହେଲା ।

ଅନନ୍ତର ରାମ ଲକ୍ଷ୍ମଣ ଓ ସୀତା ରାଜାଙ୍କ ନିକଟକୁ ବିଦା ହେବା ଲାଗି ଗଲେ । ରାଜା ତେତେବେଳେ ଶୋକରେ ବ୍ୟାକୁଳ ହୋଇ କାଳ ଭୁଜଙ୍ଗିନୀ କେକୟୀ ରାଣୀକି ନାନାପ୍ରକାର ତିରସ୍କାର କରୁଥିଲେ । ପରେ ରାମଚନ୍ଦ୍ର ବିଦା ହେବା ପାଇଁ ଆସିଅଛନ୍ତି ଏହି ସମ୍ବାଦ ହେଲାରୁ ସେ ମହିଷୀମାନଙ୍କୁ ଡାକିବା ଲାଗି କହିଲେ । ସେମାନେ ଆସି ରାଜାଙ୍କ ଦୁଇ ପାଖରେ ବସିଲେ । ରାମ, ଲକ୍ଷ୍ମଣ ଏବଂ ସୀତା ତିନି ଜଣେ ରାଜାଙ୍କୁ ନମସ୍କାର କରି କହିଲେ ମହାରାଜ, ଅନୁମତି ହେଉ ଆମ୍ଭେମାନେ ବନକୁ ଗମନ କରିବୁଁ । ରାଜା କ୍ରନ୍ଦନ କରି କରି କହିଲେ ବତ୍ସ, ତୁମ୍ଭ ସଙ୍ଗେ ଆମ୍ଭର ପୁନଦର୍ଶନର ଆଶା ନାହିଁ; ତୁମ୍ଭ ଶୋକରେ ଆମ୍ଭର ଜୀବନାନ୍ତ ନିଶ୍ଚିତ; ଅତଏବ ଆମ୍ଭେ ତୁମ୍ଭ ସଙ୍ଗେ କାନନକୁ ଯିବୁଁ । ରାମ କହିଲେ ପୁତ୍ର ସଙ୍ଗେ ପିତା ଅରଣ୍ୟକୁ ଯିବାର ବିଧି ନୁହେ । ରାଜା କହିଲେ ତେବେ ତୁମ୍ଭେ ଅଦ୍ୟ ବନ ଯାତ୍ରା ନ କରି କାଲି ଯିବ; ଆଜ ଆମ୍ଭେ ତୁମ୍ଭଙ୍କୁ ଦେଖି ମନର ଆଶା ପୂର୍ଣ୍ଣ କରିବୁ । ରାମ କହିଲେ ଏକ ରାତ୍ରି ନିମନ୍ତେ କାହିଁକି ଗୋଟାଏ ଅପଯଶ ରହିବ । ବିଶେଷ, ତାହା ହେଲେ ବିମାତା ଠାକୁରାଣୀ ମନ୍ଦ ବୋଲି କହିବେ; ଅତଏବ ଆଜ କାନନକୁ ଗମନ କରିବା ଶ୍ରେୟଃ ।

ରାଜା ଏହି କଥା ଶୁଣି ସୁମନ୍ତ୍ର ସାରଥିକି ଆଜ୍ଞା ଦେଲେ ରାମଙ୍କ ସଙ୍ଗେ ତୁରଙ୍ଗ ମାତଙ୍ଗ ଓ ବହୁମୂଲ୍ୟ ଧନ ଦିଅ; ଅରଣ୍ୟ ଭିତରେ ଅନେକ ପୁଣ୍ୟ

ସ୍ଥାନ ଓ ତପସ୍ୱୀ ଅଛନ୍ତି ରାମ ଏହି ସକଳ ଧନ ସେମାନଙ୍କୁ ଦାନ କରିବେ । ରାଜା ଏହି ଆଜ୍ଞା କଲାରୁ କେକୟୀ ଅତ୍ୟନ୍ତ ମ୍ଳାନବଦନା ହୋଇ ରାଜାଙ୍କୁ କହିଲେ ମହାରାଜ, ଆପଣ ଭରତଙ୍କୁ ସକଳ ରାଜ୍ୟ ଦେଇଅଛନ୍ତି, ଅତଏବ ଏହି ସକଳ ଧନ ନେଇ ରାମଙ୍କୁ ଦେଉଅଛନ୍ତି ଏକ ବିଚାର । ରାମଚନ୍ଦ୍ର କହିଲେ, ପିତଃ, ବିମାତା ଉତ୍ତମ ଆଜ୍ଞା କରିଅଛନ୍ତି, ଆମ୍ଭେ ଅରଣ୍ୟକୁ ଯିବୁଁ ଆମ୍ଭର ଅଶ୍ୱ ହସ୍ତୀ ଓ ଅର୍ଥରେ କି ପ୍ରୟୋଜନ ; ଆମ୍ଭେ ବଲ୍କଲ ପରିଧାନ କରି ଅରଣ୍ୟରେ ଭ୍ରମଣ କରିବୁଁ, କେବଳ ଲକ୍ଷ୍ମଣ ଓ ସୀତା ଆମ୍ଭ ସଙ୍ଗେ ଯିବେ, ଅନ୍ୟ କୌଣସି ଦ୍ରବ୍ୟରେ ପ୍ରୟୋଜନ ନାହିଁ । କେକୟୀ ରାଣୀ ପୂର୍ବରୁ ବଲ୍କଲ ପ୍ରସ୍ତୁତ କରି ରଖିଥିଲେ, ରାମ ବଲ୍କଲର ନାମ କହିବାମାତ୍ର ସେ ସେହି ବଲ୍କଲ ଆଣାଇ ଦେଲେ । ତାହା ଦେଖି ରାଜା ଦଶରଥ ଓ ତାଙ୍କ ସାତ ଶତ ରାଣୀ ରୋଦନ କଲେ; ଏବଂ କେକୟୀଙ୍କୁ ସମସ୍ତେ ଏହି କଥା କହି ଭର୍ତ୍ସନା କଲେ ଯେ ପିତୃ ସତ୍ୟ ପାଳିବା ଲାଗି କେବଳ ରାମ ବନକୁ ଯିବେ, ଲକ୍ଷ୍ମଣ ଓ ସୀତାଙ୍କୁ କି ନିମନ୍ତେ ବନ ପ୍ରେରଣ କର । ଅପର ରାମ ଓ ଲକ୍ଷ୍ମଣ ବଲ୍କଲ ପରିଧାନ କଲେ, ମାତ୍ର ସୀତା ତାହା କିରୂପେ ପରିଧାନ କରିବେ, ସମସ୍ତଙ୍କର ଏହି କଥା ମହା ଭାବନା ହେଲା । ପରେ ସଭାସଦ ଓ ମନ୍ତ୍ରିଗଣ ଏହି ବିଧାନ କଲେ କି ସୀତାଙ୍କର ବଲ୍କଲ ପରିଧାନର ପ୍ରୟୋଜନ ନାହିଁ ସେ ବସନ ଓ ଅଳଙ୍କାରାଦି ପରିଧାନ କରିବେ ।

—:*:*:*:—

## ଜାଇଫଳୀ ଓ ଜାଇଫଳ ବିଷୟ ।

ଭାରତ ସମୁଦ୍ରର ପୂର୍ବ-ପାର୍ଶ୍ୱରେ ଅନେକ ଗୁଡ଼ାଏ ଦ୍ୱୀପ ଏକତ୍ର ଅଛି; ତାହା "ଭାରତ ସମୁଦ୍ରୀସ୍ଥ-ଦ୍ୱୀପବ୍ୟୂହ" ନାମରେ ପ୍ରସିଦ୍ଧ ଅଟେ । ଉକ୍ତ ଦ୍ୱୀପ ବ୍ୟୂହରେ ଯେଉଁ ସକଳ ପଦାର୍ଥ ଉତ୍ପନ୍ନ ହୁଏ, ତନ୍ମଧ୍ୟରେ ଅଳାଇଚ, ଲବଙ୍ଗ, ଜାଇଫଳ, ଜାଇଫଳୀ, କର୍ପୂରାଦି ମସଲା ପ୍ରଧାନ ; ବାସ୍ତବ ସେଇ ସକଳ ଦ୍ୱୀପ ମସଲାର ଆକର, ଏବଂ ସେହେତୁରୁ ଅନେକ ଲୋକେ ତହିଁମଧ୍ୟରୁ କେତେ-ଗୁଡ଼ିକର ନାମ "ମସଲା ଦ୍ୱୀପ" ଦେଇଅଛନ୍ତି । ଜାଇଫଳ ଓ ଜାଇଫଳୀ ଏହି ଦ୍ୱୀପ ଗୁଡ଼ିକ ଅନ୍ୟଠାରେ ଜନ୍ମେ ନାହିଁ । ଏହି ସକଳ ଦ୍ୱୀପର ପ୍ରାକୃତଧର୍ମ ଯେ ପ୍ରକାର, ତଦନୁରୂପ ପ୍ରାକୃତ-ଧର୍ମବିଶିଷ୍ଟ ଅନ୍ୟ ଦ୍ୱୀପରେ ଅନେକ ଲୋକେ ଏହି

ପଦାର୍ଥର ଚାଷ କରିଅଛନ୍ତି, କିନ୍ତୁ କେହିସୁଦ୍ଧା କୃତକାର୍ଯ୍ୟ ହୋଇ ନାହାନ୍ତି । ଲଙ୍କା ଦ୍ୱୀପରେ ଏହି ପଦାର୍ଥର ଦୁଇ ଏକଟା ଗଛ ଅଛି, ମାତ୍ର ତାହା ଉତ୍ତମ ତେଜସ୍ୱୀ ନୁହେଁ ।

ଜାଇଫଳ ଗଛ ଦେଖିବାକୁ ଗୁଆ ଗଛ ସମାନ ; ବଲା-ଦ୍ୱୀପରେ ଏ ଗଛ ୩୦ । ୩୫ ହାତ ଉଚ୍ଚ ହୁଏ, କିନ୍ତୁ ସିଙ୍ଗାପୁର-ପ୍ରଦେଶରେ ତାହା ୧୫ । ୨୦ ହାତରୁ ଅଧିକ ଉଚ୍ଚ ଦେଖାଯାଏ ନାହିଁ । ଯେଉଁ ସ୍ଥାନରେ ଗ୍ରୀଷ୍ମ ଅଧିକ ପୁଣି ଅଧିକ ଝଡ଼ ବୃଷ୍ଟି ନ ଲଗେ, ସେହିଠାରେ ଏହି ବୃକ୍ଷ ଉତ୍ତମରୂପେ ଜନ୍ମେ । ଏ ବୃକ୍ଷର ଏକ ପ୍ରଧାନ ଲକ୍ଷଣ ଏହି କି, ସେଥିମଧ୍ୟରୁ କେତେଗୁଡ଼ିକରେ ସ୍ତ୍ରୀ ପୁଷ୍ପ, ଓ ଆଉ କେତେଗୁଡ଼ିକରେ ପୁଂପୁଷ୍ପ ଜନ୍ମ ହୁଏ ; ଅଥଚ କେବେ ୨ ଦୁଇ ପ୍ରକାର ପୁଷ୍ପ ଏକା ବୃକ୍ଷରେ ଜନ୍ମେ ; ମାତ୍ର ସେ ବୃକ୍ଷରେ ଅଧିକ ଫଳ ଉତ୍ପନ୍ନ ହୁଏ ନାହିଁ ।

ଜାଇଫଳର ଚାଷ ଅତି ଲାଭଜନକ । ଏକ ବିଘା ଭୂମିରେ ୭୦ ଗୋଟା ବୃକ୍ଷ ଲଗି ପାରେ, ତହିଁର ପ୍ରତିବୃକ୍ଷରେ ବର୍ଷକେ ୫ ୧୦ । ୧୨ ଙ୍କା ମୂଲ୍ୟର ଜାଇଫଳ ଜାଇଫୀ ଉତ୍ପନ୍ନ ହୁଏ; ସୁତରାଂ ପ୍ରତି ବିଘାରେ ୫ ୭୦୦ । ୮୦୦ ଙ୍କା ମିଳେ । ଅନ୍ୟ କୌଣସି ଚାଷ ଇହା ସମାନ ଲାଭଦାୟକ ବୋଧ ହୁଏ ନାହିଁ । ନାରିକେଳ ପରି ଜାଇଫଳ-ବୃକ୍ଷରେ ବାର ମାସ ଫଳଫୁଲ ହୁଏ ; ଅତଏବ ତଦ୍ୱାରା ଏକାବେଳକେ ସମସ୍ତ ଫସଲ ନଷ୍ଟ ହେବାର ସମ୍ଭାବନା ମଧ୍ୟ ନାହିଁ । କେବଳ ଏହି ଲାଭ ଭୋଗ କରିବା ନିମନ୍ତେ ଅନେକ ସହିଷ୍ଣୁତା ଗୁଣ ଥିବା ଅତ୍ୟନ୍ତ ପ୍ରୟୋଜନୀୟ, ତାହା ନ ଥିଲେ ଜାଇଫଳ ଚାଷର ସମସ୍ତ ପରିଶ୍ରମ ବ୍ୟର୍ଥ ହୁଏ । ପନ୍ଦର ବର୍ଷ କାଳ କ୍ରମାଗତ ଅପର୍ଯ୍ୟାପ୍ତ ପରିଶ୍ରମରେ ଏହି ବୃକ୍ଷର ପାଳନ କରିବାକୁ ହୁଏ ; ସେ କାଳ ମଧ୍ୟରେ ଝଡ଼, ବୃଷ୍ଟି, ଉଇ, ପୋକ ପ୍ରଭୃତି ଅନେକ ଆପଦରୁ ଏହି ବୃକ୍ଷର ରକ୍ଷା ନ କଲେ ପ୍ରାଗୁକ୍ତ ଲାଭ ଭୋଗ ହୋଇ ନ ପାରେ । ଉଇ ପୋକ ନିବାରଣ ନିମନ୍ତେ ଉକ୍ତ ଦ୍ୱୀପ ନିବାସିମାନେ ଶୂକର ବିଷ୍ଠା ଜଳରେ ଗୋଳି ବୃକ୍ଷମୂଳରେ ସେଚନ କରନ୍ତି, ଏବଂ କହନ୍ତି ଯେ ତହିଁରେ ସବୁ ଉଇ ପୋକ ଏକାବେଳକେ ବିନଷ୍ଟ ହୁଅନ୍ତି । ଏତଦ୍ଦେଶୀୟ ଇକ୍ଷୁ-କ୍ଷେତ୍ରର ପରମଶତ୍ରୁ ଉଇପୋକ ; ସେ ଉଇପୋକ ଅନେକ କୃଷିର ସର୍ବସ୍ୱ ନଷ୍ଟ କରି ଦିଅନ୍ତି ; ଶୂକର-ବିଷ୍ଠାରେ ଯଦ୍ୟପି ତହିଁର ପ୍ରତୀକାର ହୁଏ, ତେବେ ଅବଶ୍ୟ ପରୀକ୍ଷା କରିବା କର୍ତ୍ତବ୍ୟ ।

କଥିତ ଅଛି କି, ପ୍ରସ୍ତାବିତ ବୃକ୍ଷର ଫଳ ବାର ମାସ ଜନ୍ମେ ; ତାହା ଦେଖିବାକୁ ଗବଫଳ ପ୍ରାୟ ; ପୁଣି ତାହା କାଟିଲେ ତହିଁ ମଧ୍ୟରୁ ଯେଉଁ ବୀଜ ବାହାରେ ତାହା ଜାଇଫଳ * ନାମରେ ପ୍ରସିଦ୍ଧ ଏବଂ ସେ ବୀଜସୁଦ୍ଧା ଉଦାବରଣକାରି ଶସ୍ୟ ମଧ୍ୟରେ ଯେଉଁ ପଦାର୍ଥ ଥାଏ ତାହା ନାମ ଜାଇଫୀ । ସେ ଦୁଇ ପଦାର୍ଥକୁ ଶୁଖାଇଲେ ବାଣିଜ୍ୟର ଉପଯୁକ୍ତ ହୁଏ ।

---

# ସମାଚାର ପତ୍ରିକା

ସନ୍ତାଲମାନଙ୍କ ଇସ୍ତିହାର ।

ସନ୍ତାଲମାନେ ସୁଜାଗ୍ରାମପୁରସ୍ଥ ଜି ଗ୍ରାଣ୍ଟ ସାହେବଙ୍କ କୋଠୀକୁ ଏବଂ ଭାଗଲପୁର ଅଦାଲତକୁ ଯେଉଁ ଦୁଇ ପତ୍ରଆନା ଚିଠୀ ପଠାଇ ଅଛନ୍ତି ତଳେ ସେଥିର ଅନୁବାଦ ଗ୍ରହଣ କରାଗଲା ।

୧ । "ଶିବଶାହ ଭଗତସୁବାଙ୍କ ଆଜ୍ଞାନୁସାରେ ସୁଜାଗ୍ରାମପୁରର କୋଠୀଉଆଲା ଗ୍ରାଣ୍ଟ ସାହେବଙ୍କ ଉପରେ ।"

ସମ୍ବାଦ, ଏହି ଆଜ୍ଞା ପ୍ରାପ୍ତ ହେଲବାଦ ତୁମ୍ଭେ ଆପଣା ଦ୍ରବ୍ୟାଦି ନେଇ କୋଠୀତ୍ୟାଗ କରିବ, ଯେବେ ତୁମ୍ଭେ ପ୍ରତିବାଦ କିମ୍ବା କୌଣସି ଓଜର କରିବ ତାହା ଶୁଣା ଯିବ ନାହିଂ ଅତଏବ ଏତଦ୍ୱାରା ସମ୍ବାଦ ଦିଆ ଯାଉଅଛି ଯେ ବୁଧବାର ଦିନ ଆମ୍ଭ ସେନାପତିମାନେ ତୁମ୍ଭ କୋଠୀରେ ଉପସ୍ଥିତ ହେବେ, କୌଣସି ରୟତଙ୍କ ହାନି ହେବ ନାହିଂ,ବରଞ୍ଚ ସେମାନଙ୍କ ରକ୍ଷା କରାଯିବ, ୧୨୬୩ ସାଲ ପୌଷ ମାସ ୩୦ ଦିନ ।

୨ । ଦ୍ୱିତୀୟ ପତ୍ରଆନା କମିଶନର, ଜଜ, ମାଜିଷ୍ଟ୍ରେଟ, କଲେକ୍ଟର ସାହେବ ପ୍ରଭୃତି ଗବର୍ଣ୍ଣମେଣ୍ଟର ଚାକ୍ରିତ ଚାକରଙ୍କ ଉପରେ ।

---

* ସଂସ୍କୃତଭାଷାରେ ଏହି ପଦାର୍ଥର ଅନେକ ନାମ ଅଛି, ଯଥା ଜାତୀଫଳ, ଜାତିଫଳ, ଜାତିପୁଷ୍ପସାର, ରାଜଭୋଗ୍ୟ, ଜାତୀକୋଶ, ଜାତିକୋଷ ।

"ଶିବଶାହ୍ଵ ଭଗତ ସୁବା ସମ୍ଭାବତ ରାଜାଙ୍କ ହୁକୁମ ।"

ରାମଜୀଓଲାଲ ଦେଶ ଜୟ କରିଅଛନ୍ତି ସେହି କାରଣ ଆମ୍ଭେ ଲେଖୁଅଛୁ, ତୁମ୍ଭେ ଆମ୍ଭଙ୍କୁ ଜଣାଇବ କି ଜଜ ମାଜିଷ୍ଟ୍ରେଟ ଓ କଲେକ୍ଟରମାନେ ଯୁଦ୍ଧ କରିଣେ ମାନସ କରିଅଛନ୍ତି କି ନାହିଁ ? ଯେବେ ଆମ୍ଭମାନଙ୍କ ସୁବାମାନେ ଚଢ଼ାଇ କରିବେ ତେବେ ରୟତମାନଙ୍କର କ୍ଷତି ହେବ ଏବଂ ଯେବେ ଇଙ୍ଗରେଜ ସେନାମାନେ ଆସିବେ ତଥାପି ରୟତମାନେ କ୍ଲେଶ ପାଇବେ, ଅତଏବ ଇହା ଯୁକ୍ତିସିଦ୍ଧ ଯେ କେବଳ କଣୋରାୟା ସୁବାଙ୍କ ସଙ୍ଗେ ଇଙ୍ଗରେଜମାନେ ଯୁଦ୍ଧ କରନ୍ତୁ, ତାହାହେଲେ ରଏତମାନଙ୍କର କୌଣସି ହାନି ହେବ ନାହିଁ ଏହି ପରୁଆନାର ମର୍ମ ତାକ ଦ୍ଵାରା ଉକ୍ତ ସକଳଲୋକଙ୍କୁ ଜ୍ଞାତ କରାଇବ ଯେଉଂମାନଙ୍କ ଲାଗି ଇହା ଲେଖା ହେଲା" ।

"ଶିରସ୍ତାଦାରଙ୍କୁ ଲେଖା ଯାଇଅଛି ।"

---

"୧୨୭୩ ସାଲ ପୌଷ ପୌର୍ଣ୍ଣମୀ ୨୯ ଦିନ ସୋମବାର ।"

ଏହି ପରୁଆନା ପଢ଼ି ପାଠକ ବର୍ଗ ବନ୍ୟ ସନ୍ତାଲମାନଙ୍କର ସାହାସ ବିବେଚନା କରନ୍ତୁ, ସେମାନେ ଏଥର ପ୍ରଜା ନାଶ ଦେଶ ଲୁଣ୍ଠନ ନ କରି ଏପ୍ରକାର ପ୍ରଜା ରକ୍ଷାର ପ୍ରତଜ୍ଞା କରୁଅଛନ୍ତି, ଏଥିର ଅବଶ୍ୟ କୌଣସି କାରଣ ଥାଇ ପାରେ, ବୋଧହୁଏ କୌଣସି ବିଜ୍ଞ ଲୋକେ ସେମାନଙ୍କୁ ପରାମର୍ଶ ଦେଇଥିବେ ପ୍ରଜାଙ୍କୁ ହସ୍ତଗତ କଲାରୁ ଅନାୟାସରେ ସେମାନଙ୍କର ମଙ୍ଗଳ ହୋଇ ପାରିବ, ଯାହାହେଉ, ଏଥିର ବୃତ୍ତାନ୍ତ ବୋଧ ହେଉ ନାହିଁ, ଆମ୍ଭମାନଙ୍କର ବୋଧ ଥିଲା ବର୍ଷା ଶେଷ ହେଲେ ସନ୍ତାଲମାନେ ନାନା ପର୍ବତକୁ ପଳାଇ ଯିବେ, ଗବର୍ଣ୍ଣମେଣ୍ଟ ସେନାଙ୍କ ଭୟରେ ଆଉ ପ୍ରକାଶ ହୋଇ ସାହାସୀ ହେବେ ନାହିଁ, ମାତ୍ର ଯେତେବେଳେ ଥରେ ତାଡ଼ିତ ହୋଇ ପୁନରାୟ ଶୀତକାଳରେ ଅରଣ୍ୟରୁ ବହୁ ସଂଖ୍ୟା ବହିର୍ଗତ ହେଉଅଛନ୍ତି ଏବଂ ସାହସପୂର୍ବକ ଗବର୍ଣ୍ଣମେଣ୍ଟଙ୍କ ଉପରେ ଏପ୍ରକାର ପରୁଆନା ଜାରି କରୁଅଛନ୍ତି ତେତେବେଳେ ଅନୁମାନ ହେଉଅଛି କମାନ ବାହାଦୁରଙ୍କୁ ବିଶେଷ କ୍ଳେଶ ନଦେଇ କ୍ଷାନ୍ତ ହେବେ ନାହିଁ, ଲେପ୍‌ଟେନେଣ୍ଟ ମହାଶୟ ସନ୍ତାଲମାନଙ୍କୁ ପୂର୍ବବତ୍ ସ୍ନେହ କରନ୍ତି ଦେଖାଯାଉ ଯେବେ ସେ ସେମାନଙ୍କ ମସ୍ତକରେ ପଦ୍ମହସ୍ତ ବୁଲାଇ ବଶୀଭୂତ କରି ପାରନ୍ତି ।

---

ପାଠକ ବର୍ଗଙ୍କର ସ୍ମରଣ ରହିବ ଏଥି ପୂର୍ବରେ କୁତ୍ସିତ ଛବି ଓ ଶୃଙ୍ଗାର ରସ ଘଟିତ ପୁସ୍ତକ ପ୍ରକାଶ ଓ ପ୍ରକାଶ୍ୟ ସ୍ଥାନରେ ବିକ୍ରୟ କରିବା ଏବଂ ସରକାରୀ ରାସ୍ତାରେ ବା ଅନ୍ୟ କୌଣସି ସାଧାରଣ ସ୍ଥାନରେ କୁତ୍ସିତ ପ୍ରତିମୂର୍ତ୍ତି ବାହାର ଓ କଦର୍ଯ୍ୟ ଗାନ କରିବା ନିବାରଣ ପକ୍ଷରେ ଏକ ନୂତନ ଆଇନର ମୁସାବିଦା ପ୍ରକାଶ ହୋଇଥିଲା ବର୍ତ୍ତମାନ ଉକ୍ତ ମୁସାବିଦାରେ ନମ୍ବର ଦିଆ ଯାଇ ଗତ ଜାନୁଏରି ମାସ ୩୦ ତାରିଖର କଲିକତା ଗେଜେଟରେ ଆଇନ ସ୍ୱରୂପେ ପ୍ରକାଶ ପାଇଅଛି ।

---

ବାବୁ ରାଧାମାଧବ ଦତ୍ତଙ୍କୁ ଯେଉଁମାନେ ହତ୍ୟା କରିଅଛନ୍ତି ହୁଗୁଲୀର ଶ୍ରୀଯୁକ୍ତ ମାଜିଷ୍ଟ୍ରେଟ ମହାଶୟ ମନୋଯୋଗ ପୂର୍ବକ ଚେଷ୍ଟିତ ହୋଇଅଛନ୍ତି ସେମାନଙ୍କୁ ଧୃତ କରିବେ, ସେ ପୂର୍ବରେ ୫୦୦ ଟଙ୍କା ପାରିତୋଷିକର ଏକ ବିଜ୍ଞାପନ ପ୍ରେରଣ କରିଥିଲେ ଭାସ୍କରାଦି ସମାଚାର ପତ୍ରରେ ତାହା ପ୍ରକାଶ ହୋଇଅଛି ମାତ୍ର ତଦ୍ଦ୍ୱାରେ କୌଣସି ଉପକାର ଦେଖା ଗଲା ନାହିଁ, ପୁନର୍ବାର ପାଞ୍ଚ ସହସ୍ର ଟଙ୍କା ପାରିତୋଷିକର ଆଉ ଖଣ୍ଡେ ବିଜ୍ଞାପନ ପଠାଇ ଅଛନ୍ତି ପାଠକ ମହାଶୟମାନେ ଆଜିହିଁ ଭାସ୍କରରେ ତାହା ଦେଖିବେ ଉକ୍ତ ମାଜିଷ୍ଟ୍ରେଟ ମହାଶୟ ପାଞ୍ଚ ସହସ୍ର ଟଙ୍କା ପାରିତୋଷିକ ଦାନରେ ସ୍ୱୀକୃତ ହେଲେ ଏବଂ ବାବୁ ଗୁରୁଦାସ ଦତ୍ତ ଦୁଇ ସହସ୍ର ଟଙ୍କା ପାରିତୋଷିକର ବିଜ୍ଞାପନ ଦେଇ-ଅଛନ୍ତି ଏଥିରେ ସର୍ବସୁଦ୍ଧା ସାତ ସହସ୍ର ଟଙ୍କା ପାରିତୋଷିକର ଅଙ୍ଗୀକାର ପତ୍ର ପ୍ରଚାର ହେଲା ଏବଂ ଆମ୍ଭେମାନେ ଶ୍ରୀଯୁକ୍ତ ବାବୁ ଗୁରୁଦାସ ଦତ୍ତଙ୍କ ଅଭିପ୍ରାୟ ଜାଣି କହୁଅଛୁଁ ଉକ୍ତ ବାବୁ ଆହୁରି ତିନି ସହସ୍ର ଟଙ୍କା ଦେବେ ଯେଉଁ ବ୍ୟକ୍ତି ଦୋଷିଗଣଙ୍କ ଅନୁସନ୍ଧାନ ବୋଲି ଧୃତ କରାଇ ପାରିବେ ତାହା ପକ୍ଷରେ ଦଶ ସହସ୍ର ଟଙ୍କା ପାରିତୋଷିକ ଅଳ୍ପ ପାରିତୋଷିକ ନୁହେ ଏଥିରେ ଜଣେ ମନୁଷ୍ୟ ଧନୀ ହୋଇ ସ୍ୱଚ୍ଛନ୍ଦରେ ଜୀବନ କଟାଇ ପାରେ, ବିଶେଷତଃ ଉକ୍ତ ଗୋଇନ୍ଦା ଯେବେ ହନନ୍ତ୍ରାସଂସ୍ରବରେ ଥାଏ ତଥାପି ଗବର୍ଣ୍ଣମେଣ୍ଟ ସେଥିରେ ଦଣ୍ଡ କରିବେ ନାହିଁ, ଯଥାର୍ଥରୂପେ ସମସ୍ତ ପ୍ରକାଶ କଲାରୁ ତାକୁ ଖଲାସ ଦେବେ ଅତଏବ ଯେଉଁମାନେ ଏହି ବିଷୟର ଅନୁସନ୍ଧାନ ଜାଣନ୍ତି ସେମାନେ ପ୍ରସ୍ତୁତ ହୋଇ ସମସ୍ତ ବିଷୟ କହି ଦଶ ସହସ୍ର ଟଙ୍କା ଗ୍ରହଣ କରନ୍ତୁ ଏବଂ ଗବର୍ଣ୍ଣ-ମେଣ୍ଟଙ୍କ ଲଜ୍ଜା ନିବାରଣ କରି ସେମାନଙ୍କ ସମୀପରେ ପ୍ରତିପନ୍ନ ହେଉନ୍ତୁ ସେମାନେ ଯେବେ ଉପଯୁକ୍ତ ହେବେ ତେବେ ଡେପୁଟୀ ମାଜିଷ୍ଟ୍ରେଟୀ,

ଡେପୁଟୀ କଲେକ୍ଟରୀ, ମୁନ୍ସଫୀ, ସଦର ଅମୀନୀ, ପ୍ରଧାନ ସଦର ଅମୀନୀ ଇତ୍ୟାଦି ଯେଉଁ କର୍ମ ସୃଷ୍ଟିହେବ ଗବର୍ଣ୍ଣମେଣ୍ଟ ସେମାନଙ୍କୁ ତାହାସୁଦ୍ଧା ଦେବେ, ଏଥିରେ ଯେବେ ଏପ୍ରକାର ସନ୍ଦେହ କରିବେ ଏ ସକଳ କର୍ମ ବିଧିବଦ୍ଧ ହୋଇଅଛି ଗବର୍ଣ୍ଣମେଣ୍ଟ ବିଧି ଭଙ୍ଗ କିପ୍ରକାରେ ଚଳିବେ ? ଇହାର ଉତ୍ତର ଏହି କି "ଏହି ସକଳ କର୍ମର ବିଧାନ ମଧ୍ୟରେ ଲେଖା ଅଛି ପରୀକ୍ଷାଦିର ଅପେକ୍ଷା ନ ହୋଇ ଶ୍ରୀ ଶ୍ରୀଯୁକ୍ତ ଗବର୍ଣ୍ଣର ଜେନରଲ ବାହାଦୁର ମନକଲେ ଜଣେ ମଜୁରି ଲୋକକୁସୁଦ୍ଧା ପ୍ରଧାନ ସଦର ଅମୀନ କରି ପାରିବେ" ଅତଏବ ଗୋଏନ୍ଦାମାନଙ୍କର କୌଣସି ସନ୍ଦେହର ବିଷୟ ନାହିଁ ।

---

ଶ୍ରୀଯୁତ ଗବର୍ଣ୍ଣ ଜେନରଲ ବାହାଦୁର ଶାରୀରିକ ଅସ୍ୱାସ୍ଥ୍ୟ ହେତୁରୁ ଗତ ଶୁକ୍ରବାର କୌନସଲରେ ଉପବିଷ୍ଟ ହୋଇ ପାରି ନାହାନ୍ତି, କାପ୍ତାନ ବୌଇ ସାହେବ କୌନସଲର କାଗଜାଦି ନେଇ ବାରାକ ପୁରକୁ ଯାଇଅଛନ୍ତି ଲର୍ଡ ବାହାଦୁର ସେଠାରେ ଅବସ୍ଥିତ କରିଅଛନ୍ତି, ନୂତନ ଗବର୍ଣ୍ଣର ଜେନରଲ ଶ୍ରୀଯୁକ୍ତ ଲର୍ଡ କେନିଂ ବାହାଦୁର ବୋମ୍ବାଇ ନଗରରେ ଉପନୀତ ହୋଇଅଛନ୍ତି, ଫେବୃଏରି ମାସ ଶେଷରେ କଲିକତାକୁ ଆସି ପାରନ୍ତି ।

---

ଏଥି ମଧ୍ୟରେ ଶୁଣାଯାଉ ଥିଲା ଶ୍ରୀହଟ୍ଟ ଜିଲା ମଧ୍ୟରେ ଚା ଉତ୍ପନ୍ନ ହେବ ବୋଲି ଆରମ୍ଭ ହୋଇଅଛି ବର୍ତ୍ତମାନ ଜଣା ଗଲା କି ଉକ୍ତ ଜିଲାର ଉତ୍ତର ପଶ୍ଚିମାଂଶେର ଅନେକ ଚା ବୃକ୍ଷ ଜନ୍ମୁଅଛି, ମଣିପୁରରେ ଉତ୍ପନ୍ନ ଚା କଲିକତାକୁ ଅଣା ଯାଉଅଛି ଏବଂ ଅନେକ ଲୋକେ ତାହା ଗ୍ରାହ୍ୟ କରି ଅଛନ୍ତି, ବୋଧହୁଏ ଶ୍ରୀହଟ୍ଟୋତ୍ପନ୍ନ ଚା ସୁଦ୍ଧା ତଦ୍ରୂପ ଉତ୍ତମ ବ୍ୟବହାର୍ଯ୍ୟ ହୋଇପାରେ ।

---

ଡକାଇତି

ଇଂଲିସମ୍ୟାନ ପତ୍ରରେ ଜଣାଗଲା ଡାଏମଣ୍ଡ ହାରବର ନିକଟରେ ପୋଲିଏ ଆନାର ପାଦ କୋଶ ବ୍ୟବଧାନରେ ଗୋବିନ୍ଦପୁର ଗ୍ରାମରେ ଗୁରୁଦାସ ପୋଦ୍ଦାର ଘରେ ଗତ ଜାନୁଏରି ମାସ ୧୧ ତାରିଖ ରାତ୍ରରେ ଗୋଟାଏ

ଭସ୍ଥାନର ଡକାଇତି ହୁଏ, ଡକାଇତମାନେ ଗୃହସ୍ୱାମୀଙ୍କ ଗୁରୁତର ପ୍ରହାର ପ୍ରଦାନ ପୂର୍ବକ ଅନ୍ୟୂନ ୭୦୦୦ ଟଙ୍କାର ଦ୍ରବ୍ୟାଦ ଅପହରଣ କଲେ, ଜିଲ୍ଲା ଚବ୍ଵିଶ ପରଗଣାର ମାଜିଷ୍ଟ୍ରେଟ ସାହେବ ଡକାଇତଙ୍କୁ ଧରିବା ଲାଗି ୫୦୦ ଟଙ୍କା ପୁରସ୍କାର ପ୍ରଦାନର ଇସ୍ତିହାର ଦେଇଥିଲେ ସେଥିରେ ସ୍ଥାନୀୟ ପୋଲିସ ଆମଲମାନଙ୍କ ସନ୍ଧାନରେ ଡକାଇତଙ୍କ ଭିତରୁ ଜଣେ ସୁଦ୍ଧା ଧରା ଗଲା ନାହିଁ ତଦାଦ ମାଜିଷ୍ଟ୍ରେଟ ସାହେବ ଛଟାଲୀ ଥାନାର ଉପଯୁକ୍ତ ଦାରୋଗା ବାବୁ ହେମଚନ୍ଦ୍ର କରଙ୍କୁ ଦସ୍ୟୁ ଧୃତ କରିବା ସକାଶେ ଗୋବିନ୍ଦପୁରକୁ ପ୍ରେରଣ କଲେ କର ବାବୁ ବହୁତର କ୍ଳେଶରେ ଉକ୍ତ ଦସ୍ୟୁଦଳ ମଧ୍ୟରୁ ୧୮ ଜଣକୁ ଧରି ଅଛନ୍ତି ଏବଂ ହୃତ ବସ୍ତୁରସୁଦ୍ଧା କିୟଦଂଶ ପୁନର୍ବାର ପ୍ରାପ୍ତ ହୋଇ ଅଛନ୍ତି, ଯେଉଁ ସକଳ ଡକାଇତମାନେ ଧରାହୋଇ ଅଛନ୍ତି ସେମାନଙ୍କ ମଧ୍ୟରେ ଅନେକ ଦାଗୀ ଚୋର ଅଛନ୍ତି ଅର୍ଥାତ୍ ପୂର୍ବରେ ଯେଉଁମାନେ ଅନେକ ଥର ଚୋରି ଡକାଇତି ମକଦ୍ଦମାରେ ଦଣ୍ଡ ପାଇଥିଲେ, ବର୍ତ୍ତମାନ ଶେସନ ଜଜ ସାହେବ ସେମାନଙ୍କ ପ୍ରତି କି ଦଣ୍ଡ ବିଧାନ କରିବେ ଦେଖାଯିବ ।

ଆମ୍ଭେମାନେ ଚବ୍ବିଶପରଗଣାର ମାଜିଷ୍ଟ୍ରେଟ ସାହେବଙ୍କୁ ଅନୁରୋଧ କରୁଂ, ସେ ପ୍ରଶଂସିତ କର ବାବୁଙ୍କୁ ଉଚ୍ଚପଦ ପ୍ରଦାନ କରନ୍ତୁ, ଗୁଣର ଯଥାର୍ଥ ପୁରସ୍କାର ହେଲେ ଅନେକ ଲୋକେ ଉତ୍ସାହ ପାଇ ବିଶେଷ ପରିଶ୍ରମ ସହିତ ନିରପେକ୍ଷ ଭାବରେ ସରକାରୀ କାର୍ଯ୍ୟ ନିର୍ବାହ କରିବେ ଏହି କର ଦାରୋଗାଙ୍କ ସୁସନ୍ଧାନରେ କେତେକ ଥର ପ୍ରବଳ ଦସ୍ୟୁଦଳ ଧୃତ ହେବାରେ ଦେଶୋପଦ୍ରବ ଅନେକ ଯାଇଅଛି ।

ବିଲାତୀୟ ସମାଚାର ।

"ହୋମ ନିଉସ" ପତ୍ରରେ ବ୍ୟକ୍ତ ହୁଏ କାର୍ସ ନଗରବାସିମାନେ ଆହାରାଭାବରେ ଯତ୍ପରୋନାସ୍ତି କଷ୍ଟପାଇ ଅଗତ୍ୟା ଶତ୍ରୁ ହସ୍ତରେ ନଗର ସମର୍ପଣ କରିଅଛନ୍ତି, ବାସ୍ତବିକ ଋଷିମାନେ ବାହୁବଳରେ ତାହା ଅଧିକାର କରି ପାରନ୍ତି ନାହିଁ, ଋଷିସ୍ଥମାନଙ୍କ ପରାକ୍ରମରେ ଯେଉଁ କାର୍ଯ୍ୟ ସିଦ୍ଧ ହୁଏ ନାହିଁ ଦୁର୍ଭିକ୍ଷରେ ତାହା ସମାଧା ହେଲା, ନଗର ଛାଡ଼ିବା ମାସକ ପୂର୍ବରୁ ନଗରବାସିମାନଙ୍କ ବହୁତର ଦୁର୍ଗତି ହୋଇଥିଲା ତଥାପି ସେନାମାନେ ଅସୀମ ସାହସରେ ବୀରତ୍ୱ ପ୍ରକାଶ କରି ମାସେକ ମଧ୍ୟରେ ନଗର ରକ୍ଷା କରିଥିଲେ ଅବଶେଷରେ ପ୍ରତି-ସ୍ଥଳରେ ଖାଦ୍ୟଦ୍ରବ୍ୟ ସମୁଦାୟ ପର୍ଯ୍ୟବସିତ ହୋଇ ଗଲା କେତେବେଳେ ନଗରବାସିମାନଙ୍କର ଉପବାସ ବ୍ୟତୀତ ଗତ୍ୟନ୍ତର ରହିଲା ନାହିଁ, ଘୋଟକାଦ

ସକଳ ପଶୁ ଆହାର ନ ପାଇ ମରି ଗଲେ ଏହି ସବୁ ଦୁରବସ୍ଥା ଦେଖି ଜେନରଲ ଉଇଲେମସ ସାହେବ ସନ୍ଧିର ନିଶାନ ଉଠାଇ ଦେଲେ, ଏଥିର ଅବ୍ୟବହିତ ପୂର୍ବରେ ନବେମ୍ବର ମାସ ୧୦ ତାରିଖରେ ନଗରସ୍ଥ ସେନାମାନେ ମୃତବନ୍ତ ହୋଇ ରୁଷମାନଙ୍କ ଉପରେ ଚଢାଉ କରିଥିଲେ ମାତ୍ର ତାହା "ଛିନ୍ନ ମୁଣ୍ଡରେ ଭ୍ରୁକୁଟୀର ନ୍ୟାୟ" ନିଷ୍ଫଳ ଚେଷ୍ଟା ହେଲା, ମୁଷ୍ଟିପରିମିତ ନିରାହାରୀ ନିର୍ବୀର୍ଯ୍ୟ ହତାଶ ବାହିନୀ କେତେବେଳେ ସବଳ ଓ ଜୀବନ୍ତ ସେନାଗଣଙ୍କ ସଙ୍ଗେ ଯୁଦ୍ଧରେ ସ୍ଥିତ ହୋଇ ପାରନ୍ତି ? ବିଶେଷତଃ ରୁଷ ସେନାମାନେ ନଗରର ପାର୍ଶ୍ୱବର୍ତ୍ତୀ ସକଳ ଦେଶ ଓ ପଥ ରୁଦ୍ଧ କରିଥିଲେ ସେଥିରେ ସେନାମାନେ କୌଣସି ଆଡ଼େ ପଳାଇବାର ମାର୍ଗ ପାଇଲେ ନାହିଁ ଏବଂ ବିପକ୍ଷପକ୍ଷଙ୍କ ପ୍ରବଳାନଳ ସହ୍ୟ କରି ନ ପାରି କ୍ଷଣ ବିଳମ୍ବରେ ପୁନର୍ବାର ଶୂନ୍ୟ ନଗରରେ ପ୍ରବିଷ୍ଟ ହେଲେ, ଏହି ଚରମ ଚେଷ୍ଟାରେ ନିରୁତ୍ସୁକ ଓ ଭରସା ଶୂନ୍ୟ ହୋଇ ଜେନରଲ ଉଇଲେମସ ସାହେବ ଏହି ସମୟରେ ବିପକ୍ଷ ହସ୍ତରେ ନଗର ସମର୍ପଣ କରିବାକୁ ପ୍ରସ୍ତାବ ପଠାଇଲେ, ଯେବେ ରୁଷ ସେନାପତିମାନେ ତାଙ୍କୁ ଇରଜିରମ ନଗରକୁ ଯିବାକୁ କହିବେ ତେବେ ସେ ନଗର ତ୍ୟାଗ କରିବେ" ପ୍ରବଳପକ୍ଷ କୌଣସି କାଳରେ ହୀନ ବଳଙ୍କ ପ୍ରସ୍ତାବ ଗ୍ରହଣ କରନ୍ତି ନାହିଁ, ରୁଷ ଜେନରଲ ମିଉରାବିଫ ଏ ପ୍ରସ୍ତାବ ଅଗ୍ରାହ୍ୟ କଲେ, ଏରୂପେ ନିରୁପାୟ ହୋଇ ଜେନରଲ ଉଇଲ୍‌ଏମସ ସାହେବ ସସୈନ୍ୟ ବିପକ୍ଷ ହସ୍ତରେ ପ୍ରାଣ ସମର୍ପଣ କଲେ ଓ ରୁଷମାନେ ନଗରାଧିକାର କଲେ, ଏ ବିଷୟର ବିଶେଷ ବୃତ୍ତାନ୍ତ ଅଦ୍ୟାପି ସମସ୍ତ ପ୍ରକାଶ ହୋଇ ନାହିଁ, ଫଳତ ରୁଷ ସେନାଙ୍କ ଦ୍ୱାରା କାର୍ସ ନଗର ଅଧିକାର ହୋଇଅଛି ତାଙ୍କ ପକ୍ଷରେ କୌଣସି ସଂଶୟ ନାହିଁ ।

—⁂—

ଆମ୍ଭେମାନେ ଏହି କଥା ଶୁଣି ଆହ୍ଲାଦିତ ହେଲୁଁ, ରାମବାଗିସ୍ଥ ବାସି ନାମରେ ବିଖ୍ୟାତ ଦତ୍ତବଂଶୀୟ ବାବୁମାନେ ବିଧବା ବିବାହର ସପକ୍ଷ ହୋଇ-ଅଛନ୍ତି ଫେବୃଏରି ମାସ ୧ ତାରିଖରେ ବାବୁ କୈଳାସଚନ୍ଦ୍ର ଦତ୍ତ ବାବୁ ଗୋବିନ୍ଦଚନ୍ଦ୍ର ଦତ୍ତ ବାବୁ ଶଶିଚନ୍ଦ୍ର ଦତ୍ତ ବାବୁ ହରିଚନ୍ଦ୍ର ଦତ୍ତ ବାବୁ ଗିରୀଶଚନ୍ଦ୍ର ଦତ୍ତ ବାବୁ ହେମଚନ୍ଦ୍ର ଦତ୍ତ ବାବୁ ଉମେଶଚନ୍ଦ୍ର ଦତ୍ତ ବାବୁ ହରେକୃଷ୍ଣ ଦତ୍ତ ବାବୁ ପୀତାମ୍ବର ଦତ୍ତ ବାବୁ ଶ୍ୟାମାଚରଣ ଦତ୍ତ ବାବୁ ହେରମ୍ବଚନ୍ଦ୍ର ଦତ୍ତ ବାବୁ ଗୋପାଳକୃଷ୍ଣ ଦତ୍ତ ବାବୁ କେଦାରନାଥ ଦତ୍ତ ବାବୁ କୈଳାସଚନ୍ଦ୍ର ବସୁ ବାବୁ ଶ୍ୟାମାଚରଣ ଦାସ ବାବୁ ଯଦୁନାଥ ମୁଖୋପାଧ୍ୟାୟ ବାବୁ ରାଜେନ୍ଦ୍ରନାଥ ମିତ୍ର

ବାବୁ ଅଭୟାଚରଣ ବସୁ ବାବୁ ନୀଳମାଧବ ଦେ ବାବୁ ଠାକୁରଦାସ ଚକ୍ରବର୍ତ୍ତୀ ବାବୁ ନବୀନକୃଷ୍ଣ ଘୋଷ ବାବୁ ଶାରଦାପ୍ରସାଦ ବସୁ ଏବଂ ଅନ୍ୟାନ୍ୟ ଅନେକ ଲୋକଙ୍କର ସ୍ୱାକ୍ଷରିତ ଏକ ଆବେଦନ ପତ୍ର ବ୍ୟବସ୍ଥାପକ ସଭାରେ ଅର୍ପିତ ହୋଇ ଅଛୁ, ଆବେଦନକାରୀମାନେ ଏହି ଆବେଦନପତ୍ରରେ ଲେଖିଅଛନ୍ତି "ବିଧବା ବିବାହ ବିଷୟରେ ଆଇନ ପରିବର୍ତ୍ତି ଅର୍ଥାତ୍ ବିଧବା ବିବାହ ପ୍ରଚଳନ ପକ୍ଷରେ ବିଧାନ ପ୍ରକାଶ କରିବା ଯେ ଅତ୍ୟାବଶ୍ୟକ ଇହା ଆମ୍ଭମାନଙ୍କର ବିଲକ୍ଷଣ ହୃଦୟଙ୍ଗମ ଓ ପ୍ରତୀତ ହୋଇଅଛୁ ଏବଂ ଉକ୍ତ ବିଷୟର ଯେଉଁ ବିଲ ଅର୍ଥାତ୍ ଆଇନର ମୁସାବିଦା ବ୍ୟବସ୍ଥାପକ ସଭାରେ ଦୁଇବାର ପଢ଼ା ଯାଇଥିଲା ତଦ୍ଦୃଷ୍ଟିରେ ଆମ୍ଭେମାନେ ଯଥୋଚିତ ସନ୍ତୁଷ୍ଟ ହୋଇ କୃତଜ୍ଞ ଚିତ୍ତରେ ମାନ୍ୟତମ ବ୍ୟବସ୍ଥାପକ ସଭାଧ୍ୟକ୍ଷ ମହୋଦୟମାନଙ୍କୁ ଧନ୍ୟବାଦ ପ୍ରଦାନ କରୁଅଛୁଁ ମାତ୍ର ଏକ ବିଷୟରେ ଏହି ଆଇନ ପ୍ରଚୁର ହେଲେ ବାଦ ଭବିଷ୍ୟତରେ ବିଧବା ବିବାହ ସୂତ୍ରରେ ନାନା ପ୍ରକାର ଅନର୍ଥକ ମକଦ୍ଦମା ଘଟଣାର ଆଶଙ୍କା ଅଛୁ, ଉକ୍ତ ମୁସାବିଦାରେ ତାହା ନିବାରଣର କୌଣସି ଉପାୟ କଳ୍ପିତ ହୋଇ ନାହିଁ ଅତଏବ ଆମ୍ଭେମାନେ ପ୍ରାର୍ଥନା କରୁଅଛୁଁ ବିଧବା ବିବାହ ବିଷୟକ ସେଇ ସବୁ ବ୍ୟାଘାତ ନିବାରଣ ହେବା କାରଣ ଉକ୍ତ ପାଣ୍ଡୁଲିପିରେ ଆଉ ଏକ ଧାରା ସଂଯୋଗ ହେଉ ଯାହା ବିଧାନରେ ଗବର୍ଣ୍ଣମେଣ୍ଟର ପ୍ରତ୍ୟେକ ବିଧବା ବିବାହ ରେଜିଷ୍ଟ୍ରୀ କରିବା ଲାଗି କତିପୟ ରେଜିଷ୍ଟର ନିଯୁକ୍ତ ହୋଇ ପାରିବେ, ପ୍ରତ୍ୟେକ ବିଧବା ବିବାହ ଏପ୍ରକାର ରେଜିଷ୍ଟ୍ରୀ କରାଗଲେ ଆଗାମିରେ ଆଉ କୌଣସି ବିବାଦ ବିସମ୍ବାଦ ଉପସ୍ଥିତ ହେବ ନାହିଁ ।

——*——

## କୌଣସି ବନ୍ଧୁର ଲେଖିତ ଚିଠୀ

ମହାଶୟ, ଆମ୍ଭେ ଶ୍ରୀ କ୍ଷେତ୍ରରୁ ଆଗମନ କାଳୀନ ବାଲେଶ୍ୱରରେ ଉପସ୍ଥିତ ହେଲୁଁ, ତହିଁରେ ଦର୍ଶନ ଓ ଶ୍ରବଣ କଲୁଁ ପୀଡ଼ାରେ ସେଠାରେ ଲୋକେ ନିଷ୍ପୀଡ଼ିତ ହେଉ ଅଛନ୍ତି ସେଇ ସ୍ଥାନରେ କୌଣସି ଦାତବ୍ୟ ଚିକିତ୍ସାଳୟ ନ ଥିବାରୁ ଯାତ୍ରୀ ଏବଂ ପଥିକ ଓ ବାସିନ୍ଦା ଲୋକେ ସର୍ବଦା ମାରା ଯାଉଅଛନ୍ତି, ପୀଡ଼ିତ ଲୋକମାନେ ଔଷଧ ପଥ୍ୟ ପାନ୍ତି ନାହିଁ, ବାଲେଶ୍ୱରରେ ମିସନରିମାନେ ଏକ ଔଷଧାଳୟ କରିଅଛନ୍ତି ସେଥିରେ ତାଦୃଶ ଉପକାର ହୁଏ ନାହିଁ, ଗବର୍ଣ୍ଣମେଣ୍ଟ ଅନୁଗ୍ରହପୂର୍ବକ ଚିକିତ୍ସାଳୟ ପ୍ରତିଷ୍ଠା କରିବାରେ ଅନେକ ଦୂରରୁ ପୀଡ଼ିତ ଲୋକେ ଆସି ଆଶ୍ରୟ ପାଉଥିଲେ ଏବଂ

ଚକିତ୍ସାଗୃହ ପ୍ରସ୍ତୁତ ନୋହିବାରୁ ଦୁଃଖି ଦରିଦ୍ରମାନେ ଆସି ଔଷଧ କାରଣ ଆର୍ତ୍ତିନାଦ କରନ୍ତୁ ଏବଂ ପଥିକ ଓ ଯାତ୍ରିମାନଙ୍କ ଆଶ୍ରୟ ପାଇବାର ଉପାୟ ହୋଇଥିଲା ମାତ୍ର କୌଣସି ଅବ୍ୟକ୍ତ କାରଣରେ ବା ବିଶେଷ କାରଣରେ ହେଉ ଗବର୍ଣ୍ଣମେଣ୍ଟ ଚକିତ୍ସାଳୟର କାର୍ଯ୍ୟ ରହିତ କରି ହଠାତ୍ ଔଷଧ ପ୍ରଦାନର ଦ୍ୱାର ରୁଦ୍ଧ କଲେ ସେଥିରେ ପୂର୍ବରେ ଯେଉଁ ସକଳ ଦୁଃଖି ଦରିଦ୍ରମାନଙ୍କୁ ଔଷଧ ପ୍ରଦାନ କାରଣ ଡକା ଯାଉଥିଲା ଏତେବେଳେ ସେମାନଙ୍କୁ ବାହାର କରି ଦେବାକୁ ହେଉଅଛି ଏବଂ ନିରାଶ୍ରୟ ଲୋକେ ଯେଉଁମାନେ ଔଷଧ ପଥ୍ୟ ଆଶାରେ ବୃକ୍ଷ ମୂଳାବଲମ୍ବନ କରିଥିଲେ ସେମାନେ ପୁଣ୍ଡା ଦୂରୀକୃତ ହେଲେ, ଏବଂ ଗବର୍ଣ୍ଣମେଣ୍ଟଙ୍କ ଦାନର ଶବ୍ଦ ଯାହା ଚତୁର୍ଦ୍ଦିଗ ବ୍ୟାପକ ହୋଇଥିଲା ତାହା ଜଳରେଖାର ନ୍ୟାୟ ଲୁପ୍ତ ହୋଇ ଗଲା ଇହା କେବଳ ଉପହାସ ସ୍ଥଳ ହୋଇଅଛି, ଗବର୍ଣ୍ଣମେଣ୍ଟ ସର୍ବସାଧାରଣଙ୍କୁ ପ୍ରାଣଦାନର ଆଶା ଦେଇ କାହିଁକି ବଞ୍ଚିତ କଲେ ଭଗବାନ କହି ପାରନ୍ତି ।

କସ୍ୟଚତ୍ ପଥିକସ୍ୟ ।

ବିଲାତୀୟ ସମ୍ବାଦ ।

ବିଦ୍ୟୁତକ ବାର୍ତ୍ତାବହଦ୍ୱାରା ବମ୍ବାଇଠାରୁ ଯେଉଁ ବିଲାତୀୟ ସମାଗ୍ଭର ଆସିଅଛି ତାହା ଶୁଭବହ ବୋଲିବାକୁ ହେବ, ତହିଁରେ ମହା ସମର ଶେଷ ହୋଇ ସନ୍ଧିସ୍ଥାପନର ବିବରଣ ପ୍ରକାଶ ପାଉଅଛି, ଆମ୍ଭେମାନେ ପାଠକ ମହାଶମାନଙ୍କ ବିଜ୍ଞାପନ ନିମନ୍ତେ ତହିଁର ସାରାଂଶ ପଶ୍ଚାତ୍ ଲେଖୁଅଛୁଁ ।

ଅସ୍ତ୍ରୀସ୍ଥାନ ରାଜ ପ୍ରତିନିଧି ସନ୍ଧିପ୍ରସ୍ତାବ ଘେନ ରୁଷ ରାଜଧାନୀ ସେଣ୍ଟ ପିଟର୍ସବର୍ଗ ନଗରରେ ପ୍ରବେଶ ହୋଇ ଡିସେମ୍ବର ମାସ ୨୭ ତାରିଖରେ କୌଣ୍ଟନେସେଲରୋଡ଼ଙ୍କ ସହିତ ସାକ୍ଷାତ୍ କରିଅଛନ୍ତି, ଓ ଇଙ୍ଗରେଜ ଫ୍ରେଞ୍ଚ ଗବର୍ଣ୍ଣମେଣ୍ଟ ସେ ସନ୍ଧିରେ ସମ୍ମତ ହୋଇଅଛନ୍ତି ।

ଅସ୍ତ୍ରୀୟ ଦୂତ ରୁଷ ରାଜ୍ୟକୁ ଯାଇ ଅଛନ୍ତି ସତ୍ୟ ଏବଂ ଅସ୍ତ୍ରୀୟା ବାଦଶାହ ଏହି ମହାସମର ଭଙ୍ଗାର୍ଥେ ଉଦ୍ୟୋଗ କରୁଅଛନ୍ତି ଏକଥା ମଧ୍ୟ ସତ୍ୟ ତଥାଚ ସନ୍ଧି ସ୍ଥାପନ ପକ୍ଷରେ ଲୋକଙ୍କର ବିଶ୍ୱାସ ଜନ୍ମି ନାହିଁ, ସନ୍ଧି ହେବ ନାହିଁ ବୋଲି ଅନେକ ଲୋକ କହୁଅଛନ୍ତି, ରୁଷ ବାଦଶାହ ପ୍ରସ୍ତାବିତ ସନ୍ଧି ନିୟମର ବିପରୀତରେ କୃଷ୍ଣ ସମୁଦ୍ରରେ କେବଳ ରୁଷ ଓ ତୁରକ ଜାହାଜ ରହିବ ବୋଲି ଅଭିପ୍ରାୟ ବ୍ୟକ୍ତ କରୁଅଛନ୍ତି, ଏଥିଲାଗି ବାଦଶାହ ସମ୍ମତ କରି ଥିଲେ ।

ଜାନୁଏର ମାସ ୧୩ ତାରଖର ବାଏନା ପତ୍ରକେ ବ୍ୟକ୍ତ ହୁଏ କ ଋଷ-ବାଦଶାହ ଅଷ୍ଟ୍ରିୟା ବାଦଶାଙ୍କ ପ୍ରସ୍ତାବତ ସନ୍ଧି ନୟମ ଶ୍ରବଣରେ ସମ୍ମତ ହେଲାର୍ କୌଣ୍ଟକୌଲ ପ୍ରିନସ ଗର୍ଟ୍‌ଶକଫଙ୍କୁ ଜଣାଇଅଛନ୍ତ ଅଷ୍ଟ୍ରିୟାନ ଦୂତମାନେ ୧୮ ତାରଖରେ ପିଟସବର୍ଗ ନଗରକୁ ଆସିବେ ।

ପ୍ରିନସ ଗର୍ଟ୍‌ଶକଫ ବାଏନା ନଗରଠାରୁ ଗମନ କରବାର ଉଦ୍‌ଯୋଗ କରୁଅଛନ୍ତ ।

ଆମେରକାନ ଗବର୍ଣ୍ଣମେଣ୍ଟ ଦେଶଯାକରେ ଘୋଷଣା ଦେଇଅଛନ୍ତ "ଆମେରକା ଦେଶବାସି କେହୁ ଯେବେ ବଦେଶୀୟ ସମରର ସଙ୍ଗୀ ବା ସେନାଦଳ ଭୁକ୍ତ ହେବ ତେବେ ସେ ବ୍ୟକ୍ତ କଠିନ ଦଣ୍ଡାହ ହେବ ।"

ଡେନମାର୍କର ରଜା ଘୋଷଣା ଦ୍ୱାର୍ ଇଉରୋପର ସକଲ ରଜାମାନଙ୍କୁ ଜଣାଇଅଛନ୍ତ କ ସେ କୌଣସି ପକ୍ଷ ଗ୍ରହଣ କରବେ ନାହିଁ ।

ପତ୍ରାନ୍ତରେ ବ୍ୟକ୍ତ ହୁଏ ଯେ, ଋଷ ଗବର୍ଣ୍ଣମେଣ୍ଟ ସହତ ସନ୍ଧି ସମାଧା ହୋଇଅଛୁ, ଅଷ୍ଟ୍ରିୟ ରଜଦୂତ ଯେଉଂପ୍ରକାର ସନ୍ଧି ପ୍ରସ୍ତାବ ଘେନ ଯାଇଥିଲେ, ଋଷ ବାଦଶାହ ତାହା ସମୁଦାୟ ଗ୍ରାହ୍ୟ କର ଅଛନ୍ତ, ଏ ସମ୍ବାଦ ସତ୍ୟ ବୋଧ ହେଉଅଛୁ, କାରଣ କ, ପୋଷ୍ଟି ଏହ ସନ୍ଧି ଧାର୍ଯ୍ୟତା ବଷୟର ଏକ ଆଫିସିଏଲ ପତ୍ର ପାଇଅଛନ୍ତ ତହିଂରେ ଏମନ୍ତ ପ୍ରକାଶ ଅଛୁ କି ମିସ୍ୟାରେ ଉଭୟପକ୍ଷୀୟ ସେନାଗଣଙ୍କ ଯୁଦ୍ଧ ନବର୍ତ୍ତି ହୋଇଅଛୁ, ଅନେକ ଇଉଷ୍ଟାନ ଏଜେଣ୍ଟ ଏ ବଷୟରେ କଛୁ ଲେଖି ନାହାନ୍ତ ମାତ୍ର ଯେଉଂ ପତ୍ରରେ ଏ ସମ୍ବାଦ ଲେଖାଅଛୁ ତାହା ସେ ପଠାଇ ଦେଇଅଛନ୍ତ ।

---

କଟକ ପ୍ରଦେଶ ଏବଂ ତଦନ୍ତଃପାତ ସ୍ଥଲ ନବାସି ବଧବା ବବାହର ପ୍ରତବାଦ ବହୁସଂଖ୍ୟକ ଭଦ୍ରଲୋକମାନେ ବଧବା ବବାହ ଆଧୁନକ ଯୁଗରେ ଶାସ୍ତ୍ର ବରୁଦ୍ଧ ଏବଂ ପାରମ୍ପରକ ଲୋକେ ଅବ୍ୟବହୃତ କରଥିବା ଦୃଷ୍ଟିରେ ଅନ୍ୟାଯ୍ୟ ଜ୍ଞାନ କର ତାହା ପ୍ରଚଳତ ନୋହବା ଅଭପ୍ରାୟରେ ଶ୍ରୀଲଶ୍ରୀଯୁକ୍ତ ସରକାର ବାହାଦୁରଙ୍କ ନକଟକୁ ଏକ ଆବେଦନ ପ୍ରେରଣ କରବା ନମନ୍ତେ ପ୍ରସ୍ତୁତ କର୍ ଅଛନ୍ତ ଅଥଚ ସେ ଆବେଦନପତ୍ରରେ ସହସ୍ର ସଂଖ୍ୟକ ସ୍ୱାକ୍ଷର କରାଇବାର କଳ୍ପ ଅଛୁ ।

ଏବଞ୍ଚ ଉକ୍ତ ପ୍ରଦେଶ ଓ ତତ୍ସମୀପସ୍ଥ ବ୍ରାହ୍ମଣ ପଣ୍ଡିତ ମହାଶୟମାନେ ମନୁ, ଯାଜ୍ଞବଲ୍କ୍ୟ, ବୃହନ୍ନାରଦୀୟ, ହେମାଦ୍ରି ପ୍ରଭୃତି ଚରନ୍ତନ ନାନାବଧ ଧର୍ମଶାସ୍ତ୍ର ସମ୍ମତରେ ସଂସ୍କୃତ ଭାଷା ଲେଖିତ ଉକ୍ତୋକ୍ତ ଆବେଦନପତ୍ର ପୋଷକ ଏକ ବ୍ୟବସ୍ଥାପତ୍ର ପ୍ରସ୍ତୁତ କରି ପ୍ରଶଂସିତ ସରକାର ବାହାଦୁରଙ୍କ ହୁଜୁରକୁ ପ୍ରେରଣ କରିବାର ମନସ୍ଥ କରିଅଛନ୍ତି ।

କନ୍ତୁ ଉପରୋକ୍ତ ବ୍ୟବସ୍ଥାପତ୍ର ଧର୍ମଶାସ୍ତ୍ରାଭିଜ୍ଞ ବ୍ରାହ୍ମଣ ପଣ୍ଡିତମାନଙ୍କ ସ୍ୱାକ୍ଷରପୂର୍ବକ ପ୍ରସ୍ତୁତ ହୋଇ ଶ୍ରୀଯୁକ୍ତ ସରକାର ବାହାଦୁରଙ୍କ ହୁଜୁରକୁ ପ୍ରେରଣ ହେଲ ଉତ୍ତାରୁ ଏ ପ୍ରବୋଧ ଚନ୍ଦ୍ରିକା ପାଠକ ମହାଶୟମାନଙ୍କ ବିଜ୍ଞାପନାର୍ଥେ ଇହା ଦ୍ୱାରା ମୁଦ୍ରିତ ହୋଇ ପ୍ରକାଶ ହେବ ।

---

୧୨୭୩ ସାଲ ମୀନ ମାସର ଉତ୍କଳ ପଞ୍ଜିକା ।

୧ ମୀନ । ମଙ୍ଗଳବାର ପଞ୍ଚମୀ ୨୫ । ୮ ଦ୍ୱିଜା ୧୩ । ୧୨ ମେଷ ୨୭ । ୪୧ ବୈଧୃତ ୨୧ । ୨୨ ବାଲବ ୨୫ । ୨୮ ଭଦ୍ୟଂଶ ୨୧୫ । ୨୩ ଦନାର୍ଦ୍ଧ ୧୪ । ୪୪ ମାର୍ଚ୍ଚ ୧୧ ତାରିଖ ।

୨ ମୀନ । ବୁଧବାର ଷଷ୍ଠୀ ୨୧ । ୪୭ କୃତ୍ତିକା ୧୧ । ୭ ବୃଷ ୬୦ ବିଷ୍କୁମ୍ଭ ୨୩ । ୩୨ ତୈତିଲ ୨୧ । ୪୭ ଭଦ୍ୟଂଶ ୦୫ । ୩୭ ଦନାର୍ଦ୍ଧ ୧୪ । ୪୫ ବୃହସ୍ପତି ଚନ୍ଦ୍ରାର୍ଦ୍ଧ ଦ ୩୧ । ୨ ମାର୍ଚ୍ଚ ୧୨ ତାରିଖ ।

୩ ମୀନ । ଗୁରୁବାର ସପ୍ତମୀ ୧୮ । ୧୪ ରୋହଣୀ ୯ । ୪୫ ବୃଷ ୩୧ । ୪୦ ପ୍ରୀତି ୧୮ । ୨୧ ବାଣିଜ୍ୟ ୧୮ । ୧୪ ଭଦ୍ୟଂଶ ୧୫ । ୭ ଦନାର୍ଦ୍ଧ ୧୪ । ୪୭ ମାର୍ଚ୍ଚ ୧୩ ତାରିଖ ।

୪ ମୀନ । ଶୁକ୍ରବାର ଅଷ୍ଟମୀ ୧୭ । ୨୦ ମୃଗଶିରା ୯ । ୩୧ ମିଥୁନ ୬୦ ଆୟୁଷ୍ମାନ୍ ୧୩ । ୫୧ ବବ ୧୭ । ୨୦ ଭଦ୍ୟଂଶ ୨୪ । ୫୦ ଦନାର୍ଦ୍ଧ ୧୪ । ୪୮ ମାର୍ଚ୍ଚ ୧୪ ତାରିଖ ।

୫ ମୀନ । ଶନବାର ନବମୀ ୧୭ । ୪୮ ଆର୍ଦ୍ରା ୧୦ । ୪୦ ମିଥୁନ ୫୭ । ୨୨ ସୌଭାଗ୍ୟ ୧୦ । ୫୭ କୌଳବ ୧୭ । ୪୮ ଭଦ୍ୟଂଶ ୩୪ । ୦୫ ଦନାର୍ଦ୍ଧ ୧୪ । ୫୦ ମାର୍ଚ୍ଚ ୧୫ ତାରିଖ ।

୬ ମୀନ । ରବିବାର ଦଶମୀ ୧୬ । ୪୯ ପୁନର୍ବସୁ ୧୦ । ୫୨ କର୍କଟ ୬୦ ଶୋଭନ ୮ । ୩୩ ଗର ୧୬ । ୪୯ ରବ୍ୟଂଶ ୪୪ । ୨୧ ଧନାର୍କ ୧୪ । ୫୧ ଫଗୁଦଶମୀ ମାର୍ଚ୍ଚ ୧୬ ତାରିଖ ।

୭ ମୀନ । ସୋମବାର ଏକାଦଶୀ ୧୯ । ୪୩ ପୁଷ୍ୟା ୧୭ । ୨୮ କର୍କଟ ୬୦ ଅତିଗଣ୍ଡ ୭ । ୨୪ ବିଷ୍ଟି ୧୯ । ୪୩ ରବ୍ୟଂଶ ୫୪ । ୦ ଧନାର୍କ ୧୪ । ୫୨ ମାର୍ଚ୍ଚ ୧୭ ତାରିଖ ।

୮ ମୀନ । ମଙ୍ଗଳବାର ଦ୍ୱାଦଶୀ ୨୩ । ୧୨ ଅଶ୍ଳେଷା ୨୧ । ୩ କର୍କଟ ୨୧ । ୩ ଶୁଭକର୍ମ ୭ । ୧୫ ବାଲବ ୨୩ । ୧୨ ରବ୍ୟଂଶ ୬୩ । ୨୨ ଧନାର୍କ ୧୪ । ୫୪ ମାର୍ଚ୍ଚ ୧୮ ତାରିଖ ।

୯ ମୀନ । ବୁଧବାର ତ୍ରୟୋଦଶୀ ୨୭ । ୨୦ ମଘା ୨୭ । ୦ ସିଂହ ୬୦ ଧୃତି ୭ । ୩୨ ତୈତିଳ ୨୭ । ୨୦ ରବ୍ୟଂଶ ୭୩ । ୨୨ ଧନାର୍କ ୧୪ । ୫୬ ମାର୍ଚ୍ଚ ୧୯ ତାରିଖ ।

୧୦ । ମୀନ ଗୁରୁବାର ଚତୁର୍ଦ୍ଦଶୀ ୩୨ । ୩୦ ପୂର୍ବଫାଲ୍‌ଗୁନୀ ୩୨ । ୫୫ ସିଂହ ୪୯ । ୩୮ ଶୂଳ ୮ । ୪୫ ବାଣିଜ୍ୟ ୩୨ । ୩୦ ରବ୍ୟଂଶ ୮୨ । ୫୮ ଧନାର୍କ ୧୪ । ୫୭ ଗଜଅଗ୍ନି ମାର୍ଚ୍ଚ ୨୦ ତାରିଖ ।

୧୧ ମୀନ । ଶୁକ୍ରବାର ପୌର୍ଣ୍ଣମୀ ୩୮ । ୮ ଉତ୍ତରଫାଲଗୁନୀ ୩୯ । ୪୬ କନ୍ୟା ୬୦ ଗଣ୍ଡ ୧୦ । ୨୨ ବିଷ୍ଟି ୫ । ୧୯ ରବ୍ୟଂଶ ୯୨ । ୧୮ ଧନାର୍କ ୧୪ । ୫୯ ଚୈତନ୍ୟ ଜନ୍ମ ଦୋଳଯାତ୍ରା । ମନ୍ୱାଦି । ମାର୍ଚ୍ଚ ୨୧ ତାରିଖ । କଚେରୀ ବନ୍ଦ ।

୧୨ ମୀନ । ଶନିବାର ପ୍ରତିପଦା ୪୩ । ୨ ହସ୍ତା ୪୫ । ୪୮ କନ୍ୟା ୬୦ ବୃଦ୍ଧି ୧୧ । ୩୭ ବାଲବ ୧୦ । ୩୫ ରବ୍ୟଂଶ ୧୦୧ । ୪୭ ଧନାର୍କ ୧୫ । ୦ ସମ୍ବତ୍ସର । ମାର୍ଚ୍ଚ ୨୨ ତାରିଖ । କଚେରୀ ବନ୍ଦ ।

୧୩ ମୀନ । ରବିବାର ଦ୍ୱିତୀୟା ୪୭ । ୪୯ ଚିତ୍ରା ୫୨ । ୬ କନ୍ୟା ୧୯ । ୨ ଧ୍ରୁବ ୧୨ । ୫୫ ତୈତିଳ ୧୫ । ୨୫ ରବ୍ୟଂଶ ୧୧୧ । ୪୬ ଧନାର୍କ ୧୫ । ୨ ବୃହସ୍ପତି ପୂର୍ବୋଦୟ ୪୭ । ସମଦ୍ୱିତୀୟା । ମାର୍ଚ୍ଚ ୨୩ ତାରିଖ ।

୧୪ ମୀନ । ସୋମବାର ତୃତୀୟା ୫୪ । ୪୭ ସ୍ୱାତୀ ୫୬ । ୧୨ ତୁଳ ୬୦ ବ୍ୟାଘାତ ୧୩ । ୩୮ ବାଣିଜ୍ୟ ୧୯ । ୪୫ ରବ୍ୟଂଶ ୧୨୦ । ୩୨ ଧନାର୍କ ୧୫ । ୩ ମାର୍ଚ୍ଚ ୨୪ ତାରିଖ ।

ଏବଞ୍ଚ ଉକ୍ତ ପ୍ରଦେଶ ଓ ତତ୍ପ୍ରମୀପସ୍ଥ ବ୍ରାହ୍ମଣ ପଣ୍ଡିତ ମହାଶୟମାନେ ମନୁ, ଯାଜ୍ଞବଲ୍କ୍ୟ, ବୃହନ୍ନାରଦୀୟ, ହେମାଦ୍ରି ପ୍ରଭୃତ ଚରନ୍ତନ ନାନାବଧ ଧର୍ମଶାସ୍ତ୍ର ସମ୍ମତରେ ସଂସ୍କୃତ ଭାଷା ଲେଖିତ ଉର୍ଦ୍ଧ୍ୱୋକ୍ତ ଆବେଦନପତ୍ର ପୋଷକ ଏକ ବ୍ୟବସ୍ଥାପତ୍ର ପ୍ରସ୍ତୁତ କର ପ୍ରଶଂସିତ ସରକାର ବାହାଦୁରଙ୍କ ଛାମୁକୁ ପ୍ରେରଣ କରିବାର ମନସ୍ଥ କରଅଛନ୍ତି ।

ଜନୁ ଉପରୋକ୍ତ ବ୍ୟବସ୍ଥାପତ୍ର ଧର୍ମଶାସ୍ତ୍ରାଭିଜ୍ଞ ବ୍ରାହ୍ମଣ ପଣ୍ଡିତମାନଙ୍କ ସ୍ୱାକ୍ଷରପୂର୍ବକ ପ୍ରସ୍ତୁତ ହୋଇ ଶ୍ରୀଯୁକ୍ତ ସରକାର ବାହାଦୁରଙ୍କ ଛାମୁକୁ ପ୍ରେରଣ ହେଲ ଉତ୍ତାରୁ ଏ ପ୍ରବୋଧ ଚନ୍ଦ୍ରିକା ପାଠକ ମହାଶୟମାନଙ୍କ ବଜ୍ଞାପନାର୍ଥେ ଇହା ଦ୍ୱାରା ମୁଦ୍ରିତ ହୋଇ ପ୍ରକାଶ ହେବ ।

———

୧୨୭୩ ସାଲ ମୀନ ମାସର ଉତ୍କଳ ପଞ୍ଜିକା ।

୧ ମୀନ । ମଙ୍ଗଳବାର ପଞ୍ଚମୀ ୨୫ । ୮ କୃତ୍ତିକା ୧୩ । ୧୨ ମେଷ ୨୭ । ୪୧ ବୈଧୃତ ୨୯ । ୨୨ ବାଲବ ୨୫ । ୨୮ ଉଦ୍‌ୟାଂଶ ୨୯୫ । ୨୩ ଧନାର୍କ ୧୪ । ୪୪ ମାର୍ଚ୍ଚ ୧୧ ତାରିଖ ।

୨ ମୀନ । ବୁଧବାର ଷଷ୍ଠୀ ୨୧ । ୪୭ କୃତ୍ତିକା ୧୧ । ୭ ବୃଷ ୬୦ ବିଷ୍କୁମ୍ଭ ୨୩ । ୩୨ ତୈତିଲ ୨୧ । ୪୭ ଉଦ୍‌ୟାଂଶ ୦୫ । ୩୬ ଧନାର୍କ ୧୪ । ୪୫ ବୃହସ୍ପତି ଚନ୍ଦ୍ରାର୍କ ଦ ୩୯ । ୨ ମାର୍ଚ୍ଚ ୧୨ ତାରିଖ ।

୩ ମୀନ । ଗୁରୁବାର ସପ୍ତମୀ ୧୮ । ୧୪ ରୋହିଣୀ ୯ । ୪୫ ବୃଷ ୩୯ । ୪୦ ପ୍ରୀତି ୧୮ । ୨୧ ବାଣିଜ୍ୟ ୧୮ । ୧୪ ଉଦ୍‌ୟାଂଶ ୧୫ । ୬ ଧନାର୍କ ୧୪ । ୪୭ ମାର୍ଚ୍ଚ ୧୩ ତାରିଖ ।

୪ ମୀନ । ଶୁକ୍ରବାର ଅଷ୍ଟମୀ ୧୭ । ୨୦ ମୃଗଶିରା ୯ । ୩୯ ମିଥୁନ ୬୦ ଆୟୁଷ୍ମାନ୍ ୧୩ । ୫୯ ବବ ୧୭ । ୨୦ ଉଦ୍‌ୟାଂଶ ୨୪ । ୫୦ ଧନାର୍କ ୧୪ । ୪୮ ମାର୍ଚ୍ଚ ୧୪ ତାରିଖ ।

୫ ମୀନ । ଶନିବାର ନବମୀ ୧୬ । ୪୮ ଆର୍ଦ୍ରା । ୧୦ । ୪୦ ମିଥୁନ ୫୭ । ୨୨ ସୌଭାଗ୍ୟ ୧୦ । ୫୭ କୌଳବ ୧୬ । ୪୮ ଉଦ୍‌ୟାଂଶ ୩୪ । ୦୫ ଧନାର୍କ ୧୪ । ୫୦ ମାର୍ଚ୍ଚ ୧୫ ତାରିଖ ।

୬ ମୀନ । ରବିବାର ଦଶମୀ ୧୬ । ୪୯ ପୁନର୍ବସୁ ୧୦ । ୫୨ କର୍କଟ ୬୦ ଶୋଭନ ୮ । ୩୩ ଗର ୧୬ । ୪୯ ରବ୍ୟଂଶ ୪୪ । ୨୧ ଦିନାର୍ଦ୍ଧ ୧୪ । ୫୧ ଫଗୁଦଶମୀ ମାର୍ଚ୍ଚ ୧୬ ତାରିଖ ।

୭ ମୀନ । ସୋମବାର ଏକାଦଶୀ ୧୯ । ୪୩ ପୁଷ୍ୟା ୧୭ । ୨୮ କର୍କଟ ୬୦ ଅତିଗଣ୍ଡ ୭ । ୨୪ ବିଷ୍ଟି ୧୯ । ୪୩ ରବ୍ୟଂଶ ୫୪ । ୦ ଦିନାର୍ଦ୍ଧ ୧୪ । ୫୨ ମାର୍ଚ୍ଚ ୧୭ ତାରିଖ ।

୮ ମୀନ । ମଙ୍ଗଳବାର ଦ୍ୱାଦଶୀ ୨୩ । ୧୨ ଅଶ୍ଳେଷା ୨୧ । ୩ କର୍କଟ ୨୧ । ୩ ଶୁଭକର୍ମ ୭ । ୧୫ ବାଲବ ୨୩ । ୧୨ ରବ୍ୟଂଶ ୬୩ । ୨୨ ଦିନାର୍ଦ୍ଧ ୧୪ । ୫୪ ମାର୍ଚ୍ଚ ୧୮ ତାରିଖ ।

୯ ମୀନ । ବୁଧବାର ତ୍ରୟୋଦଶୀ ୨୭ । ୨୦ ମଘା ୨୭ । ୦ ସିଂହ ୬୦ ଧୃତ ୭ । ୩୨ ତୈତିଳ ୨୭ । ୨୦ ରବ୍ୟଂଶ ୭୩ । ୨୨ ଦିନାର୍ଦ୍ଧ ୧୪ । ୫୬ ମାର୍ଚ୍ଚ ୧୯ ତାରିଖ ।

୧୦ । ମୀନ ଗୁରୁବାର ଚତୁର୍ଦ୍ଦଶୀ ୩୨ । ୩୦ ପୂର୍ବଫାଲ୍‌ଗୁନୀ ୩୨ । ୫୫ ସିଂହ ୪୯ । ୩୮ ଶୂଳ ୮ । ୪୫ ବାଣିଜ୍ୟ ୩୨ । ୩୦ ରବ୍ୟଂଶ ୮୨ । ୫୮ ଦିନାର୍ଦ୍ଧ ୧୪ । ୫୭ ସ୍ୱଜଅଗ୍ନି ମାର୍ଚ୍ଚ ୨୦ ତାରିଖ ।

୧୧ ମୀନ । ଶୁକ୍ରବାର ପୌର୍ଣ୍ଣମୀ ୩୮ । ୮ ଉତ୍ତରଫାଲ୍‌ଗୁନୀ ୩୯ । ୪୬ କନ୍ୟା ୬୦ ଗଣ୍ଡ ୧୦ । ୨୨ ବିଷ୍ଟି ୫ । ୧୯ ରବ୍ୟଂଶ ୯୨ । ୧୮ ଦିନାର୍ଦ୍ଧ ୧୪ । ୫୯ ଚୈତନ୍ୟ ଜନ୍ମ ଦୋଳଯାତ୍ରା । ମନ୍ୱାଦି । ମାର୍ଚ୍ଚ ୨୧ ତାରିଖ । କଚେରୀ ବନ୍ଦ ।

୧୨ ମୀନ । ଶନିବାର ପ୍ରତିପଦା ୪୩ । ୨ ହସ୍ତା ୪୫ । ୪୮ କନ୍ୟା ୬୦ ବୃଦ୍ଧି ୧୧ । ୩୭ ବାଲବ ୧୦ । ୩୫ ରବ୍ୟଂଶ ୧୦୧ । ୪୭ ଦିନାର୍ଦ୍ଧ ୧୫ । ୦ ସମଦବସ । ମାର୍ଚ୍ଚ ୨୨ ତାରିଖ । କଚେରୀ ବନ୍ଦ ।

୧୩ ମୀନ । ରବିବାର ଦ୍ୱିତୀୟା ୪୭ । ୪୯ ଚିତ୍ରା ୫୨ । ୭ କନ୍ୟା ୧୯ । ୨ ଧ୍ରୁବ ୧୨ । ୫୫ ତୈତିଳ ୧୫ । ୨୫ ରବ୍ୟଂଶ ୧୧୧ । ୪୭ ଦିନାର୍ଦ୍ଧ ୧୫ । ୨ ବୃହସ୍ପତି ପୂର୍ବୋଦୟ ୪୭ । ଯମଦ୍ୱିତୀୟା । ମାର୍ଚ୍ଚ ୨୩ ତାରିଖ ।

୧୪ ମୀନ । ସୋମବାର ତୃତୀୟା ୫୪ । ୪୭ ସ୍ୱାତି ୫୬ । ୧୨ ତୁଳ ୬୦ ବ୍ୟାଘାତ ୧୩ । ୩୮ ବାଣିଜ୍ୟ ୧୯ । ୪୫ ରବ୍ୟଂଶ ୧୨୦ । ୩୨ ଦିନାର୍ଦ୍ଧ ୧୫ । ୩ ମାର୍ଚ୍ଚ ୨୪ ତାରିଖ ।

୧୫ ମୀନ । ମଙ୍ଗଳବାର ଚତୁର୍ଥୀ ୫୪ । ୩୨ ବିଶାଖା ୬୦ ଶୂଳ ୪୪ । ୫୭ ହର୍ଷଣ ୧୩ । ୩୪ ବବ ୨୩ । ୬ ରବ୍ୟଂଶ ୧୩୫୯ । ୩ ଦନାର୍କ ୧୫ । ୫ ମାର୍ଚ୍ଚ ୨୫ ତାରିଖ ।

୧୬ ମୀନ । ବୁଧବାର ପଞ୍ଚମୀ ୫୫ । ୪୯ ବିଶାଖା ୦ । ୫୩ ବୃଶ୍ଚିକ ୬୦ ବଜ୍ର ୧୨ । ୩୭ କୈଳବ ୨୫ । ୧୦ ରବ୍ୟଂଶ ୧୩୫୯ । ୯ ଦନାର୍କ ୧୫ । ୬ ମାର୍ଚ୍ଚ ୨୬ ତାରିଖ ।

୧୭ ମୀନ । ଗୁରୁବାର ଷଷ୍ଠୀ ୫୫ । ୩୯ ଅନୁରାଧା ୩ । ୩୮ ବୃଶ୍ଚିକ ୬୦ ସିଦ୍ଧି ୧୦ । ୩୮ ଗର ୨୫ । ୩୯ ରବ୍ୟଂଶ ୧୪୫୮ । ୪୨ ଦନାର୍କ ୧୫ । ୮ ବୁଧ ପୂର୍ବୋଦୟ ୫୨ । ୭ ସ୍କନ୍ଦଷଷ୍ଠୀ ମାର୍ଚ୍ଚ ୨୭ ତାରିଖ ।

୧୮ ମୀନ । ଶୁକ୍ରବାର ସପ୍ତମୀ ୫୪ । ୪୪ ଜ୍ୟେଷ୍ଠା ୫ । ୩ ବୃଶ୍ଚିକ ୫ । ୩ ବ୍ୟତୀପାତ ୭ । ୩୯ ବଣିଜ ୨୫ । ୧୦ ରବ୍ୟଂଶ ୧୫୫୭ । ୫୮ ଦନାର୍କ ୧୫ । ୯ ମାର୍ଚ୍ଚ ୨୮ ତାରିଖ ।

୧୯ । ମୀନ ଶନିବାର ଅଷ୍ଟମୀ ୫୨ । ୩୧ ମୂଳା ୫ । ୩୧ ଧନୁ ୬୦ ବରୀୟାନ ୩ । ୫୪ ବାଳବ ୨୩ । ୩୫ ରବ୍ୟଂଶ ୧୬୪୭ । ୧୦ ଦନାର୍କ ୧୫ । ୧୧ ଯୋଗକ୍ଷୟ ୫୫ ମାର୍ଚ୍ଚ ୨୯ ତାରିଖ ।

୨୦ ମୀନ । ରବିବାର ନବମୀ ୪୮ । ୫୪ ପୂର୍ବାଷାଢ଼ ୪ । ୩୩ ଧନୁ ୧୯ । ୩୩ ଶିବ ୫୪ । ୩୪ ତୈତିଳ ୨୦ । ୪୨ ରବ୍ୟଂଶ ୧୭୫୨ । ୨୧ ଦନାର୍କ ୧୫ । ୧୩ ମାର୍ଚ୍ଚ ୩୦ ତାରିଖ ।

୨୧ ମୀନ । ସୋମବାର ଦଶମୀ ୪୪ । ୩୦ ଉତ୍ତରାଷାଢ଼ ୨ । ୪୮ ମକର ୬୦ ସିଦ୍ଧ୍ୟ ୪୭ । ୨୫ ବାଣିଜ୍ୟ ୧୮ । ୪୪ ରବ୍ୟଂଶ ୧୮୫୫ । ୩୨ ଦନାର୍କ ୧୫ । ୧୫ ମଙ୍ଗଳଚନ୍ଦ୍ରାର୍କ ୪୫ ମାର୍ଚ୍ଚ ୩୧ ତାରିଖ ।

୨୨ ମୀନ । ମଙ୍ଗଳବାର ଏକାଦଶୀ ୩୯ । ୨୮ ଶ୍ରବଣା ୦ । ୭ ମକର ୨୯ । ୦ ସାଧ୍ୟ ୪୦ । ୨୦ ବବ ୧୨ । ୧ ରବ୍ୟଂଶ ୧୯ । ୫୪ । ୪୫ ଦନାର୍କ ୧୫ । ୧୫ ନକ୍ଷତ୍ର କ୍ଷୟ ୫୮ । ୧୨ ଏପ୍ରେଲ ୧ ତାରିଖ ।

୨୩ ମୀନ । ବୁଧବାର ଦ୍ୱାଦଶୀ ୩୩ । ୫୭ ଶତଭିଷା ୫୨ । ୪୨ କୁମ୍ଭ ୬୦ ଶୁଭ ୩୨ । ୪୦ କୈଳବ ୬। ୪୨ ରବ୍ୟଂଶ ୨୦୫୩ । ୪୧ ଦନାର୍କ ୧୫ । ୧୭ ବାରୁଣୀସ୍ନାନ ଏପ୍ରେଲ ୨ ତାରିଖ । କଚେରୀ ବନ୍ଦ ।

୨୪ ମୀନ । ଗୁରୁବାର ତ୍ରୟୋଦଶୀ ୨୭ । ୫୪ ପୂର୍ବଷାଢ଼ା ୪୮ । ୫୨ କୁମ୍ଭ ୩୪। ୫୦ ଶୁକ୍ଳ ୨୫ । ୧୫ ଗର ୦ । ୫୫ ଋଦ୍ଧ୍ୟଂଶ ୨୧୫୨ । ୪୦ ଦ୍ୱନାର୍ଦ୍ଧ ୧୫ । ୧୭ ଏପ୍ରେଲ ୩ ତାରିଖ ।

୨୫ ମୀନ । ଶୁକ୍ରବାର ଚତୁର୍ଦ୍ଦଶୀ ୨୧ । ୫୭ ଉତ୍ତରଷାଢ଼ା ୪୩ । ୪୦ ମୀନ ୬୦ ବ୍ରହ୍ମ ୧୭ । ୩୦ ଶକୁନ ୨୧ । ୨ ଋଦ୍ଧ୍ୟଂଶ ୨୨୫୧ । ୪୭ ଦ୍ୱନାର୍ଦ୍ଧ ୧୫ । ୨୦ ଏପ୍ରେଲ ୪ ତାରିଖ ।

୨୬ ମୀନ । ଶନିବାର ଅମାବାସ୍ୟା ୧୫ । ୫୭ ରେବତୀ ୪୦ । ୪୦ ମୀନ ୪୦ । ୪୦ ଇନ୍ଦ୍ର ୧୨ । ୨୯ ଚତୁଷ୍ପଦ ୧୫ । ୫୭ ଋଦ୍ଧ୍ୟଂଶ ୨୩୫୫ । ୪୫ ଦ୍ୱନାର୍ଦ୍ଧ ୧୫ । ୨୨ । ଏପ୍ରେଲ ୫ ତାରିଖ ।

୨୭ ମୀନ । ରବିବାର ପ୍ରତିପଦା ୧୪ । ୧୩ ଅଶ୍ୱିନୀ ୩୭ । ୫୭ ମେଷ ୬୦ ବୈଧୃତି ୨ । ୨୨ ବବ ୧୦ । ୧୩ ଋଦ୍ଧ୍ୟଂଶ ୨୪୪୯ । ୩୯ ଦ୍ୱନାର୍ଦ୍ଧ ୧୫ । ୨୩ ଯୋଗଷଷ୍ଠ ୫୭ । ଏପ୍ରେଲ ୬ ତାରିଖ ।

୨୮ ମୀନ । ସୋମବାର ଦ୍ୱିତୀୟା ୪ । ୧୯ ଭରଣୀ ୩୩ । ୫୪ ମେଷ ୪୮ । ୧୮ ପ୍ରୀତି ୪୮ । ୩୭ କୌଳବ ୪ । ୫୮ ଋଦ୍ଧ୍ୟଂଶ ୨୫୪୮ । ୨୩ ଦ୍ୱନାର୍ଦ୍ଧ ୧୫ । ୨୪ ଏପ୍ରେଲ ୭ ତାରିଖ ।

୨୯ ମୀନ । ମଙ୍ଗଳବାର ତୃତୀୟା ୧ । ୮ କୃତ୍ତିକା ୩୧ । ୨୯ ବୃଷ ୬୦ ଆୟୁଷ୍ମାନ ୪୨ । ୨୨ ଗର ୧ । ୯ ଋଦ୍ଧ୍ୟଂଶ ୨୬୪୭ । ୧୭ ଦ୍ୱନାର୍ଦ୍ଧ ୧୫ । ୨୬ ତଥିକ୍ଷୟ ୫୫ ଏପ୍ରେଲ ୮ ତାରିଖ ।

୩୦ ମୀନ । ବୁଧବାର ପଞ୍ଚମୀ ୫୩ । ୭ ରୋହିଣୀ ୨୯ । ୧୭ ବୃଷ ୬୦ ସୌଭାଗ୍ୟ ୩୨ । ୫୭ ବବ ୨୪ । ୫୮ ଋଦ୍ଧ୍ୟଂଶ ୨୭୪୭ । ୧୧ ଦ୍ୱନାର୍ଦ୍ଧ ୧୫ । ୨୭ ବୃହସ୍ପତି ତରୁଣ ଶୁକ୍ରକାଳ ୪୫ । ୧୦ ଏପ୍ରେଲ ୯ ତାରିଖ ।

୩୧ ମୀନ । ଗୁରୁବାର ଷଷ୍ଠୀ ୫୦ । ୫୪ ମୃଗଶିରା ୨୯ । ୬ ବୃଷ ୦ । ୩୪ ଶୋଭନ ୩୨ । ୧୮ କୌଳବ ୨୪ । ୦ ଋଦ୍ଧ୍ୟଂଶ ୨୮୪୦ । ୫୭ ଦ୍ୱନାର୍ଦ୍ଧ ୧୫ । ୨୯ ଏପ୍ରେଲ ୧୦ ତାରିଖ । ଚଇତ ପର୍ବା । ଜଗେଶ୍ୱର ବନ୍ଦ ।

—⁂—

ଏ ପୁସ୍ତକର ତଳଲେଖିତ ଗ୍ରାହକ ମହାଶୟମାନେ ୧୮୫୬ ସାଲର
ସମ୍ପୂର୍ଣ୍ଣ ମୂଲ୍ୟ ପ୍ରଦାନ କରିଅଛନ୍ତି, ଯଥା ।

| | | | | |
|---|---|---|---|---|
| ୯ । | ଶ୍ରୀଯୁତ ଡବଲିଉ ମାକଡନେଲ ସାହେବ ମଏ ଡାକ ରସୁମ | | | ଟ ୧୦ |
| ୧୦ । | ” ଆଇ ଷ୍ଟିବନ୍‌ସ ସାହେବ | — | — | ଟ ୧୳ |
| ୧୧ । | ” ଡବଲିଉ ବୃକ୍‌ସ ସାହେବ | — | — | ଟ ୧୳ |
| ୧୨ । | ବାବୁ ତାରିକାନ୍ତ ବିଦ୍ୟାସାଗର | — | — | ଟ ୧୳ |
| ୧୩ । | ବାବୁ ମହେଶଚନ୍ଦ୍ର ରାୟ | — | — | ଟ ୧୳ |
| ୧୪ । | ବାବୁ ନବୀନଚନ୍ଦ୍ର ଷଡଙ୍ଗୀ | — | — | ଟ ୧୳ |
| ୧୫ । | ବାବୁ ଭୁବନାନନ୍ଦ ନ୍ୟାୟାଲଙ୍କାର ଡାକ ମାସୁଲ ସୁଦ୍ଧା | — | — | ଟ ୨। |
| ୧୬ । | ଜଗପାଣଦାଣ ପଣ୍ଡିତ | — | — | ଟ ୧୳ |
| ୧୭ । | ବାବୁ ସୁଦର୍ଶନ ଦାସ | — | — | ଟ ୧୳ |
| ୧୮ । | ରାଜା ଲକ୍ଷ୍ମୀଶ୍ୱର ମାନଧାତା ବୀରବର ମହାପାତ୍ର ନାବାଲଗ | — | — | ଟ ୧୳ |
| ୧୯ । | ମୀରଜାଫର ଅଲ୍ଲୀ | — | — | ଟ ୧୳ |
| ୨୦ । | ବାବୁ କାଳୀଚନ୍ଦ୍ର ବାନୁର୍ଯ୍ୟା | — | — | ଟ ୧୳ |
| ୨୧ । | ବାବୁ ଲକ୍ଷ୍ମୀବ୍ରଜେନ୍ଦ୍ର ରାଏ | — | — | ଟ ୧୳ |
| ୨୨ । | ବାବୁ ଗୋକୁଳଚନ୍ଦ୍ର ଘୋଷ | | — | ଟ ୧୳ |
| ୨୩ । | ବାବୁ ହରଶ୍ଚନ୍ଦ୍ର ବାନୁର୍ଯ୍ୟା | — | — | ଟ ୧୳ |
| ୨୪ । | ବାବୁ ଈଶାନଚନ୍ଦ୍ର ବାନୁର୍ଯ୍ୟା | — | — | ଟ ୧୳ |
| ୨୫ । | ବାବୁ ତାରିଚ୍ଚନ୍ଦ୍ର ଦାସ | — | — | ଟ ୧୳ |
| ୨୬ । | ବାବୁ ସୁଦେବରାମ ଉପାଧ୍ୟାୟ | — | – | ଟ ୧୳ |
| ୨୭ । | ବାବୁ ହର ସାହୁ | — | — | ଟ ୧୳ |
| ୨୮ । | ବାବୁ ଗୋବିନ୍ଦ ଦାସ | — | — | ଟ ୧୳ |
| ୨୯ । | ସରକାର ବାହାଦୁର ୫୦ ଖଣ୍ଡକୁ | | — | ଟ ୬୫ |

W. C. Lacey

ସମ୍ପାଦକ ।

···❋···

# ପ୍ରବୋଧ ଚନ୍ଦ୍ରିକା

୪ ସଂଖ୍ୟା ।

ସନ ୧୨୬୩ । ମେଷ । * ସନ ୧୮୫୬ । ଏପ୍ରେଲ ।

## ଅଥ ବିଷ୍ଣୁଶର୍ମକର୍ତ୍ତୃକ ହିତୋପଦେଶଃ ।

ଅନ × × ଏହି ସକଳ ବୃତ୍ତାନ୍ତ ଦେଖି ଇହା କହି × × ଶ୍ଳାଘ୍ୟ; ଏହେତୁରୁ ଆମ୍ଭେ ମୁଦ୍ଧା ତୁ × × ଆମ୍ଭଙ୍କ ମିତ୍ରଭାବରେ ଅନୁଗ୍ରହ କରିବାକୁ × ଇହା ଶୁଣି ହିରଣ୍ୟକ ଗର୍ତ୍ତ ମଧ୍ୟରେ ଥାଇ କହିଲା, କଏ ତୁମ୍ଭେ ? ସେ କହିଲା, ଆମ୍ଭେ ଲଘୁପତନକ ନାମରେ କାକ । ହିରଣ୍ୟକ ହସିକରି କହିଲା, ତୁମ୍ଭ ସହିତ ମିତ୍ରତା କି ? ସେହେତୁରୁ,

ଯଦ୍ୟେନ ଯୁଜ୍ୟତେ ଲୋକେ ବୁଧସ୍ତତ୍ତେନ ଯୋଜୟେତ୍ ।
ଅହମନ୍ନଂ ଭବାନ୍ ଭୋକ୍ତା କଥଂ ପ୍ରୀତିର୍ଭବିଷ୍ୟତି ॥

ଲୋକରେ ଯେ ଯାହା ସହିତ ଉପଯୁକ୍ତ ହୁଏ, ପଣ୍ଡିତ ଲୋକ ତାକୁ ତାହା ସହିତ ମେଳନ କରାଇବ । ଆମ୍ଭେ ଭୋଜ୍ୟ, ତୁମ୍ଭେ ଭୋକ୍ତା, ଏଥିରେ କିରୂପେ ପ୍ରୀତି ହେବ ? ଭକ୍ଷ୍ୟ ଭକ୍ଷକ ଦୁହିଙ୍କର ଯେଉଂ ପ୍ରୀତି ସେ ବିପତ୍ତିର କାରଣ ହୁଏ; କାରଣ କି ଶୃଗାଲ ହେତୁରୁ ପାଶରେ ବନ୍ଧ ମୃଗ କାକକର୍ତ୍ତୃକ ରକ୍ଷିତ ହେଲା ।

କାକ କହିଲା, ଏ କି ପ୍ରକାର ?

ହିରଣ୍ୟକ କହୁଅଛି ମଗଧ ଦେଶରେ ଚମ୍ପକାବତୀ ନାମରେ + ବନ ଅଛି, ସେଠାରେ × ଦୁହେଁ ଚିରକାଳରୁ ବଡ଼ ସ୍ନେହରେ ବାସ କରୁଥାନ୍ତି । × × ଭ୍ରମଣ କରୁଥିଲା, ଏଥିମଧ୍ୟରେ କୌଣସି × × ଦେଖି ଚିନ୍ତାକଲା, ଆଃ କି ପ୍ରକାରେ ଏହି ଉବ × × ଇବା ? ଯାହାହେଉ, ବିଶ୍ୱାସ ଜନ୍ମାଇବା । ଏହି ପରାମର୍ଶ କରି ସମୀପ ଯାଇ କହିଲା, ହେ ମିତ୍ର, ତୁମ୍ଭର ମଙ୍ଗଳ ଅଛିତ ? ମୃଗ କହିଲା, କଏ ତୁମ୍ଭେ ? ଶୃଗାଲ କହୁଅଛି, କ୍ଷୁଦ୍ରବୁଦ୍ଧି ନାମରେ ଶୃଗାଲ ଆମ୍ଭେ, ଏହି ବନରେ ବାନ୍ଧବ ହୀନ ହୋଇ

ମୃତବତ୍ ବାସ କରୁଂ, ସମ୍ପ୍ରତି ତୁମ୍ଭଙ୍କ ମିତ୍ର ପାଇ ପୁନର୍ବାର ସଦାନନ୍ଦ ହୋଇ ସଜୀବ ହେଲୁଂ; ବର୍ତ୍ତମାନ ଆମ୍ଭେ ସର୍ବଦା ତୁମ୍ଭର ଅନୁଚର ହେବୁ ।

ମୃଗ ଶୃଗାଳକୁ କହିଲା, ଆସ୍ତୁ, ତାହା ହେଉ ।

ଅନନ୍ତର ଭଗବାନ୍ ମରୀଚମାଳୀ ସୂର୍ଯ୍ୟ ପଶ୍ଚିମ ଦିଗରେ ଅସ୍ତ ହେଲାରୁ, ମୃଗର ବାସସ୍ଥାନକୁ ସେହି ମୃଗ ଶୃଗାଳ ଦୁହେଁ ଗଲେ । ସେଠାରେ ଚମ୍ପକ ବୃକ୍ଷ ଡାଳରେ ମୃଗର ଚିରକାଳୀନ ମିତ୍ର ସୁବୁଦ୍ଧି ନାମା କାକ ବାସ କରେ । ତେତେବେଳେ କାକ ହରିଣ ଆଉ ଜମ୍ବୁକକୁ ଦେଖି କହିଲା, ମିତ୍ର, ଦ୍ୱିତୀୟ ଏ କିଏ ? ହରିଣ କହୁଅଛି, ଏ ଜମ୍ବୁକ, ଆମ୍ଭ ସହିତ ମିତ୍ରତା କରିବାକୁ ବାଞ୍ଛା କରି ଆସିଅଛନ୍ତି । କାକ ବୋଲୁଅଛି, ସଖେ, × ସହିତ ମିତ୍ରତା ଉଚିତ ନୁହେ । ବିଜ୍ଞମାନେ × × ।

ଅଜ୍ଞାତକୁଳଶୀଳସ୍ୟ × × × × ।
ମାର୍ଜରସ୍ୟ ହି ଦେ × × × × ।

ଯାହାର କୁଳ ଓ ସ୍ୱଭାବ ଜ୍ଞାତ ନୁହେ, ତାକୁ ବାସସ୍ଥାନ ଦେବାର ଉପଯୁକ୍ତ ନୁହେ; ଯେହେତୁରୁ ବିଡ଼ାଲ ଦୋଷରେ ଜରଦ୍‌ଗବ ନାମରେ ଗୃଧ୍ର ନଷ୍ଟ ହେଲା ।

ମୃଗ ଶୃଗାଳ ଦୁହେଁ ପଚାରିଲେ, ସେ କି ପ୍ରକାର ?

କାକ କହୁଅଛି, ଗଙ୍ଗା ତୀରସ୍ଥ ଗୃଧ୍ରକୂଟ ନାମକ ପର୍ବତରେ ଗୋଟାଏ ବଡ ଜର୍ଣ୍ଣବୃକ୍ଷ ଅଛି, ତାହା କୋଟରରେ ଦୈବବିପାକବଶରୁ ନଖ ଓ ଚକ୍ଷୁ ରହିତ ଜରଦ୍‌ଗବନାମରେ ଗୃଧ୍ର ବାସକରେ । ଅନନ୍ତର ତାହା ଜୀବନ ନିମନ୍ତେ ସେହି ବୃକ୍ଷବାସି ପକ୍ଷିମାନେ କୃପାକରି ଆପଣା ୨ ଆହାରରୁ କିଞ୍ଚିତ୍ ଉଦ୍ଧାର କରି ତାକୁ ଦିଅନ୍ତି, ତହିଁରେ ସେ ଜରଦ୍‌ଗବ ବଞ୍ଚେ । ପରେ କୌଣସି ଦିନ ଦୀର୍ଘକର୍ଣ୍ଣ ନାମରେ ଏକ ମାର୍ଜାର ପକ୍ଷିଶାବକମାନଙ୍କ ଭକ୍ଷଣକରିବା ମାନସରେ ସେଠାକୁ ଆଇଲା । ତହିଁରେ ପକ୍ଷିଶାବକମାନେ ସେହି ବିଡ଼ାଲକୁ ଆସିବାର ଦେଖି × ରେ କୋଳାହଳ × × ତାହା ଶୁଣି ଜରଦ୍‌ଗବ ମାର୍ଜାରକୁ କହିଲା ଏ କିଏ ଆସୁଅଛି ? ଦୀର୍ଘକର୍ଣ୍ଣ × × ଯୁକ୍ତ ହୋଇ ଖେଦରେ କହିଲା, ଆମ୍ଭେ ନଷ୍ଟ ହେଲ × ×

ତାବଦ୍ଭୟସ୍ୟ ଭେତବ୍ୟଂ × × × ।
ଆଗତନ୍ତୁ ଭୟଂ ବୀକ୍ଷ୍ୟ ନରଃ × × × ।

ଭୟ ଯାବତ୍ ନ ଆସେ ତାବତ୍ ଭୟକୁ ଭୟକରିବା ଉପଯୁକ୍ତ, କିନ୍ତୁ ଭୟକୁ ଆଗତ ଦେଖିଲେ ଯେମନ୍ତ ଉଚିତ ହୁଏ ତାହା ମନୁଷ୍ୟ କରିବ । ଏବେ ଭୟ ଉପସ୍ଥିତ ହେଲା, ପଳାଇଯିବା ଆମ୍ଭର ଅସାଧ୍ୟ ; ତେବେ ଯାହା ହେବାର ତାହାତ ହେବ, ବିଶ୍ୱାସ ଜନ୍ମାଇ ଇହା ନିକଟକୁ ଯିବା । ଇହା ଆଲୋଚନା କରି ନିକଟକୁ ଯାଇ କହିଲା, ହେ ଶ୍ରେଷ୍ଠ, ତୁମ୍ଭଙ୍କୁ ନମସ୍କାର । ଗୃଧ୍ର କହିଲା, କିଏ ତୁମ୍ଭେ ? ସେ କହିଲା, ବିଡାଳ ଆମ୍ଭେ । ଗୃଧ୍ର କହୁଅଛି, ଦୂରକୁ ଯାଅ, ଯେବେ ନ ଯିବ, ତେବେ ତୁମ୍ଭଙ୍କୁ ନଷ୍ଟ କରିବା, ମାର୍ଜାର କହିଲା, ଆମ୍ଭ ବାକ୍ୟ ଶୁଣ, ତାହାପରେ ଯେବେ ଆମ୍ଭେ ବଧ୍ୟ ହେଉଁ, ତେବେ ବଧ କର୍ତ୍ତବ୍ୟ ; ଯେହେତୁର୍,

ଜାତିମାତ୍ରେଣ କିଂ କଶ୍ଚିଦ୍ଧନ୍ୟତେ ପୂଜ୍ୟତେ କ୍ୱଚିତ୍ ।
× × ପରିଜ୍ଞାୟ ବଧ୍ୟଃ ପୂଜ୍ୟୋଽଥବା ଭବେତ୍ ॥

କେ × × ମାତ୍ରରେ ବଧ କିମ୍ବା ପୂଜ୍ୟ ନୁହେ ; ବ୍ୟବହାରରେ × × କହୁଅଛି, କହ କି ନିମନ୍ତେ ତୁମ୍ଭେ ଆସିଅଛ × × ଗଙ୍ଗା ତୀରରେ ନିତ୍ୟସ୍ନାୟୀ ନିରାମିଷାଶୀ ବ୍ରହ୍ମଚାରୀ × ବ୍ରତ ଆଚରଣ କରୁଥିଲି ; ବିଶ୍ୱାସଭୂମି ପକ୍ଷିମାନେ ଧର୍ମଜ୍ଞାନ ରତ ଯେ ତୁମ୍ଭେମାନେ, ତୁମ୍ଭମାନଙ୍କୁ ଆମ୍ଭ ଅଗ୍ରରେ ସର୍ବଦା ପ୍ରଶଂସା କରନ୍ତି ; ତୁମ୍ଭେମାନେ ବିଦ୍ୟା ଓ ବୟସରେ ବୃଦ୍ଧ, ଅତଏବ ତୁମ୍ଭମାନଙ୍କ ନିକଟରୁ ଧର୍ମ ଶ୍ରବଣ କରିବା ନିମନ୍ତେ ଏଠାକୁ ଆସିଅଛୁଁ । ଆପଣମାନେ ଏମନ୍ତ ଧର୍ମଜ୍ଞ ଯେ ଆମ୍ଭେ ଅତିଥି ଆମ୍ଭଙ୍କୁ ମାରିବା ଲଗି ଉଦ୍ୟତ ? ଗୃହସ୍ଥର ଧର୍ମ ଏହି,

ଅରାବପ୍ୟୁଚିତଂ କାର୍ଯ୍ୟମାତିଥ୍ୟଂ ଗୃହମାଗତେ ।
ଛେତ୍ତୁଃ ପାର୍ଶ୍ୱଗତାଂ ଛାୟାଂ ନୋପସଂହରତେ ଦ୍ରୁମଃ ॥

ଗୃହକୁ ଆଗତ ଶତ୍ରୁର ମଧ୍ୟ ଉପଯୁକ୍ତ ଆତିଥ୍ୟ କରିବ ; ଛେଦନ କର୍ତ୍ତାର ସମୀପବର୍ତ୍ତୀ ଛାୟାକୁ ବୃକ୍ଷ ଅପହରଣ କରେ ନାହିଁ । ଯଦି ବା ଧନ ନ ଥାଏ ତେବେ ପ୍ରିୟବାକ୍ୟରେ ମଧ୍ୟ ଅତିଥିପୂଜା କରିବ, ଯେହେତୁର୍,

ତୃଣାନି ଭୂମିରୁଦକଂ ବାକ୍ ଚତୁର୍ଥୀ ଚ ସୂନୃତା ।
ଏତାନ୍ୟପି ସତାଂ ଗେହେ ନୋଚ୍ଛିଦ୍ୟନ୍ତେ କଦାଚନ ।

ଆସନ, ସ୍ଥାନ, ଜଳ, ପ୍ରିୟ × × ଏ ସକଳ ସାଧୁଲୋକଙ୍କ ଘରେ କଦାପି ଅପ୍ରାପ୍ତ ହୁଏ ନାହିଁ ।

ନ × ଦୟାଂ କୁର୍ବନ୍ତି ସାଧବଃ ।
ନ ହି ସଂହରତେ ଜ୍ୟୋତ୍ସ୍ନାଂ ଚନ୍ଦ୍ରଶ୍ଚାଣ୍ଡାଲବେଶ୍ମନି ।

ଏବଂଚ ସାଧୁଲୋକମାନେ ନିର୍ଗୁଣ ପ୍ରାଣିଠାରେ ସୁଦ୍ଧା ଦୟା କରନ୍ତି । ଦେଖ, ଚନ୍ଦ୍ର ଚଣ୍ଡାଳ ଗୃହରେ ପଡିତ ଜ୍ୟୋତ୍ସ୍ନାକୁ ଅପହରଣ କରନ୍ତି ନାହିଁ ।

ବାଲୋ ବା ଯଦି ବା ବୃଦ୍ଧୋ ଯୁବା ବା ଗୃହମାଗତଃ ।
ତସ୍ୟ ପୂଜା ବିଧାତବ୍ୟା ସର୍ବସ୍ୟାଭ୍ୟାଗତୋ ଗୁରୁଃ ॥

ଅଥଚ ବାଳକ କିମ୍ବା ବୃଦ୍ଧ ଅଥବା ଯୁବା ଯେ କେହି ଅତିଥିରୂପେ ଗୃହକୁ ଆଗମନ କରିବ ତାହାର ପୂଜା କରିବା ଉଚିତ ଅଟଇ, କାରଣ କି, ଅଭ୍ୟାଗତ ସମସ୍ତଙ୍କର ଗୁରୁ ଅଟନ୍ତି ।

ଗୁରୁରଗ୍ନି ର୍ଦ୍ୱିଜାତୀନାଂ ବର୍ଣ୍ଣାନାଂ ବ୍ରାହ୍ମଣୋ ଗୁରୁଃ ।
ପତିରେକୋ ଗୁରୁଃ ସ୍ତ୍ରୀଣାଂ ସର୍ବତ୍ରାଭ୍ୟାଗତୋ ଗୁରୁଃ ॥

ଅପର ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟର ଅଗ୍ନି × × ବୈଶ୍ୟ ଶୂଦ୍ରର ବ୍ରାହ୍ମଣ ଗୁରୁ, ସ୍ତ୍ରୀଲୋକଙ୍କର × × ଗୁରୁ ।

ଅତିଥି ର୍ୟସ୍ୟ ଭଗ୍ନାଶେ × × ×
ସ ତସ୍ମୈ ଦୁଷ୍କୃତଂ ଦତ୍ତ୍ୱା × × ×

ଏବଂ ଅତିଥି ନିରାଶ ହୋଇ ଯାହା ଗୃହରୁ ଫେରି ଯାଏ, ସେ ଆପଣା ପାପ ତାକୁ ଦେଇ ତାହା ପୁଣ୍ୟ ଘେନି ଯାଏ ।

ଉତ୍ତମସ୍ୟାପି ବର୍ଣ୍ଣସ୍ୟ ନୀଚୋଽପି ଗୃହମାଗତଃ ।
ପୂଜନୀୟୋ ଯଥାଯୋଗ୍ୟଂ ସର୍ବଦେବମୟୋଽତିଥିଃ ॥

ଆଉ ଅଧମ ବର୍ଣ୍ଣ ମଧ୍ୟ ଯେବେ ଉତ୍ତମ ବର୍ଣ୍ଣର ଘରକୁ ଆସେ, ତେବେ ସେ ଯଥୋପଯୁକ୍ତ ପୂଜ୍ୟ ହୁଏ, କାହିଁକି, ଅତିଥି ସର୍ବଦେବସ୍ୱରୂପ । ଗୃଧ୍ର କହିଲା, ବିଡାଲ ମାଂସ ରୁଚି, ଏଠାରେ ପକ୍ଷିମାନଙ୍କର ଛୁଆ ସବୁ ଅଛନ୍ତି, ସେଥିଲାଗି ଆମ୍ଭେ ଏ ପ୍ରକାର କହିଲୁଁ । ବିଡାଲ ତାହା ଶୁଣି ଭୂମିସ୍ପର୍ଶ ଏବଂ ଦୁଇ କର୍ଣ୍ଣ ସ୍ପର୍ଶ କରି କହୁଅଛି, ଆମ୍ଭେ ଧର୍ମଶାସ୍ତ୍ର ଶ୍ରବଣ କରି ବୈରାଗ୍ୟରେ ଦୁଷ୍କର ଚାନ୍ଦ୍ରାୟଣ ବ୍ରତ ଆରମ୍ଭ କରିଅଛୁଁ; ଯେହେତୁରୁ ଅହିଂସା ପରମ ଧର୍ମ ଏଥିରେ ପରସ୍ପର ବିବଦମାନ ସକଳ ଧର୍ମଶାସ୍ତ୍ରର ସମ୍ମତ ଅଛି; କାରଣ କି ।

ସର୍ବହିଂସା ନିବୃତ୍ତା ଯେ ନରାଃ × × ସହାଶ୍ଚ ଯେ ।
ସର୍ବାସ୍ୟାଶ୍ରୟଭୂତାଶ୍ଚ ତେ × × ର୍ଗଗାମିନଃ ॥

ଯେଉଁ ମନୁଷ୍ୟମାନେ ସକଳ ହିଂସାରୁ ନିବୃତ୍ତ ହୁଅନ୍ତି, ଆଉ ଯେଉଁ ଲୋକେ ସକଳ ସହନ୍ତି, ପୁଣି ଯେଉଁମାନେ ଅନେକଙ୍କର ଆଶ୍ରୟ ହୁଅନ୍ତି, ସେହି ମନୁଷ୍ୟମାନେ ସ୍ୱର୍ଗଗାମୀ ହୁଅନ୍ତି ।

ଏକ ଏବ ସୁହୃଦ୍ଧର୍ମୋ ନିଧନେଽପ୍ୟନୁଯାତି ଯଃ ।
ଶରୀରେଣ ସମଂ ନାଶଂ ସର୍ବମନ୍ୟତ୍ତୁ ଗଚ୍ଛତି ॥

ଏବଂ ଧର୍ମ କେବଳ ଏକ ମିତ୍ର ହେଲେହେଁ ଯେ ସଙ୍ଗରେ ଯାଏ; ଅନ୍ୟ ସବୁ ଶରୀର ସହିତ ନାଶକୁ ପାଏ ।

ଯୋଽତ୍ତି ଯସ୍ୟ ଯଦା ମାଂସ ମୁଭୟୋଃ ପଶ୍ୟତାନ୍ତରଂ ।
ଏକସ୍ୟ କ୍ଷଣିକା ପ୍ରୀତିରନ୍ୟଃ ପ୍ରାଣୈର୍ବିମୁଚ୍ୟତେ ।

ଅପର ଯେ ଯାହାର ମାଂସ ଖାଏ; ଏ ଦୁହିଙ୍କର ଅନ୍ତର ଦେଖ, ଜଣକର କ୍ଷଣମାତ୍ର ତୃପ୍ତି ହୁଏ, ଆଉ ଜଣକ ପ୍ରାଣରେ ନଷ୍ଟ ହୁଏ ।

× × ମିତି ଯଦ୍ଦୁଃଖଂ ପୁରୁଷସ୍ୟୋପଜାୟତେ ।
× × × ନେନ ପରେଣ ପରିବର୍ତ୍ତିତୁଂ ॥

ଅଥବା × × × ଦୁଃଖ ଲୋକର ହୁଏ, ସେ ଦୁଃଖ ଅନୁମାନ × × × ନାହିଁ ।

× × × ଶାକେନାପି ପ୍ରପୂର୍ଯତେ ।
ଅସ୍ୟ ଦଗ୍ଧୋଦରସ୍ୟାର୍ଥେ କଃ କୁର୍ଯାତ୍ପାତକଂ ମହତ୍ ॥

ପୁନର୍ବାର ଶୁଣ, ସ୍ୱଚ୍ଛନ୍ଦରେ ବନରେ ଜନ୍ମେ ଯେଉଁ ଶାକ ତହିଁରେ ସୁଦ୍ଧା ଉଦର ପୂରଣ ହୁଏ ତେବେ ଏହି ନିଆଁ ଲଗା ପେଟ ନିମନ୍ତେ କିଏ ମହାପାପ କରେ ?

ସେ ମାର୍ଜାର ଏହି ପ୍ରକାର ବିଶ୍ୱାସ ଜନ୍ମାଇ ବୃକ୍ଷ କୋଟରରେ ରହିଲା । ଅନନ୍ତର କିଛି ଦିନ ଗଲାରୁ ପକ୍ଷିଶାବକମାନଙ୍କୁ ଧରି ଆପଣା କୋଟର ମଧ୍ୟକୁ ଆଣି ପ୍ରତ୍ୟହ ଖାଏ । ଯେଉଁ ପକ୍ଷିମାନଙ୍କ ସନ୍ତାନକୁ ଖାଇଲା ସେ ସବୁ ଶୋକାର୍ତ୍ତ ହୋଇ ରୋଦନ କରି କରି ଇତସ୍ତତଃ ପଞ୍ଚରିଲେ । ବିଡାଲ ତାହା ଜାଣି କୋଟରରୁ ବାହାରି ପଳାଇଲା, ତବାଦ ଇତସ୍ତତଃ ଅନ୍ୱେଷଣ କରିବାରେ ପକ୍ଷି

ପରି ଆପଣ ୨ ଛ ଆମାନଙ୍କର ଅସ୍ଥି ପାଇଲେ । ସେଠାରୁ ସେମାନେ କହିଲେ, ଏହି ଜରଦ୍‌ଗବ ଆମ୍ଭ ଛୁଆମାନଙ୍କୁ ଖାଇଅଛି, ଇହା ନିଶ୍ଚୟ କରି ପକ୍ଷିମାନେ ଗୃଧ୍ରକୁ ମାରି ପକାଇଲେ । ଅତଏବ ଆମ୍ଭେ ବୋଲୁଁ, ଅଜ୍ଞାତକୁଳ-ଶୀଳକୁ ବାସଦେବା ଉଚିତ ନୁହେଁ ।

## ୬ । ସୀତାଙ୍କ ବିବରଣ

ଏହିକଥା ସ୍ଥିର ହେଲାରୁ, ରାଜାଙ୍କାରେ ସୁମନ୍ତ୍ର ରାଜଭଣ୍ଡାରରୁ ଉତ୍ତମ ପଟ୍ଟବସ୍ତ୍ର ଓ ସ୍ୱର୍ଣ୍ଣାଳଙ୍କାର ଆଣିଦେଲା । ଜାନକୀ ସେଇ ବେଶ ଭୂଷାରେ ଭୂଷିତା ହୋଇ ତ୍ରିଭୁବନମୋହିନୀ ରୂପ ଧାରଣକରି ରାଜାଙ୍କ ଚରଣରେ ଦଣ୍ଡପ୍ରଣାମ କଲେ । ତଦ୍ଧାଦ କୃତାଞ୍ଜଳିପୁଟ ହୋଇ କୌଶଲ୍ୟା ରାଣୀଙ୍କ ସମ୍ମୁଖରେ ଦଣ୍ଡାୟମାନା ହେଲେ । କୌଶଲ୍ୟା ରାଣୀ କହିଲେ ସୀତେ ! ତୁମ୍ଭେ ରାଜକନ୍ୟା ଓ ରାଜବଧୂ, ତୁମ୍ଭର ଆଚରଣ ଦେଖି ତ୍ରିଭୁବନ ଚଳିବ; ଅତଏବ ତୁମ୍ଭେ ସର୍ବଦା ସାବଧାନରେ ରହିବ ଏବଂ ସ୍ୱାମୀ ସେବା କରିବ । ସ୍ୱାମୀ ନିର୍ଦ୍ଧନ ବ ଧନବାନ୍ ହେଉ, ସ୍ୱାମୀ ବିନା ସ୍ତ୍ରୀ ଲୋକଙ୍କର ଉତ୍ତମ ଧନ ଆଉ ନାହିଁ ସୀତା କହିଲେ ଜନନି ! ଆମ୍ଭକୁ ଅନ୍ୟ ସ୍ତ୍ରୀ × × ନାହିଁ, ସ୍ୱାମୀଙ୍କ ସେବା ଆମ୍ଭେ ପରମ ଧର୍ମ × × ବା କରିବାକୁ ପାଇବୁଁ ଏହି ଆମ୍ଭର × × × × ବନଗମନରେ ବ୍ୟଗ୍ର, ଆପଣ ଆଶୀର୍ବାଦ କରନ୍ତୁ × × ହେଉ । କୌଶଲ୍ୟା କହିଲେ ତୁମ୍ଭସମାନ ବଧୂ ଏହି ନବୀନ ବୟସରେ ଅରଣ୍ୟକୁ ଯିବ ଏଥିରେ ଆମ୍ଭର ଆତ୍ୟନ୍ତିକ ଖେଦ ଜନ୍ମୁଅଛି । ତଦନନ୍ତର କୌଶଲ୍ୟା ରାଣୀ ରାମଙ୍କୁ ସମ୍ବୋଧନ କରି କହିଲେ ଦେଖ ରାମ ! ଜାନକୀ ଅତିସୁନ୍ଦରୀ, ବନ ଅତିଭୟାନକ; ତୁମ୍ଭେ ତାଙ୍କୁ ଯେନ ମୁନିଙ୍କ ଆଶ୍ରମରେ ସତତ ସାବଧାନ ଥିବ । ସୁମିତ୍ରା କହିଲେ, ଲକ୍ଷ୍ମଣ ! ତୁମ୍ଭେ ରାମଙ୍କୁ ଦେବତା ନ୍ୟାୟ ଜ୍ଞାନ କରିବ, ଶାସ୍ତ୍ରରେ କହେ ଜ୍ୟେଷ୍ଠ ଭ୍ରାତା ପିତୃ ସମାନ, ଅତଏବ ସର୍ବଦା ତାଙ୍କ ଆଜ୍ଞାକାରୀ ହୋଇଥିବ, ଏବଂ ସୀତାଙ୍କୁ ମାତାଠାରୁ ଅଧିକ ଜ୍ଞାନ କରିବ । ରାମ କହିଲେ ମାତଃ ! ତୁମ୍ଭେ ଆଶୀର୍ବାଦ କର, ଆମ୍ଭେ ତିନି ଜଣ ଯେବେ ଏକତ୍ର ଥିବୁଁ, ତେବେ ତ୍ରିଭୁବନରେ ଆମ୍ଭେମାନେ କାହାରିକୁ ମୁକା ଶଙ୍କା କରିବୁଁ ନାହିଁ । ତଦନନ୍ତର ରାମ ଆଉ ସମସ୍ତ ରାଜମହିଷୀଙ୍କି ବନ୍ଦନା କଲେ ଏବଂ କୈକେୟୀଙ୍କି ପ୍ରଣାମ କରି କହିଲେ, ମା ! ଆଶୀର୍ବାଦ କର, ଆମ୍ଭେ ବନ ପ୍ରସ୍ଥାନ କରୁ । କୈକେୟୀ କୌଣସି ଉତ୍ତର ଦେଲେ ନାହିଁ । ଅନନ୍ତର ରାମ ମାତାଙ୍କୁ ପିତାଙ୍କ ଚରଣରେ ସମର୍ପଣ କରି କହିଲେ ଆମ୍ଭେ ଯେଉଁ ପର୍ଯ୍ୟନ୍ତେ ପ୍ରତ୍ୟାଗମନ ନ

କରିବୁଁ ଆପଣ ଆମ୍ଭ ମାତାଙ୍କୁ ପାଳଣ କରିବ । ରାଜା କହିଲେ ଆମ୍ଭେ ଯେବେ ବଞ୍ଚିଥିବୁଁ ତେବେ ତାହା ଅବଶ୍ୟ କରିବୁଁ; ମାତ୍ର ତୁମ୍ଭେ ବନକୁ ଯାଉ-ଅଛ, ଆମ୍ଭେ ତୁମ୍ଭଙ୍କୁ ଏକ ଆଜ୍ଞା କରିବୁଁ, ତୁମ୍ଭେ ତାହା ଲଙ୍ଘନ କରିବ ନାହିଁ, ତୁମ୍ଭେ ଦିନ ଦିନ ରଥାରୋହଣରେ ଗମନ କର । ଏହି କଥାରେ ସୁମନ୍ତ୍ର ରଥ ଆଣିଲେ । ରାମ, ଲକ୍ଷ୍ମଣ ଓ ସୀତା ରଥାରୋହଣରେ ଯାତ୍ରା କଲେ ।

ରାମ ଯାତ୍ରା କଲେ ଅଯୋଧ୍ୟା ନଗରସ୍ଥ ସକଳ ଲୋକେ ରଥର ପଛେ ପଛେ ଗଲେ; ଏବଂ ରାଜା ଦଶରଥ ଯଦିବା ଉତ୍ଥାନ ଶକ୍ତି ରହିତ ତଥାପି ପୁତ୍ରଙ୍କୁ ଦେଖିବା କାରଣ ବାହାରେ ଆସି ଛିଡ଼ା ହେଲେ । ତାହା ରାମ ସାରଥିକି କହିଲେ, ହେ ରଥେ ! ଆମ୍ଭେ ପିତାଙ୍କ ଦୁର୍ଗତି ଆଉ ଦେଖି ପାରିବୁ ନାହିଁ, ତୁମ୍ଭେ ଶୀଘ୍ର ରଥ ଚଳାଅ । ଏକଥାରେ ସାରଥି ବେଗରେ ରଥ ଚଳାଇଲା, ତହିଁରେ କ୍ଷଣକ ମଧ୍ୟରେ ରଥ ଦୃଷ୍ଟିର ଅଗୋଚର ହେଲା । ସେହି ସମୟରେ ରାଜା ଅଚେତନ ହୋଇ ଭୂମିରେ ପଡ଼ିଲେ, ଏବଂ ଆହାର ନିଦ୍ରା ପରିତ୍ୟାଗ କରି କେବଳ ରାମ ଚିନ୍ତା କଲେ । ରାମଙ୍କ ବନବାସରେ ଆପାମର × × ଲୋକେ ଅସୁଖୀ ହେଲେ ।

ଯେତେ × × ଲୋକେ ଏହିରୂପ ଶୋକ ସାଗରରେ × × ଆରୋହଣରେ ରାମଚନ୍ଦ୍ର ତମସା ନଦୀ କୂଳରେ × × × ସେଠାରେ ସ୍ନାନ ଓ ଫଳାହାର କଲେ । ତଦାଦି ଲକ୍ଷ୍ମଣ ଅନେକ ବୃକ୍ଷର ପତ୍ର ବିଛାଇ ଦେଲେ ସେଥିରେ ରାମ ଓ ସୀତା ଶୟନ କଲେ । ଲକ୍ଷ୍ମଣ ଧନୁକ ବାଣ ହସ୍ତେ ଘେନି ଜାଗରିତ ରହିଲେ ପରଦିନ ପ୍ରାତଃ ସ୍ନାନାଦି କରି ତମସା ନଦୀ ଓ ତଦାଦି ଗୋମତୀ ନଦୀ ପାରି ହୋଇ ଇକ୍ଷ୍ୱାକୁଙ୍କ ଦେଶ ଦେଇ ଗଙ୍ଗା ତୀରସ୍ଥ କୋଶଳ ରାଜ୍ୟରେ ଉପସ୍ଥିତ ହୋଇ ଜାହ୍ନବୀ କୂଳ ବୃକ୍ଷ ମୂଳରେ ବସିଲେ । ସାରଥି ଅଶ୍ୱ ଚରାଇଲା । ଅନନ୍ତର ଦିବାବସାନରେ ପୁନର୍ବାର ଶକଟାରୋହଣ କରି ପରଦିନ, ଶୃଙ୍ଗବେର ନଗରରେ ଗୁହକ ଚଣ୍ଡାଳ ନାମକ ତାଙ୍କର ଜଣେ ବନ୍ଧୁ ଗୃହକୁ ଯାଇ ସୁମନ୍ତ୍ର ସାରଥିକୁ ମେଲାଣି କଲେ । ଗୁହକ ଚଣ୍ଡାଳ ତାଙ୍କୁ ରଖିବା ନିମନ୍ତେ ଅନେକ ଯତ୍ନ କଲା, ମାତ୍ର ତହିଁରେ ସମ୍ମତ ନ ହୋଇ ଆରଦିନ ଗଙ୍ଗା ପାର ହୋଇ ଅଗ୍ରେ ଆପେ, ମଧ୍ୟରେ ସୀତା, ପଛରେ ଲକ୍ଷ୍ମଣ, ଏହିରୂପେ ତିନି ଜଣ ପଦବ୍ରଜରେ ଯାଇ ଗଙ୍ଗା ଯମୁନାଙ୍କ ମଧ୍ୟସ୍ଥଳରେ ଭରଦ୍ୱାଜ ମୁନିଙ୍କ ଆଶ୍ରମରେ ଉପସ୍ଥିତ ହେଲେ । ଭରଦ୍ୱାଜ ମୁନି ସେମାନଙ୍କ ବନବାସ କଥା ଶୁଣି ବହୁତର ବିଳାପ କଲେ, ଏବଂ ସେମାନଙ୍କର ସେହି ସ୍ଥାନରେ ଅବସ୍ଥିତ

କାରଣ ଅନେକ ଆକାଙ୍କ୍ଷନ କଲେ । ମାତ୍ର ଅଯୋଧ୍ୟା ନଗର ସେଠାରୁ ଅଧିକ ଦୂର ନୁହେଁ , ସେଠାରେ ରହିଲେ କଜାଣି ଭରତ ତାଙ୍କୁ ନେବାକୁ ଆସିବେ, ଏହି ଆଶଙ୍କାରେ ସେଠାରେ ଅବସ୍ଥିତି ନ କରି ଯମୁନା ପାର ହୋଇ ସୀତାଙ୍କୁ ମଧ୍ୟରେ ଘେନି ରାମ ଲକ୍ଷ୍ମଣ ଗମନ କଲେ । ସୀତା କେତେବେଳେ ପଥ ଭ୍ରମଣ କରନ୍ତି ନାହିଁ ଗମନରେ ଅତ୍ୟନ୍ତ କ୍ଲାନ୍ତ ହେଲେ ; ଏବଂ ଅଗ୍ନିରେ କ୍ଷୀରର ପୁତ୍ତଳୀ ଯେମନ୍ତ ଗଳିତ ହୁଏ, ସୂର୍ଯ୍ୟ କିରଣରେ ତାଙ୍କର କୋମଳ ଶରୀର ତଦ୍ରୂପ ହେଲା । ଅନନ୍ତର ଯମୁନା ପାର ହୋଇ ଚିତ୍ରକୂଟ ଅରଣ୍ୟ ମଧ୍ୟରେ ପ୍ରବେଶ ହୋଇ ସେହିଠାରେ ପର୍ଣ୍ଣଶାଳା ନିର୍ମାଣ କରି ରହିଲେ ।

ଏଥି ମଧ୍ୟରେ ସୁମନ୍ତ୍ର ରାମଙ୍କୁ ଶୃଙ୍ଗବେର ପୁରରେ ରଖି ଅଯୋଧ୍ୟାକୁ ପ୍ରତ୍ୟାଗତ ହେଲେ । ରାଜା ଦଶରଥ ପୁତ୍ର ଶୋକରେ ପୂର୍ବରୁ ଆହାର ନିଦ୍ରା ବର୍ଜିତ ବର୍ତ୍ତମାନ ସେ ସମ୍ବାଦରେ ଆହୁରି ଶୋକାକୁଳ ହୋଇ ଶଯ୍ୟାଗତ ହେଲେ, ଏବଂ କହିଲେ ଆମ୍ଭେ ସରଯୂତୀରକୁ ଥରେ ମୃଗୟା ନିମନ୍ତେ ଯାଇ-ଥିଲୁଁ । ସେଇ ସମୟରେ ଅନ୍ଧକ ମୁନିଙ୍କ ପୁତ୍ର ନଦୀରୁ କଳଶରେ ଜଳ ନେଇ ଯାଉଥିଲେ । ଆମ୍ଭେ ତାହା × × ବୋଧ କରି ତାଙ୍କୁ ନଷ୍ଟ କଲୁଁ । ସେଠାରୁ ସେଇ × × × ରେ ନେଇ ଦେଲାରୁ ମୁନି ସରଯୂ ନଦୀ ତୀର × × × ଶୋକରେ ପ୍ରାଣତ୍ୟାଗ ସମୟରେ ଆମ୍ଭଙ୍କୁ ଅଭିଶାପ × × × × × ଯେମନ୍ତ ପୁତ୍ର ଶୋକରେ ପ୍ରାଣତ୍ୟାଗ କଲୁଁ ତୁମ୍ଭଙ୍କୁ ସୁଦ୍ଧା ସେହି ପ୍ରକାର ପୁତ୍ର ଶୋକ ପ୍ରାପ୍ତ ହେବ । ଅତଏବ ସେ କଥା କେତେବେଳେ ବ୍ୟର୍ଥ ହେବ ନାହିଁ, ଆଜ ନିଶ୍ଚେ ରାମଙ୍କ ଶୋକରେ ଆମ୍ଭର ପ୍ରାଣ ତ୍ୟାଗ ହେବ । ଏହି କଥା କହୁ ୨ ତାଙ୍କର ହିମାଙ୍ଗ ହେଲା ଏବଂ ସେହି ରାତ୍ରିରେ ରାଜା ଦଶରଥ ପ୍ରାଣତ୍ୟାଗ କଲେ ।

ଏହି ଅତର୍କିତ ଘଟଣାରେ ସକଳ ରାଜମହିଷୀ, ବିଶେଷତଃ କୌଶଲ୍ୟା ଦେବୀ, ଅଧିକ ମନସ୍ତାପ ପାଇଲେ । ଅନନ୍ତର, ପୁତ୍ର ନିକଟରେ ନାହିଁ ରାଜାଙ୍କ ମୁଖାନଳ କିଏ କରିବ । ଏହି କାରଣ ବଶିଷ୍ଠ ମୁନି ବ୍ୟବସ୍ଥା ଦେଲେ ଯେ ତାଙ୍କର ଶବ ତୈଳ ମଧ୍ୟରେ ରଖି ହସ୍ତିନା ନଗରରୁ ଭରତ ଶତ୍ରୁଘ୍ନଙ୍କୁ ଆନୟନ କରାଯାଉ, ଭରତ ଆସି ପିତାଙ୍କ ମୁଖାଗ୍ନି କରିବେ ଏହି ପରାମର୍ଶ ଅନୁସାରେ ତେତିକବେଳେ ହସ୍ତିନା ନଗରକୁ ଦୂତ ପଠିଯା ଗଲା । ଦୂତଗଣ ରଥଯୋଗରେ ପଞ୍ଚମ ଦିବସରେ ସେଠାରେ ଉପନୀତ ହୋଇ ଭରତ ଓ ଶତ୍ରୁଘ୍ନଙ୍କୁ ରଥାରୋହଣପୂର୍ବକ ଅଯୋଧ୍ୟାକୁ ଘେନି ଆସିଲେ । ଭରତ ଓ

ଶତ୍ରୁଘ୍ନ ଦୁଇ ଭାଇ ଅଯୋଧ୍ୟାକୁ ଆସି ପିତାଙ୍କ ମୃତ୍ୟୁ ସମ୍ବାଦରେ ଅତ୍ୟନ୍ତ ଶୋକାକୁଳ ହେଲେ, ଏବଂ ରାମଙ୍କ ବନବାସର ମୂଳ ଜାଣି ମାତାଙ୍କୁ ଅନେକ-ରୂପେ ଭର୍ତ୍ସନା କଲେ । ତଦାଦ ସରଯୂ ତୀରରେ ପିତାଙ୍କ ମୁଖାଗ୍ନି କରି ତାଙ୍କର ଅନ୍ତ୍ୟେଷ୍ଟିକ୍ରିୟା ଉପଲକ୍ଷରେ ଅନେକ ଧନ, ଅନ୍ନ, ହସ୍ତୀ ଓ ଗୋରୁ ଦାନ କଲେ । ଏହିରୂପେ ଦଶରଥଙ୍କ ଶ୍ରାଦ୍ଧକ୍ରିୟା ହେଲା ବାଦ ମନ୍ତ୍ରିଗଣ ଭରତଙ୍କୁ ସିଂହାସନାରୂଢ଼ ହେବାକୁ କହିଲେ । ମାତ୍ର ଭରତ ଉତ୍ତର କଲେ ରାଜା ବର୍ତ୍ତମାନେ ସେବକର କର୍ତ୍ତବ୍ୟ ନୁହେ ଯେ ରାଜ୍ୟଭାର ଗ୍ରହଣ କରିବ । ରାମ ଏ ରାଜ୍ୟର ଭୂପତି, ଆମ୍ଭେ ତାଙ୍କର କିଙ୍କର ; ଅତଏବ ତାଙ୍କ ରାଜ୍ୟ ଆମ୍ଭଙ୍କୁ ପ୍ରବର୍ତ୍ତେ ନାହିଁ । ବିଶେଷ, ଆମ୍ଭ ମାତା କର୍ତ୍ତୃକ ତାଙ୍କର ବନବାସ ହୋଇଅଛି; ଅତଏବ ଆମ୍ଭେ କେତେବେଳ ସିଂହାସନରେ ଉପବେଶନ କରି-ପାରିବୁ ନାହିଁ । ଆମ୍ଭେ ଓ ଶତ୍ରୁଘ୍ନ ଦୁହେଁ ତାଙ୍କ ଅନ୍ୱେଷଣରେ ଯିବୁଁ ଏବଂ ତାଙ୍କ ଚରଣ ଧାରଣପୂର୍ବକ ଯେଉଁରୂପେ ପାରୁଁ ମାତାଙ୍କ ଦୋଷ ପ୍ରକା-ଶାନ୍ତ ଆମ୍ଭମାନଙ୍କ ପ୍ରତି ତାଙ୍କ କୋଧ ଶାନ୍ତ କରି ତାଙ୍କୁ ଆଣି ରାଜସିଂହାସନରେ ବସାଇବୁଁ ।

---

## ପ୍ରୟାଗ

ପୁରାଣାଦି × × ମହାତ୍ମ୍ୟ ବିଷୟରେ ପ୍ରଚୁର ପ୍ରଶଂସା ଅଛି; ଯଥା, ପଦ୍ମପୁରାଣରେ ଲେଖା ଅଛି,

ତତଃ ପୁଣ୍ୟତମଂ ନାସ୍ତି ତ୍ରିଷୁ ଲୋକେଷୁ ଭୂପତେ ।
ପ୍ରୟାଗଂ ସର୍ବତୀର୍ଥେଭ୍ୟଃ ପ୍ରବଦନ୍ତ୍ୟଧିକଂ ଦ୍ୱିଜାଃ
ଶ୍ରବଣାତ୍ତସ୍ୟ ତୀର୍ଥସ୍ୟ ନାମସଂକୀର୍ତ୍ତନାଦପି ।
ମୃତ୍ତିକାଲଭନାଦ୍ୱାପି ସର୍ବପାପୈଃ ପ୍ରମୁଚ୍ୟତେ ।

ଅର୍ଥାତ୍ ବ୍ରାହ୍ମଣମାନେ କହନ୍ତି ସକଳ ତୀର୍ଥଠାରୁ ପ୍ରୟାଗ ଶ୍ରେଷ୍ଠ; ହେ ଭୂପତେ, ତାହାଠାରୁ ପୁଣ୍ୟତମ ତୀର୍ଥ ତ୍ରିଲୋକରେ ଆଉ ନାହିଁ । ତାହାର ନାମ ଉଚ୍ଚାରଣ ଅଥବା ନାମ ଶ୍ରବଣ କି ମୃତ୍ତିକାସ୍ପର୍ଶ କଲାମାତ୍ରେ ସର୍ବ ପାପରୁ ମୁକ୍ତ ହିଲେ । ଏହି ପ୍ରସିଦ୍ଧ ତୀର୍ଥ କଲିକତାଠାରୁ ଇଂରେଜୀ ୪୯୦ କ୍ରୋଶ ଅନ୍ତର । ଯେଉଁ ସ୍ଥାନରେ ଗଙ୍ଗା ଓ ଯମୁନା ନଦୀ ସଂମିଳିତ ହୋଇ-ଅଛନ୍ତି ସେହି ଏହି ସ୍ଥାନରେ ପ୍ରୟାଗର ସ୍ଥିତି । ଶାସ୍ତ୍ରରେ ଲେଖେ ସରସ୍ୱତୀ

ନଦୀ ମଧ୍ୟ ଏହି ସ୍ଥାନରେ ଆସି ମିଳେ । ସେଇ ହେତୁରୁ ଏ ତୀର୍ଥର ନାମ "ମୁକ୍ତ ତ୍ରିବେଣୀ" ଓ ସଂକ୍ଷେପରେ ତ୍ରିବେଣୀ ହୋଇଅଛି; ମାତ୍ର ସରସ୍ୱତୀର ମିଳଣ ପ୍ରତ୍ୟକ୍ଷ ନୁହଇ । ଗଙ୍ଗା ଓ ଯମୁନା ନଦୀର ମଧ୍ୟଗତ ସ୍ଥାନର ନାମ ଦୋୟାବ ଅର୍ଥାତ୍ ସଂସ୍କୃତରେ ଦ୍ୱିଅପ୍; ପୁଣି ସେ ଦୋୟାବ ଶେଷ ଭାଗରେ ଯେଉଁଠାରେ ଉକ୍ତ ନଦୀ ଦ୍ୱୟ ସଂମିଳିତ ହୁଅନ୍ତି ସେଠାରେ ଗୋଟାଏ ନଗର ଅଛି, ତାହା ହିନ୍ଦୁ ମଣ୍ଡଳୀ ମଧ୍ୟରେ ପ୍ରୟାଗ ନାମରେ ବିଖ୍ୟାତ । ମୁଗଲ-ସମ୍ରାଟ ଆକବର ବାଦଶାହ ସେହି ରମ୍ୟନଗର ମଧ୍ୟରେ ଏକ ସୁନ୍ଦର ଦୁର୍ଗ ନିର୍ମାଣ କରି ନଗରର ନାମ ବଦଳ କରି ଅଲହବାଦ ନାମରେ ବିଖ୍ୟାତ କରିଥିଲେ । ପୁନଶ୍ଚ ଇଙ୍ଗରେଜ ଓ ମୁସଲମାନମାନଙ୍କ ମଧ୍ୟରେ ଅଦ୍ୟାବଧି ସେଇ ନାମ ଚଲେ । ଦୁର୍ଗର ଯେଉଂ ଭାଗ ପ୍ରୟାଗ ତୀର୍ଥ ସମ୍ମୁଖବର୍ତ୍ତୀ ଅଟେ ତାହା ଉପରେ ବାୟୁ ସେବନାର୍ଥେ ଗୋଟାଏ ମନୋହର ଘର ଅଛି । ତାହାର ଛାତ ୪୦ ସ୍ତମ୍ଭ ଉପରେ ସ୍ଥାପିତ, ଏ ହେତୁରୁ ସେ ଗୃହର ନାମ ୪୦ ଶତୀନ୍ ଅର୍ଥାତ୍ ୪୦ ସ୍ତମ୍ଭ ହୋଇଅଛି । ଉକ୍ତ ବାୟୁ ସେବନାର୍ଥ ଘର ଅତି ରମ୍ୟ ଆଉ ପୂର୍ବରେ ମୁଗଲସମ୍ରାଟମାନେ ଅନେକେ ସେଠାରେ ବାସ କରିଥାନ୍ତି ।

ଯଦ୍ୟପି ଅନେକ ମୁଗଲ ସମ୍ରାଟମାନେ ଅତିରମ୍ୟ ବୋଧ କରି ପ୍ରୟାଗ ନଗରରେ ବାସ କରିଥାନ୍ତି ତଥାପି ଏ ନଗରରେ ବୃହତ୍ ଅଟ୍ଟାଳିକା ଇତ୍ୟାଦି ଅଧିକ ନାହିଁ ଓ ଧନବାନ୍ ମୁସଲମାନ ପ୍ରଜା × । ନଗରସ୍ଥ ଲୋକଙ୍କ ଅଧିକାଂଶ ହିନ୍ଦୁ ତୀର୍ଥ ଯାତ୍ରି × ଆଉ ଅପରାପର ପ୍ରଦେଶର ମୁସଲ୍ମାନ ସେ × × ଭିକ୍ଷୁକ ଆବାସ ଏହି ନାମ ଦେଇଅଛନ୍ତି ।

ଯମୁନା ନଦୀ ତଟରେ କେତେଗୋଟା ସୁନ୍ଦର ପାହାଚ ଅଛି, ମାତ୍ର ତତ୍ତ୍ୱାବଧାରକ ନ ଥିବାରୁ ବର୍ତ୍ତମାନ ତାହା ଭଗ୍ନ ଦଶା ପ୍ରାପ୍ତ ହୋଇଅଛି; ଏବଂ ତଦ୍ୱାରା ଯିବା ଆସିବାର କ୍ଳେଶକର ହେଉଅଛି ।

ପ୍ରୟାଗର ପ୍ରସିଦ୍ଧ ଅଟ୍ଟାଳିକା ମଧ୍ୟରେ "ଜମାମସଜିତ" ନାମକ ଯାବନିକ ଭଜନ ସ୍ଥାନ ସର୍ବାଗ୍ରଗଣ୍ୟ । ଯମୁନା ନଦୀ ତଟରେ ବୃକ୍ଷ ଶ୍ରେଣୀ ସୁଶୋଭିତ ଉକ୍ତ ମସ୍ଜିଦ ଅତ୍ୟନ୍ତ ମନୋହର ବୋଧହୁଏ । ସେଠାରୁ କେତେକ ଦୂରରେ ରାଜକୁମାର ଖୋସରୋଙ୍କ ଆଜ୍ଞାରେ ନିର୍ମିତ ଗୋଟାଏ ପାନ୍ଥଶାଳା ଅର୍ଥାତ୍ ଧର୍ମଶାଳା ଓ ବଗିଚା ଅଛି । ସେଇ ବଗିଚା ଦୁଇଜଣ ଯବନ ରାଜକୁମାର ଓ ରାଜ କନ୍ୟାର ସମାଧି ସ୍ଥାନ । ସେଠାରେ ବୃକ୍ଷ ଶ୍ରେଣୀର ଶୋଭା ଓ ସମାଧି

ଗୃହର ସୌନ୍ଦର୍ଯ୍ୟ ବର୍ଣ୍ଣନାତୀତ ; ମାତ୍ର ରକ୍ଷକ ନ ଥିବାରୁ ବର୍ତ୍ତମାନ ତାହାର ଅନେକ ଦୁର୍ଦ୍ଦଶା ଘଟିଅଛି, ଏବଂ ବୋଧହୁଏ, ଶୀଘ୍ର ଲୋପ ହେବ । ପ୍ରାଚୀନ ପଦାର୍ଥ ମଧ୍ୟରେ ପ୍ରୟାଗ ନଗରରେ ଏକ ଅତି ଉଚ୍ଚ ଜୟସ୍ତମ୍ଭ ଅଛି । ତାହା ପ୍ରସିଦ୍ଧ ବୌଦ୍ଧ ସମ୍ରାଟ ଅଶୋକ ରାଜା ସ୍ଥାପିତ କରି ତଦୁପରି ଗୋଟାଏ ଶାସନପତ୍ର ଖୋଲାଇ ଥିଲେ । ତାଙ୍କର ପରଲୋକାନନ୍ତର ବହୁକାଳ ସେହି ସ୍ତମ୍ଭ କୌଣସି ହିନ୍ଦୁ ରାଜାଙ୍କ ଲକ୍ଷ ହୋଇ ନାହିଁ । ୮୦୦ ସାଲରେ କନୌଜାଧିପତି ଶ୍ରୀ ଭଦ୍ରରାଜା ସମୁଦ୍ର ଗୁପ୍ତ ସେହି ସ୍ତମ୍ଭୋପରି ଆଉରି ଗୋଟାଏ ଅନୁଶାସନପତ୍ର ଖୋଲାଇଥିଲେ ତଦ୍ଵାଦ ଜଣେ ମୁସଲମାନ ସମ୍ରାଟସୂଚକ ଏକ ବୀଜକ ଖୋଲାଇ ଥିଲେ । ପ୍ରୟାଗ ତୀର୍ଥରେ ମୁଣ୍ଡନ, ସ୍ନାନ ଓ ମହା ପ୍ରସ୍ଥାନ ବିଷୟକ ବିଧି ପାଠକ ବୃନ୍ଦ ସମସ୍ତେ ଜାଣନ୍ତି, ଅତଏବ ନିରର୍ଥକ ବୋଧରେ ଏ ସ୍ଥଳରେ ତାହାର ବିବରଣ କରିବାର ନିଷ୍ପ୍ରୟୋଜନ ।

···⁂···

## ୪ । କୁମ୍ଭୀର

ଭାରତବର୍ଷର ଦୁର୍ଦ୍ଦାନ୍ତ ଜଳଚର ଜୀବଙ୍କ ମଧ୍ୟରେ କୁମ୍ଭୀର ପ୍ରସିଦ୍ଧ ; ଇହା ତୁଲ୍ୟ ଭୟାନକ ନଦୀ ନିବାସି ଜନ୍ତୁ ବୋଧ ହୁଏ ଯେ ଆଉ କୌଣସି ସ୍ଥାନରେ ନାହିଁ । ଶରୀରର ଲକ୍ଷଣ ବିବେଚନାରେ ଏମାନେ ଝିଟିପିଟିର ସହିତ ପରିଗଣିତ ହୋଇ ପାରନ୍ତି ; ପରନ୍ତୁ ପରିମାଣରେ ଗୃହବାସି ଭବିଷ୍ୟଦ୍‌ବକ୍ତା କ୍ଷୁଦ୍ର ଝିଟିପିଟି ସହିତ × × ତୁଳନା ହୋଇ ନ ପାରେ । ୮ ରୁ ୧୦ ହାତ ଲମ୍ବ × × ସମସ୍ତେ ଯଥେଷ୍ଟ ଦେଖି ଅଛନ୍ତି ବୋଧ ହୁଏ, × × ଦୁଷ୍ପ୍ରାପ୍ୟ ନୁହେ ; ଅପର ତାହାଠାରୁ ବୃହତ୍ × × ପରିମାଣର କୁମ୍ଭୀର ମଧ୍ୟ ଦେଖା ଯାଇଅଛି ।

ଏହି ଦୁର୍ଦ୍ଦମ୍ୟ ଜନ୍ତୁ ବଙ୍ଗ ଓ ଓଡ଼ିଶା ଦେଶ ନଦୀରେ ସୁପ୍ରାପ୍ୟ ଆଉ କଦାପି ବୃହତ୍ ୨ ପୁଷ୍କରିଣୀରେ ଦେଖାଯାଏ । ଇଉରୋପ ଖଣ୍ଡରେ କୁମ୍ଭୀରର ଉତ୍ପତ୍ତି ନାହିଁ ଆଉ ଆଫ୍ରିକା ଓ ଆମେରିକା ଖଣ୍ଡରେ ବର୍ତ୍ତମାନ ଯେଉଁ କୁମ୍ଭୀର ଅଛନ୍ତି ସେମାନଙ୍କ ଅବୟବ ଠିକ ଏ ଦେଶୀୟ କୁମ୍ଭୀର ତୁଲ୍ୟ ନୁହେ ; କିଞ୍ଚିତ୍ ଇତର ବିଶେଷ ଅଛି ; କେବଳ ଆଫ୍ରିକା ଖଣ୍ଡର ନୀଲନଦୀବାସି କୁମ୍ଭୀର ସେମାନଙ୍କ ଏଦେଶୀୟ ଭ୍ରାତୃଗଣ ସହିତ ସମ୍ପୂର୍ଣ୍ଣ ସାଦୃଶ୍ୟ ରଖନ୍ତି ।

ପ୍ର. ଚ—୫

ସାମାନ୍ୟ ଗପ୍‌ପ ଅଛି, କୁମ୍ଭୀରକୁ ଏକ ଦୃଷ୍ଟିରେ ଚାହିଁଲେ ସେ ଚକ୍ଷୁ ଲଜ୍ଜାରେ ଦର୍ଶକକୁ ଆକ୍ରମଣ କରେ ନାହିଁ । ଏକଥା ସତ୍ୟ ସଙ୍ଗେ କି ପର୍ଯ୍ୟନ୍ତେ ସମ୍ଭାବ ରଖେ ତାହା ପାଠକବୃନ୍ଦ ନିର୍ଦ୍ଧାର୍ଯ୍ୟ କରନ୍ତୁ । ମନୁଷ୍ୟଠାରୁ କୁମ୍ଭୀର ଚକ୍ଷୁରେ ଅଧିକ ପରଦା ଅଛି ଇହା ପ୍ରତ୍ୟକ୍ଷ ; ସେମାନଙ୍କର ପ୍ରତ୍ୟେକ ଚକ୍ଷୁରେ ତିନୋଟି ଲେଖାଏ ପତା ଥାଏ । କୁମ୍ଭୀର ସ୍କନ୍ଧରେ ପଞ୍ଜରା ଅସ୍ଥି ଅଛି, ଏ ଗୋଟାଏ ଅସାଧାରଣ ଲକ୍ଷଣ, ଅନ୍ୟ କୌଣସି ପ୍ରାଣିଠାରେ ଦୃଷ୍ଟ ହୁଏ ନାହିଁ ଏବଂ ଏତତ୍ପ୍ରଯୁକ୍ତ ଏମାନେ ସହଜରେ ପାର୍ଶ୍ୱ ପରିବର୍ତ୍ତନ କରିବାକୁ ଅକ୍ଷମ । କୁମ୍ଭୀର ଆକ୍ରମଣରୁ ପଳାଇବା ସମୟରେ ବକ୍ରଗତି ଅବଲମ୍ବନ କଲେ ଅନାୟାସରେ ନିରାପଦ ହୋଇ ମନୁଷ୍ୟ ଯାଇ ପାରେ । ସେମାନଙ୍କ ଆଗ ପଦଦ୍ୱୟରେ ପାଞ୍ଚ ୨ ଅଙ୍ଗୁଳି ଆଉ ପଶ୍ଚାତ୍ ପଦରେ ଚାରି ଅଙ୍ଗୁଳି ଲେଖାଏ ଅଛି କିନ୍ତୁ ତିନି ଅଙ୍ଗୁଳି ମାତ୍ରରେ ନଖ ଥାଏ ଅବଶିଷ୍ଟ ଅଙ୍ଗୁଳି ନଖ ଶୂନ; ଦେହର ଚର୍ମ ସର୍ବତ୍ର ଅସମାନ ଚତୁଷ୍କୋଣାକାର ଅସ୍ଥି ତୁଲ୍ୟ ପଦାର୍ଥରେ ଆବୃତ ତଦ୍ୱାରା କୁମ୍ଭୀର ଦେହ ଅତ୍ୟନ୍ତ ଦୃଢ ଓ ଅସ୍ତ୍ରରେ ପ୍ରାୟ ଅଭେଦ୍ୟ । କିମ୍ବଦନ୍ତୀ ଅଛି ଯେ କୁମ୍ଭୀରର ଜିହ୍ୱା ନାହିଁ କିନ୍ତୁ ଏକଥା ଅସତ୍ୟ ଏମାନଙ୍କର ବଡ ଜିହ୍ୱା ଅଛି ମାତ୍ର ଅନ୍ୟ ପଶୁ ଜିହ୍ୱା ପରି ସଳଖ ନୁହେ ଏବଂ ସେ ହେତୁରୁ ପୂର୍ବୋକ୍ତ ଜନଶ୍ରୁତି ସୃଷ୍ଟ ହୋଇଅଛି ।

ଉଦର ପୂରଣୋପଯୁକ୍ତ ଖାଦ୍ୟଦ୍ରବ୍ୟ ପ୍ରାପ୍ତ ହେଲେ କୁମ୍ଭୀର ମନୁଷ୍ୟର ବଶ୍ୟ ହୋଇ ରହେ, ମାତ୍ର ସ୍ୱଭାବତଃ ସେମାନେ ଅତ୍ୟନ୍ତ ଦୁର୍ବୃତ୍ତ; ଅଶ୍ୱ ଗବାଦି ଯେ କୌଣସି ପଶୁଙ୍କୁ ଜଳ ମଧ୍ୟରେ ପାନ୍ତି ସେହିକ୍ଷଣି ତାହାଙ୍କୁ ବିନାଶ କରନ୍ତି ; ଅତ୍ୟନ୍ତ କ୍ଷୁଧାର୍ତ୍ତ ହେଲେ ସ୍ଥଳରେ ଗମନ କଲେ ସୁଦ୍ଧା ଜୀବ ହିଂସା କରନ୍ତି । କଥିତ ଅଛି, କୌଣସି ୨ ଦୁର୍ଦ୍ଦାନ୍ତ କୁମ୍ଭୀର ନୌକାରୁ ଅସାବଧାନ ନାବିକକୁ ଧରି ନେଇ ଯାଇଅଛି । × × ଜଳ ପାନାର୍ଥେ ଗବାଦି ଆସିଲେ, କୁମ୍ଭୀରମାନେ × × ଅଗ୍ର ପାଦରେ ଆଘାତ କରନ୍ତି; ସେହି × × ଗୋରୁ ଭୂମିରେ ପତିତ ହେବାରୁ ସେହି ଅବକାଶ × × ସ୍କନ୍ଧରେ ଦଂଶନ କରି ଜଳକୁ ଘେନିଯାଏ । ଅନେକ କୁମ୍ଭୀର ନଦୀ ତଟକୁ ରୌଦ୍ରୋତ୍ତପ୍ତ ହେବା ଲାଗି ଶୁଷ୍କ ବାଲୁକାରେ ଶୟନ କରି ହନ୍ତବ୍ୟ ପଶୁ-ପ୍ରତ୍ୟାଶା କରିଥାନ୍ତି, ଗୋ-ମେଷ-ଛାଗାଦି ଯେଉଁ ପଶୁ ଦୁର୍ଭାଗ୍ୟ ବଶରୁ ତାଙ୍କ ନିକଟକୁ ଆସନ୍ତି ତତ୍କ୍ଷଣାତ୍ ସ୍କନ୍ଧ ଧରି ଭିଡ଼ି ଗଲି ଯାଇ ତାହା ଜୀବନ ପ୍ରତ୍ୟାଶା ଏକାବେଳକେ ବିଲୋପ କରନ୍ତି ।

କୁମ୍ଭୀରମାନେ ସଦ୍ୟ ମାଂସ ଭକ୍ଷଣ କରିବାକୁ ଅକ୍ଷମ; ଏହି କାରଣ ଶିକାରି ପଶୁଙ୍କୁ ବଧକରି ଜଳ ମଧ୍ୟରେ ନିମଗ୍ନ କରି ରଖନ୍ତି; କିୟତ୍କାଳ ସେଠାରେ ରଖି ମାଂସ ଗଳିତ ହେଲାରୁ ତାହା ଭକ୍ଷଣ କରନ୍ତି; ଯେ ପର୍ଯ୍ୟନ୍ତେ ଉକ୍ତ ଶବର ମାଂସ ଗଳିତ ନହୁଏ, ତଦବଧି ତାହା ପାଖରେ ଜଗି କରି ଥାନ୍ତି; କଦାପି ଅନ୍ୟଠାକୁ ଗମନ କରନ୍ତି ନାହିଁ; ଓ ଦୈବଯୋଗରେ ଅନ୍ୟ କୌଣସି କୁମ୍ଭୀର ସେଠାକୁ ଆସିଲେ ଦୁହେଁ ମିଳି ଘୋର ଯୁଦ୍ଧ କରନ୍ତି । ସ୍ୱଭାବତଃ ବହୁଭୁକ୍ ହୋଇସୁଦ୍ଧା, କୁମ୍ଭୀରମାନେ ବହୁକାଳ ଆହାର ନ କରି ରହି ପାରନ୍ତି । ଏକ ସମୟରେ କୌଣସି ସାହେବ ଗୋଟାଏ କୁମ୍ଭୀରର ମୁଖ ସିଁଇ କରି ଗୋଟାଏ ପୁଷ୍କରଣୀ ମଧ୍ୟରେ ତାହାକୁ ପକାଇ ଦେଲେ ଛ ମାସବାଦ ତାହାକୁ ସେଠାରୁ କାଢି ଆଣି ଦେଖିଲେ, କୁମ୍ଭୀର ପୂର୍ବପରି ଚଞ୍ଚଳ ଓ ବଳବାନ୍ ଅଛି ।

କୁମ୍ଭୀର ମୁଖରେ ଏକ ଧାଡ଼ି ଦନ୍ତ ଥାଏ, ଉକ୍ତ ଦନ୍ତ ସବୁ ଅନ୍ତଃଶୂନ୍ୟ ଅର୍ଥାତ୍ ପୋଲ । ଉକ୍ତ ଶୂନ୍ୟ ସ୍ଥାନରେ ଅନ୍ୟ ଏକ ପଙ୍କ୍ତି ଦନ୍ତର ଅଙ୍କୁର ଅଛି; ପ୍ରଥମ ଦନ୍ତପଙ୍କ୍ତି ଭଗ୍ନ ହେଲେ ନୂତନ ପଙ୍କ୍ତି ବାହାରଇ । ଏବଂପ୍ରକାରେ କୁମ୍ଭୀର ଶରୀର ବୃଦ୍ଧ୍ୟାନୁସାରେ ତାହା ମୁଖ ମଧ୍ୟରେ କ୍ରମେ ୨ ଆଠ କି ଦଶବାର ଦନ୍ତ ଉତ୍ଥିତ ହୁଏ । କୁମ୍ଭୀରର ଡ଼ିମ୍ବ ସଂଖ୍ୟା ୨୫ ଗୋଟା । ବାଲି ଉପରେ ସେହି ଡ଼ିମ୍ବପ୍ରସବ କରି ବାଦ କଷ୍ଟିତ ବାଲିରେ ଘୋଡ଼ାଇ କୁମ୍ଭୀର ପ୍ରସ୍ଥାନ କରେ ଆଉ ତଦାଦ ଛୁଆ ଜନ୍ମ ସମୟରେ ଅନ୍ୟ କୌଣସି ଚେଷ୍ଟା କରେ ନାହିଁ । ପ୍ରାଣି ତତ୍ତ୍ୱଜ୍ଞମାନେ ନାନା ପ୍ରକାରେ କୁମ୍ଭୀର ଜାତି ବର୍ଣ୍ଣନ କରିଅଛନ୍ତି କିନ୍ତୁ ଏଠାରେ ତାହାର ଉଲ୍ଲେଖ କରିବାର ଅଭିପ୍ରାୟ ନାହିଁ । ଏହି ଦେଶରେ ଦୁଇ ପ୍ରକାର କୁମ୍ଭୀର ପ୍ରସିଦ୍ଧ; ପ୍ରଥମ କୁମ୍ଭୀର, ଦ୍ୱିତୀୟ ଘଡ଼ିଆଳ । ଶେଷୋକ୍ତ ପ୍ରକାର କୁମ୍ଭୀରକୁ ମତ୍ସ୍ୟ କୁମ୍ଭୀର ବୋଲଯାଏ । ପାଠକବୃନ୍ଦ ଏ × କୁମ୍ଭୀରକୁ ଅବଶ୍ୟ ଦେଖିଅଛନ୍ତି ଅତଏବ ଆଉର ବାହୁଲ୍ୟ × × × ।

---

## କଣିକା ସଂଗ୍ରହ

ସ୍ୱଚତୁର ତାର୍କିକ ।—ଜଣେ ମୁସଲମାନ ସ୍ୱଜାତୀୟ କୌଣସି ପଣ୍ଡିତ ନିକଟରେ ଉପସ୍ଥିତ ହୋଇ କହିଲା, ଅବଧାନ, ଆମ୍ଭର ତିନିଟି ସନ୍ଦେହ ହୋଇଅଛି, ତାହା ଭଞ୍ଜନ କରିବାକୁ ଅନୁମତି ଦେବା ହେବ ।

୧ ପ୍ରଶ୍ନ । ସମସ୍ତେ କହନ୍ତି ପରମେଶ୍ୱର ସର୍ବ ସ୍ଥାନରେ ଅଛନ୍ତି, ତେବେ ତାହାଙ୍କୁ କି ହେତୁରୁ ଦେଖି ନ ପାରୁଁ ?

୨ ପ୍ରଶ୍ନ । ପ୍ରବାଦ ଅଛି ମନୁଷ୍ୟଦ୍ୱାରା କୌଣସି କର୍ମ ହୁଏ ନାହିଁ, ସକଳ କର୍ମ ପରମେଶ୍ୱର କରନ୍ତି ; ତେବେ କି ପ୍ରକାରେ ପାପ କରିବାର ଶାସ୍ତି ମନୁଷ୍ୟ ପ୍ରତି ବିଧାନ ହୋଇପାରେ ?

୩ ପ୍ରଶ୍ନ । ଶାସ୍ତ୍ରରେ ଲେଖେ ଶୟତାନ ସର୍ବଦା ପାପାଚରଣରେ ରତ ଥାଏ ଏହେତୁରୁ ତାକୁ ସୃଷ୍ଟିକର୍ତ୍ତା ଅଗ୍ନିକୁଣ୍ଡରେ ନିକ୍ଷେପ କରି ରଖି ଅଛନ୍ତି ; ଏକଥା ମଧ୍ୟ ଉକ୍ତ ଅଛି କି ସେ ଶୟତାନ ଶରୀର ତେଜଃ ପଦାର୍ଥରେ ନିର୍ମିତ ; ଅତଏବ ଉକ୍ତ ଅଗ୍ନିରେ ସେଇ ତେଜଃ ପଦାର୍ଥର କି ଶାସ୍ତି ହୋଇପାରେ ?

ଏହି ବାକ୍ୟ ଶୁଣି ପଣ୍ଡିତ କୌଣସି ପ୍ରତ୍ୟୁତ୍ତର ନ କରି ସେଇ ପ୍ରଶ୍ନକର୍ତ୍ତା ମୁଣ୍ଡରେ ଗୋଟାଏ ଟେକା ନିକ୍ଷେପ କଲା । ପ୍ରଶ୍ନକର୍ତ୍ତା ଲୋଷ୍ଟ୍ରାଘାତରେ ରାଗାନ୍ଧ ହୋଇ ବିଚାରକର୍ତ୍ତା କାଜୀଙ୍କ ନିକଟକୁ ଯାଇ ବିଚାର ପ୍ରାର୍ଥନା କଲା । କାଜୀ ସେଇ ପଣ୍ଡିତକୁ ଡକାଇ କହିଲେ; ହେ ପଣ୍ଡିତ, ତୁମ୍ଭେ ଏ ବ୍ୟକ୍ତିର ପ୍ରଶ୍ନର ନ ଦେଇ କି ହେତୁରୁ ଆଘାତ କଲ ? ପଣ୍ଡିତ କହିଲା; ଧର୍ମାବତାର, ଆମ୍ଭେ ତାହାକୁ ମାରିନାହୁଁ କିନ୍ତୁ ସେ ଲୋଷ୍ଟ୍ରାଘାତରେ ତାହାର ପ୍ରଶ୍ନ ତିନିର ଉତ୍ତର ପ୍ରଦାନ କରିଅଛୁଁ । ପ୍ରଥମରେ ପ୍ରଶ୍ନକର୍ତ୍ତା କହେ ତାହା ମସ୍ତକରେ ଲୋଷ୍ଟ୍ରାଘାତରୁ ପୀଡ଼ା ହୋଇଅଛି ଅଥଚ କେଉଁ ସ୍ଥାନରେ କି ପ୍ରକାରେ ପୀଡ଼ା ହୋଇଅଛି ତାହା ଦେଖି ପାରେ ନାହିଁ । ଦ୍ୱିତୀୟରେ ସେ କହେ, ସକଳ କର୍ମ ପରମେଶ୍ୱର କରନ୍ତି ତେବେ ଆମ୍ଭେ କି ପ୍ରକାରେ ତାକୁ ମାରିଲୁଁ ? ତୃତୀୟରେ ସେ କହେ ତେଜଃ ପଦାର୍ଥକୁ ତେଜରେ ଦାହ କରି ଯାଇ ନ ପାରେ ତାହାହେଲେ ମୃତ୍ତିକା ଶରୀରକୁ ମୃତ୍ପିଣ୍ଡରେ କି ପ୍ରକାରେ ପୀଡ଼ା ଦିଆଯାଇ ପାରେ ।

———

ରାଜା ଆଉ ରାଜପକ୍ଷୀ ।—ପାରସ୍ୟ ଇତିହାସବେତ୍ତାମାନେ କହନ୍ତି କି ସେମାନଙ୍କର ଜଣେ ସମ୍ରାଟ୍ ମୃଗୟାର୍ଥୀ × × ଥିବା ସଞ୍ଚାଣ ପକ୍ଷିକୁ ଛାଡ଼ି ଦେଇ ଗୋଟାଏ × × । ସେ ତାକୁ ଧରି ବଧ କଲା ; ଏବଂ ରାଜା × ପଶ୍ଚାତ୍ ଅଶ୍ୱରେ ଧାବମାନ ହୋଇ ସଙ୍ଗେ ଥିବା × × ହୋଇ ଏକାକୀ ହୋଇଥିଲେ, ଅଥଚ ପଥରେ ଶ୍ରମ ହେତୁରୁ ଅତିଶୟ ତୃଷାତୁର ହେବାରୁ ପାଣି ସନ୍ଧାନ କରି କରି ଦେଖିଲେ ଏକ ପର୍ବତ କାନ୍ଥରେ ଜଳ ଅଳ୍ପ ଅଳ୍ପ କରି ଝରିଅଛି । ତହିଁରେ ଆପଣା ପାର୍ଶ୍ୱରୁ ପାନପାତ୍ର ବାହାର କରି ସେ ଝରରୁ କିଛି କାଳ ବିଳମ୍ବରେ ପାତ୍ର ପରିପୂର୍ଣ୍ଣ କଲେ । ତଦାଦ ରାଜା ଜଳପାନ ନିମନ୍ତେ ପାତ୍ର ଉଠାଇବା ମାତ୍ରକେ ସଞ୍ଚାଣ ପକ୍ଷ୍ୟାଘାତ କରି ସେହି ପାନପାତ୍ର ଭୂମିରେ ପକାଇ ଦେଲା । ରାଜା ଯଥେଷ୍ଟ ବିରକ୍ତ ହୋଇ ପୁନର୍ବାର ଝରକୁ ପାତ୍ର ଦେଖାଇବାରୁ କିଛିକାଳ ବିଳମ୍ବରେ ପାତ୍ର ପରିପୂର୍ଣ୍ଣ ହେଲା ପୁନର୍ବାର ପାଣି ପିଇବାକୁ ପ୍ରବୃତ୍ତ ହେବା ମାତ୍ରକେ ସେ ସଞ୍ଚାଣ ଦ୍ୱିତୀୟ ଥର ପକ୍ଷ୍ୟାଘାତ କରି ସବୁ ଜଳ ପକାଇ ଦେଲା । ତହିଁରେ ରାଜା ତୃଷାରେ ଉନ୍ମତ୍ତ ପ୍ରାୟ ହୋଇ ବାରମ୍ବାର ଏରୂପେ ଜଳପାନରେ ବଞ୍ଚିତ ହେବାରୁ ଅତିଶୟ କ୍ରୋଧରେ ସଞ୍ଚାଣ ପକ୍ଷିକୁ ବଳପୂର୍ବକ ଭୂମିରେ କଚାଡ଼ି ତାହାର ପ୍ରାଣ ନାଶ କଲେ । ଏଥି ମଧ୍ୟରେ ରାଜାଙ୍କ ସହଚର ଜଣେ ଭୃତ୍ୟ ଆସିବାରୁ ନୃପତି ସହଜରେ ତୃଷାତୁର ଆଉ ପୂର୍ବପରି ଜଳ ଧରିବାରେ ବିଳମ୍ବ ହେବ ଏ ବିବେଚନାରେ ଭୃତ୍ୟକୁ ପର୍ବତ ଉପରରୁ ସେହି ରମ୍ୟ ପାଣି ଆଣିବାକୁ ଆଜ୍ଞା ଦେଲେ । ତହିଁରେ ଭୃତ୍ୟ ତତ୍କ୍ଷଣାତ୍ ପର୍ବତରେ ଚଢ଼ି ଦେଖିଲା, ଗୋଟାଏ ପ୍ରକାଣ୍ଡ ଅଜଗର ସର୍ପର ମୃତଶରୀର ସେଠାରେ ପଡ଼ିଅଛି ଏବଂ ତାହାର ବିଷ ସମୂହ ପାଣିରେ ମିଶ୍ରିତ ହୋଇ ସେହି ଅମୃତମୟ ଜଳ ପର୍ବତ ଶିଖରରୁ ଝରି ପ୍ରାୟ ପଡ଼ୁଅଛି । ଭୃତ୍ୟ ତଦ୍ଦୃଷ୍ଟିରେ ଭୟରେ ରାଜାଙ୍କୁ ସମୁଦାୟ ବୃତ୍ତାନ୍ତ ଶ୍ରବଣ କରାଇ ଆପଣା କୋଷ ଦାନରୁ ଏକ ପାତ୍ର ଜଳ ପରିପୂର୍ଣ୍ଣ କରି ଦେଲା ଅପର ଜଳପାନ ସମୟରେ ରାଜାଙ୍କ ଦୁଇ ଚକ୍ଷୁରୁ ଶୋକବାରି ନିର୍ଗତ ହେଲା ଆଉ ସେ ଉକ୍ତ ଭୃତ୍ୟକୁ ପକ୍ଷିର ଅଦ୍ଭୁତ ଗୁଣ ବର୍ଣ୍ଣନ କରି ସ୍ୱୀୟ ଅବିବେକତା ଓ ଅସହିଷ୍ଣୁତା ପ୍ରତି ଧିକ୍କାର କଲେ । ପାରଶ୍ୟମାନେ କହନ୍ତି ସେ ଭୂପତି ଶୋକରେ ଅବଶିଷ୍ଟ ଜୀବନ ଯାପନ କରିଥିଲେ ।



ଶ୍ଳୋକଃ । ସାଧୁରେବ ପ୍ରବାଣଃ ସ୍ୟାତ୍ ସଦ୍‌ଗୁଣାମୃତବର୍ଣ୍ଣନେ ।
ନବଚୂତାଙ୍କୁରାସ୍ୱାଦକୁଶଳଃ କୋକିଳଃ କିଲ ॥

ସାଧୁ ଲୋକଙ୍କ ଗୁଣକୀର୍ତ୍ତିନରେ ସାଧୁଲୋକେ ଆମୋଦିତ ହୁଅନ୍ତି, ଦୃଷ୍ଟାନ୍ତ ଏହି, ଆମ୍ର × ହେଲେ କୋକିଳ ଆନନ୍ଦରେ ସ୍ୱର କରେ ।

× × × ସତାଂ ଗୁଣଗଣଂ ଖଳାତ୍ ।
× × × ବମ୍ବୁଲାମ୍ବରଂ ।

ସାଧୁ × × × ଦେବାର ଦୁର୍ଜନସ୍ୱଭାବ ସିଦ୍ଧ ଧର୍ମ ଅଟେ, ଦୃଷ୍ଟାନ୍ତ ଏହି, ଧୂମ ସର୍ବଦା ନିର୍ମଳ ଆକାଶକୁ ମଳିନ କରେ ।

---

# ସମାଚାର ପତ୍ରିକା

ଅଦ୍ୟ ଅପରାହ୍ଣୀୟ ବେଳା ୫ ଘଟିକା ସମୟରେ ଶ୍ରୀଯୁତ ଲର୍ଡ ଡେଲହୌସି ବାହାଦୁର ଦେଶଯାତ୍ରା କରିବେ, ସେ ପ୍ରିନ୍‌ସେପ୍‌ସ ଘାଟରେ ଫିରୋଜ ଷ୍ଟିମରରେ ପହୁଞ୍ଚିବେ, ଶ୍ରୀଯୁତ ଲର୍ଡ କେନିଂ ବାହାଦୁର ନଗରବାସି ସିବିଲ ମିଲେଟେରୀ କାର୍ଯ୍ୟକାରକମାନଙ୍କୁ ସେହି ସମୟରେ ଗବର୍ଣ୍ଣମେଣ୍ଟ ହୌସରେ ଉପସ୍ଥିତ ଥିବାକୁ ଆଜ୍ଞା ଦେଇ ଅଛନ୍ତି ।

---

ସଦର ଦେୱାନୀ ଅଦାଲତର ପ୍ରଧାନ ଜଜ ଶ୍ରୀଯୁତ ସର ରବର୍ଟ ବାରଲୋ ସାହେବ ଆଗାମି ମାସ ପ୍ରଥମରେ ଦେଶଗମନ କରିବେ, ଷ୍ଟୋକ୍‌ସ ସାହେବ ବାରଲୋ ସାହେବଙ୍କ ସ୍ଥଳାଭିଷିକ୍ତ ହେବେ, ଚବିଶପରଗଣା ଜିଲ୍ଲାର ବର୍ତ୍ତମାନ ଜଜ ଡ଼ି ନେ ମଣି ସାହେବ ଷ୍ଟୋକ୍‌ସ ସାହେବଙ୍କ କର୍ମପ୍ରାପ୍ତ ହେବେ, ଏବଂ ଜିଲ୍ଲା ବାକରଗଞ୍ଜର ଜଜ କେମ୍ପ ସାହେବ ଚବିଶପରଗଣାକୁ ଆସିବେ ।

---

ଶ୍ରୀଲ ଶ୍ରୀଯୁକ୍ତ ଲର୍ଡ ଡେଲହୌସି ବାହାଦୁର ଗତ ବୃହସ୍ପତିବାର ସାୟାହ୍ନ ସମୟରେ ସ୍ୱଦେଶଯାତ୍ରା କରିଅଛନ୍ତି । ପରମେଶ୍ୱର କରନ୍ତୁ ତାଙ୍କର ଏହି ଯାତ୍ରା ଶୁଭଯାତ୍ରା ହେଉ, ସ୍ୱଦେଶକୁ ଯାଇ ପ୍ରଭୁମାନଙ୍କ ମୁଖର ପାନ ହୋଇ ଯେମନ୍ତ ଦୀର୍ଘକାଳ ସୁଖ ଭୋଗକରି ପାରିବେ । ଶ୍ରୀଲ ଶ୍ରୀଯୁକ୍ତ ଲର୍ଡ ଗମନ

କାଳରେ ଏତଦ୍ଦେଶୀୟ ମାନ୍ୟବର ଶ୍ରୀଯୁକ୍ତ ରାଜା ରାଧାକାନ୍ତ ବାହାଦୁରଙ୍କ ବିଲକ୍ଷଣ ଆପ୍ୟାୟିତ କରିଯାଇ ଅଛନ୍ତି । ଏତଦ୍ଦେଶୀୟ ମାନ୍ୟ ଲୋକେ ଶ୍ରୀଯୁକ୍ତ ଲର୍ଡ କେନିଂ ବାହାଦୁରଙ୍କ ସହିତ ସାକ୍ଷାତ୍ କରିବା ନିମନ୍ତେ ଗବର୍ଣ୍ଣମେଣ୍ଟ ଗୃହକୁ ଗମନ କରିଥିଲେ, ତନ୍ମଧ୍ୟରେ ଲର୍ଡ ବାହାଦୁରଙ୍କ ସହିତ ସାକ୍ଷାତ୍ କଲାପରେ ରାଜା ରାଧାକାନ୍ତ ବାହାଦୁର, ରାଜା କାଳୀକୃଷ୍ଣ ବାହାଦୁର, ରାୟ ହରଚନ୍ଦ୍ର ଘୋଷ ବାହାଦୁର ପ୍ରଭୃତି କତିପୟ ମହୋଦୟ କକ୍ଷା ଦ୍ୱାରେ ଦଣ୍ଡାୟମାନ ହୋଇ କଥୋପକଥନ କରୁଥିଲେ, ଏମନ୍ତ ସମୟରେ ଲର୍ଡ ଡେଲହୌସି ବାହାଦୁର ଅନୁମାନ ବଂଶତି ହସ୍ତ ଅନ୍ତରିତ ସ୍ୱକୀୟ ଉଚ୍ଚାସନରୁ ଉଠି ଉକ୍ତ ରାଜା ବାହାଦୁରଙ୍କ ନିକଟକୁ ଆସିଲେ ଏବଂ ଏମନ୍ତ ଆତ୍ମୀୟତାରୂପେ ମଙ୍ଗଳାଦି ପ୍ରଶ୍ନ କଲେ ତନ୍ମଧ୍ୟରେ ଅତ୍ୟନ୍ତ ସ୍ନେହଭାବ ପ୍ରକାଶ ହୋଇଥିଲା । ବିଶେଷତଃ ରାଜା ବାହାଦୁରଙ୍କ କ୍ଷୀଣ ଦେଖି ଅତିଶୟ ଦୁଃଖ ଜ୍ଞାପନ କଲେ । ତତ୍ପରେ କହିଲେ, "ଆସ ରାଜା, ଲର୍ଡ କେନିଂ ସାହେବଙ୍କ ସହିତ ତୁମ୍ଭର ସାକ୍ଷାତ୍ କରାଇ ଦେବା" ଇହା ବୋଲି ରାଜାଙ୍କୁ ସଙ୍ଗେ ଘେନି ଲର୍ଡ କେନିଂ ବାହାଦୁରଙ୍କ ନିକଟକୁ ଗଲେ ଏବଂ ତାଙ୍କ ସହିତ ଉତ୍ତମରୂପେ ଆଳାପ କରାଇ ପୁନର୍ବାର ସଙ୍ଗେ ନେଇ ରାଜା ବାହାଦୁରଙ୍କୁ ପୂର୍ବ ସ୍ଥାନରେ ପହଞ୍ଚାଇ ବିଦାୟ ହେଲେ । ଏଥିରେ ରାଜା ବାହାଦୁର ଆପ୍ୟାୟିତ ହୋଇ ଅଛନ୍ତି ସନ୍ଦେହ ନାହିଁ, ବରଂ ଆମ୍ଭେମାନେ ମଧ୍ୟ ପରମାହ୍ଲାଦିତ ହେଲୁଁ, ଗମନ କାଳରେ ଶ୍ରୀଯୁକ୍ତ ଲର୍ଡ ଅତିମାନ୍ୟ ଜଣେ ବଙ୍ଗାଳି ସହିତ ଏରୂପ ସଦ୍ବ୍ୟବହାର × × ଏକ ସମୟେ × × × × × ରାଧା × × × ମନୁଷ୍ୟ ହତ୍ୟା × × × ଥିଲା ତେତେବେଳେ ଏହି ଲର୍ଡ ଏହି ରାଜାଙ୍କ ବିପକ୍ଷରେ କି ନ କରି ଅଛନ୍ତି ? ଆମ୍ଭେମାନେ ଶୁଣିଅଛୁ ଲର୍ଡ ବାହାଦୁର ଅତ୍ୟନ୍ତ କ୍ରୋଧପୂର୍ବକ ଡାର୍ମୀୟର ସାହେବଙ୍କୁ ଲେଖିଥିଲେ, "ତୁମ୍ଭେ ସାବଧାନରେ ଦେଖିବ ରାଜା ରାଧାକାନ୍ତ ଯେମନ୍ତ ରାଜଦଣ୍ଡରୁ ବହିର୍ଭୂତ ନ ହୁଏ ତାହାର ଯଥୋଚିତ ଦଣ୍ଡ ହେଲେ ଏତଦ୍ଦେଶୀୟ ଦୁରନ୍ତ ଲୋକେ ଦଣ୍ଡ ଭୟରେ କ୍ଷାନ୍ତ ହେବେ । ରାଜା ବାହାଦୁର କୌଣସି ଦୋଷରେ ଲିପ୍ତ ନ ଥିଲେ ଏହି କାରଣ ବିଚାରରେ ନିର୍ଦ୍ଦୋଷ ହୋଇ ଆସିଲେ, କିନ୍ତୁ ଲର୍ଡ ବାହାଦୁର ରାଜା ବାହାଦୁରଙ୍କ ଉପରେ ଶସ୍ତ୍ର ଚଳାଇବାରେ ଝୁଟି କରି ନ ଥିଲେ । ସେ ଏକ ସମୟ ଯାଇଅଛି, ଏହି ବାହାଦୁର ସେ ସମୟରେ ଗବର୍ଣ୍ଣର ବାହାଦୁର ଥିଲେ, ଆଉର ଏହି ଏକ ସମୟ ମଧ୍ୟ ଦେଖିଲୁଁ, ଲର୍ଡ ବାହାଦୁର ଗବର୍ଣ୍ଣର ବାହାଦୁରି ପଦରୁ ସ୍ୱତନ୍ତ୍ର ହୋଇ ଆଉର ଏହି ରାଜାଙ୍କ ସହିତ ଏହି ପ୍ରକାର ବନ୍ଧୁଭାବ ଦେଖାଇଲେ । କାଳକ୍ରମରେ କି ନ ହୁଏ ।

———

ଶ୍ଳୋକଃ । ସାଧୁରେବ ପ୍ରବୀଣଃ ସ୍ୟାତ୍ ସଦ୍‌ଗୁଣାମୃତବର୍ଣ୍ଣନେ ।
ନବଚୂତାଙ୍କୁରାସ୍ୱାଦକୁଶଳଃ କୋକିଳଃ କିଲ ॥

ସାଧୁ ଲୋକଙ୍କ ଗୁଣକୀର୍ତ୍ତନରେ ସାଧୁଲୋକେ ଆମୋଦିତ ହୁଅନ୍ତି, ଦୃଷ୍ଟାନ୍ତ ଏହି, ଆମ୍ର × ହେଲେ କୋକିଳ ଆନନ୍ଦରେ ସ୍ୱର କରେ ।

× × × ସତାଂ ଗୁଣଗଣଂ କ୍ଷଣାତ୍ ।
× × × ବମ୍ବୁଳାମ୍ବରଂ ।

ସାଧୁ × × × ହେବାର ଦୁର୍ଜନସ୍ୱଭାବ ସିଦ୍ଧ ଧର୍ମ ଅଟେ, ଦୃଷ୍ଟାନ୍ତ ଏହି, ଧୂମ ସର୍ବଦା ନିର୍ମଳ ଆକାଶକୁ ମଳିନ କରେ ।

---

# ସମାଚ୍ଚାର ପତ୍ରିକା

ଅଦ୍ୟ ଅପରାହ୍ଣୀୟ ବେଳା ୫ ଘଟିକା ସମୟରେ ଶ୍ରୀଯୁତ ଲର୍ଡ ଡେଲ‌ହୌସି ବାହାଦୁର ଦେଶଯାତ୍ରା କରିବେ, ସେ ପ୍ରିନ୍‌ସେପ୍‌ସ ଘାଟରେ ଫିରୋଜ ଷ୍ଟିମରରେ ପହୁଞ୍ଚିବେ, ଶ୍ରୀଯୁତ ଲର୍ଡ କେନିଂ ବାହାଦୁର ନଗରବାସି ସିବିଲ ସିଲେକ୍ଟେଣ୍ଟ କାର୍ଯ୍ୟକାରକମାନଙ୍କୁ ସେହି ସମୟରେ ଗବର୍ଣ୍ଣମେଣ୍ଟ ହୌସରେ ଉପସ୍ଥିତ ଥିବାକୁ ଆଜ୍ଞା ଦେଇ ଅଛନ୍ତି ।

---

ସଦର ଦେଓ୍ୱାନୀ ଅଦାଲତର ପ୍ରଧାନ ଜଜ ଶ୍ରୀଯୁତ ସର ରବର୍ଟ ବାରଲୋ ସାହେବ ଆଗାମି ମାସ ପ୍ରଥମରେ ଦେଶଗମନ କରିବେ, ଷ୍ଟୋନ୍‌ସ ସାହେବ ବାରଲୋ ସାହେବଙ୍କ ସ୍ଥଳାଭିଷିକ୍ତ ହେବେ, ଚବ୍‌ବିଶପରଗଣା ଜିଲାର ବର୍ତ୍ତମାନ ଜଜ ଡ଼ି ଜେ ମଣି ସାହେବ ଷ୍ଟୋନ୍‌ସ ସାହେବଙ୍କ କର୍ମପ୍ରାପ୍ତ ହେବେ, ଏବଂ ଜିଲା ବାକରଗଞ୍ଜର ଜଜ କେମ୍ପ ସାହେବ ଚବ୍‌ବିଶପରଗଣାକୁ ଆସିବେ ।

---

ଶ୍ରୀଲ ଶ୍ରୀଯୁକ୍ତ ଲର୍ଡ ଡେଲହୌସି ବାହାଦୁର ଗତ ବୃହସ୍ପତିବାର ସାୟାହ୍ନ ସମୟରେ ସ୍ୱଦେଶଯାତ୍ରା କରିଅଛନ୍ତି । ପରମେଶ୍ୱର କରନ୍ତୁ ତାଙ୍କର ଏହି ଯାତ୍ରା ଶୁଭଯାତ୍ରା ହେଉ, ସ୍ୱଦେଶକୁ ଯାଇ ପ୍ରଭୁମାନଙ୍କ ମୁଖର ପାନ ହୋଇ ଯେମନ୍ତ ଦୀର୍ଘକାଳ ସୁଖ ଭୋଗକରି ପାରିବେ । ଶ୍ରୀଲ ଶ୍ରୀଯୁକ୍ତ ଲର୍ଡ ଗମନ

କାଳରେ ଏତଦ୍ଦେଶୀୟ ମାନ୍ୟବର ଶ୍ରୀଯୁକ୍ତ ରାଜା ରାଧାକାନ୍ତ ବାହାଦୁରଙ୍କ ବିଲକ୍ଷଣ ଆପ୍ୟାୟିତ କରିଯାଇ ଅଛନ୍ତି । ଏତଦ୍ଦେଶୀୟ ମାନ୍ୟ ଲୋକେ ଶ୍ରୀଯୁକ୍ତ ଲର୍ଡ କେନିଂ ବାହାଦୁରଙ୍କ ସହିତ ସାକ୍ଷାତ୍ କରିବା ନିମନ୍ତେ ଗବର୍ଣ୍ଣମେଣ୍ଟ ଗୃହକୁ ଗମନ କରିଥିଲେ, ତହିଁରେ ଲର୍ଡ ବାହାଦୁରଙ୍କ ସହିତ ସାକ୍ଷାତ୍ କଲାପରେ ରାଜା ରାଧାକାନ୍ତ ବାହାଦୁର, ରାଜା କାଳୀକୃଷ୍ଣ ବାହାଦୁର, ରାୟ ହରଚନ୍ଦ୍ର ଘୋଷ ବାହାଦୁର ପ୍ରଭୃତି କତିପୟ ମହୋଦୟ କକ୍ଷା ଦ୍ୱାରେ ଦଣ୍ଡାୟମାନ ହୋଇ କଥୋପକଥନ କରୁଥିଲେ, ଏମନ୍ତ ସମୟରେ ଲର୍ଡ ଡେଲହୌସି ବାହାଦୁର ଅନୁମାନ ବିଂଶତି ହସ୍ତ ଅନ୍ତରିତ ସ୍ୱକୀୟ ଉଚ୍ଚାସନରୁ ଉଠି ଉକ୍ତ ରାଜା ବାହାଦୁରଙ୍କ ନିକଟକୁ ଆସିଲେ ଏବଂ ଏମନ୍ତ ଆତ୍ମୀୟତାରୂପେ ମଙ୍ଗଳାଦି ପ୍ରଶ୍ନ କଲେ ତହିଁରେ ଅତ୍ୟନ୍ତ ସ୍ନେହଭାବ ପ୍ରକାଶ ହୋଇଥିଲା । ବିଶେଷତଃ ରାଜା ବାହାଦୁରଙ୍କ କ୍ଷୀଣ ଦେଖି ଅତିଶୟ ଦୁଃଖ ଜ୍ଞାପନ କଲେ । ତତ୍ପରେ କହିଲେ, "ଆସ ରାଜା, ଲର୍ଡ କେନିଂ ସାହେବଙ୍କ ସହିତ ତୁମ୍ଭର ସାକ୍ଷାତ୍ କରାଇ ଦେବା" ଇହା ବୋଲି ରାଜାଙ୍କ ସଙ୍ଗେ ଘେନି ଲର୍ଡ କେନିଂ ବାହାଦୁରଙ୍କ ନିକଟକୁ ଗଲେ ଏବଂ ତାଙ୍କ ସହିତ ଉତ୍ତମରୂପେ ଆଲାପ କରାଇ ପୁନର୍ବାର ସଙ୍ଗେ ନେଇ ରାଜା ବାହାଦୁରଙ୍କ ପୂର୍ବ ସ୍ଥାନରେ ପହଞ୍ଚାଇ ବିଦାୟ ହେଲେ । ଏଥିରେ ରାଜା ବାହାଦୁର ଆପ୍ୟାୟିତ ହୋଇ ଅଛନ୍ତି ସନ୍ଦେହ ନାହିଁ, ବରଂ ଆମ୍ଭେମାନେ ମଧ୍ୟ ପରମାହ୍ଲାଦିତ ହେଲୁଁ, ଗମନ କାଳରେ ଶ୍ରୀଯୁକ୍ତ ଲର୍ଡ ଅତିମାନ୍ୟ ଜଣେ ବଙ୍ଗାଳି ସହିତ ଏରୂପ ସଦ୍ବ୍ୟବହାର × × ଏକ ସମୟେ × × × × × ରାଧା × × × ମନୁଷ୍ୟ ହତ୍ୟା × × × ଥିଲା ତେତେବେଳେ ଏହି ଲର୍ଡ ଏହି ରାଜାଙ୍କ ବିପକ୍ଷରେ କି ନ କରି ଅଛନ୍ତି ? ଆମ୍ଭେମାନେ ଶୁଣିଅଛୁ ଲର୍ଡ ବାହାଦୁର ଅତ୍ୟନ୍ତ କ୍ରୋଧପୂର୍ବକ ତାମ୍ପୀୟର ସାହେବଙ୍କୁ ଲେଖିଥିଲେ, "ତୁମ୍ଭେ ସାବଧାନରେ ଦେଖିବ ରାଜା ରାଧାକାନ୍ତ ଯେମନ୍ତ ରାଜଦଣ୍ଡରୁ ବହିର୍ଭୂତ ନ ହୁଏ ତାହାର ଯଥୋଚିତ ଦଣ୍ଡ ହେଲେ ଏତଦ୍ଦେଶୀୟ ଦୁରନ୍ତ ଲୋକେ ଦଣ୍ଡ ଭୟରେ କ୍ଷାନ୍ତ ହେବେ । ରାଜା ବାହାଦୁର କୌଣସି ଦୋଷରେ ଲିପ୍ତ ନ ଥିଲେ ଏହି କାରଣ ବିଚାରରେ ନିର୍ଦ୍ଦୋଷ ହୋଇ ଆସିଲେ, କିନ୍ତୁ ଲର୍ଡ ବାହାଦୁର ରାଜା ବାହାଦୁରଙ୍କ ଉପରେ ଶସ୍ତ୍ର ଚଳାଇବାରେ ତ୍ରୁଟି କରି ନ ଥିଲେ । ସେ ଏକ ସମୟ ଯାଇଅଛି, ଏହି ବାହାଦୁର ସେ ସମୟରେ ଗବର୍ଣ୍ଣର ବାହାଦୁର ଥିଲେ, ଆଉର ଏହି ଏକ ସମୟ ମଧ୍ୟ ଦେଖିଲୁଁ, ଲର୍ଡ ବାହାଦୁର ଗବର୍ଣ୍ଣର ବାହାଦୁରୀ ପଦରୁ ସ୍ୱତନ୍ତ୍ର ହୋଇ ଆଉର ଏହି ରାଜାଙ୍କ ସହିତ ଏହି ପ୍ରକାର ବନ୍ଧୁଭାବ ଦେଖାଇଲେ । କାଳକ୍ରମରେ କି ନ ହୁଏ ।

———

ଶ୍ରୀଶ୍ରୀଯୁକ୍ତ ଲର୍ଡ କେନିଂ ବାହାଦୁର ।

ଯେଉଁମାନେ ପ୍ରଶସ୍ତାକରରେ ଜନ୍ମ ଗ୍ରହଣ କରନ୍ତି ସେମାନଙ୍କ ଦାନର ହସ୍ତମୁଷ୍ଟା ପ୍ରଶସ୍ତ × × × କଦାପି ଦୁର୍ଗୁଣ × × × ବେ ଯେ × × × ବ୍ୟତକ୍ରମ × × ଅନ୍ୟ କୌଣସି କାରଣ ଥିବ, ସେ କାରଣାନୁସନ୍ଧାନରେ ଆମ୍ଭମାନଙ୍କର ପ୍ରୟୋଜନ ନାହିଁ, ଫଳତଃ ଶ୍ରୀଯୁକ୍ତ ଲର୍ଡ କେନିଂ ସାହେବ ଅତିପ୍ରଶସ୍ତ କୁଳରେ ଜନ୍ମଗ୍ରହଣ କରି ଅଛନ୍ତି ଅତଏବ ତାଙ୍କ ଦାନର ହସ୍ତ ଯେ ପ୍ରଶସ୍ତ କଲିକତାକୁ ଆସିଲା-ମାତ୍ରକେ ତହିଁର ନିଦର୍ଶନ ଦେଖାଇଲେ । ଏତଦ୍ଦେଶୀୟ ଜଣେ ମାଳୀ ଗତ ବୁଧବାର ଦିନ ଶଏ ଗୋଲାବ ଜାମୁ ଘେନି ଶ୍ରୀଯୁତଙ୍କ ନିକଟକୁ ଯାଇଥିଲା । ଶ୍ରୀଯୁକ୍ତ ଲର୍ଡ ଉତ୍କୃଷ୍ଟ ଗୋଲାବ ଜାମୁ ଦେଖି ସନ୍ତୁଷ୍ଟ ହେଲେ, ତହିଁରେ ନିକଟସ୍ଥ ଲୋକେ ସେଇ ଫଳର ମୂଲ୍ୟ ପଚ୍ଛରିବାରେ ମାଳୀ କହିଲା, ମୁଁ ଅମୂଲ୍ୟ ମହାରାଜାଙ୍କ ନିକଟକୁ ଫଳ ଘେନି ଆସିଅଛି, ଇହାଙ୍କ ସାକ୍ଷାତରେ ଏହି ଫଳର ମୂଲ୍ୟ କି କହିବ, ମତେ ଯାହା ଦେବେ ତାହା ନେବ । ଏଥିରେ ଶ୍ରୀଯୁକ୍ତ ଲର୍ଡ ଗୋଟିଏ ଫଳ ହସ୍ତରେ ଘେନି ଆଘ୍ରାଣ କରି କହିଲେ, ଏହି ଶତ ଫଳ ସଂଗ୍ରହ କରିବାରେ ଇହାର ଅନେକ ପରିଶ୍ରମ ହୋଇଅଛି ଅତଏବ ଏ ଫଳର ମୂଲ୍ୟ ପଚ୍ଛରିବାର ପ୍ରୟୋଜନ କି ? ଇହାକୁ ପଞ୍ଚବିଂଶତି ମୁଦ୍ରା ପାରିତୋଷିକ ଦିଅ । ଭୃତ୍ୟମାନେ ତଦଣ୍ଡରେ ତାକୁ ପଞ୍ଚବିଂଶତି ମୁଦ୍ରା ପାରି-ତୋଷିକ ଦେଲେ । ମାଳୀ ସେ ମୁଦ୍ରା ପାଇ ଅହ୍ଲାଦିତ ହୋଇ ଶ୍ରୀଶ୍ରୀଯୁତଙ୍କୁ ପଞ୍ଚବିଂଶତି ନମସ୍କାର କରି ବିଦାୟ ହେଲା । ବର୍ତ୍ତମାନ କଲିକତା ନଗରରେ ଗୋଲାବଜାମୁ ଅଧିକ ଉଠେ ନାହିଁ ତଥାତ ବଜାରରେ ଟଙ୍କାକୁ କୋଡ଼ିଏ ଗୋଟା ବିକ୍ରୟ ହେଉଅଛି, ଆମ୍ଭେମାନେ ଗତ ଶିବରାତ୍ରି ଦିନ ଏହି ମୂଲ୍ୟରେ କ୍ରୟ କରିଅଛୁଁ । ଶ୍ରୀଯୁତ ଲର୍ଡ ୫ ଟଙ୍କାର ଫଳକୁ ୨୫ ଟଙ୍କା ପାରିତୋଷିକ ଦେଲେ, ଏଥିରେ ଶ୍ରୀଯୁତଙ୍କ ଦାନର ହସ୍ତ କେତେ ପ୍ରଶସ୍ତ ଏତଦ୍ଦେଶୀୟ ଲୋକେ ଏଥିରେ ବିବେଚନା କରନ୍ତୁ ଆମ୍ଭେମାନେ ଶ୍ରବଣ କରିଅଛୁଁ ଏହି ଶ୍ରୀଯୁତଙ୍କ ପିତାମହ ଅମୂଲ୍ୟ ଦାତା ଥିଲେ । ସେ ଏହି ପ୍ରକାର ଦାନ ଧର୍ମ କରି ଅନେକ ଉପକାର କରି ଅଛନ୍ତି । ସେ ମହାପୁରୁଷଙ୍କର ପ୍ରିୟପୁତ୍ର ଏହି ମହାପୁରୁଷ ଏଦେଶକୁ ଆସିଅଛନ୍ତି, ଇହାଙ୍କର ଦାନ ଦୟା ଦର୍ଶନ କରି ଏଦେଶୀୟ ଧନି ଲୋକେ ମଧ୍ୟ ଅନୁଗାମୀ ହେବେ ।

ସତ୍ୟ ମିଥ୍ୟା ବୋଲି ଯାଇ ନ ପାରେ ଏମନ୍ତ ରବ ଉଠିଅଛି, ଲର୍ଡ କେନିଂ ବାହାଦୁର ଗବର୍ଣ୍ଣମେଣ୍ଟର ବ୍ୟୟ ଲାଘବ କରିବା ନିମନ୍ତେ ଅନାବଶ୍ୟକ

କର୍ମ ଓ ପଦ ସକଳ ଉଠାଇ ଦେବେ, ପ୍ରଥମେ ବଙ୍ଗ ବେହାର ଓଡ଼ିଶା ଇତ୍ୟାଦି ପ୍ରଦେଶରେ ଡେପୁଟୀ କମିଶନରଙ୍କ ଜେନେରଲ ପଦ ରହିତ ହେବ । ଉକ୍ତ ପଦର କର୍ମ ଅତ୍ୟଳ୍ପ, ତାହା ଅନାୟାସରେ ଗବର୍ଣ୍ଣମେଣ୍ଟର ଅନ୍ୟ ଆଫିସ ଦ୍ୱାରା ସମ୍ପନ୍ନ ହେବ ।

---

୯ ଫେବୃଏରି ଦିବସୀୟ ବ୍ୟବସ୍ଥାପକ ସଭାର ବୈଠକରେ ବିଧବା ବିବାହପକ୍ଷରେ ଚଟ୍ଟଗ୍ରାମର ବହୁତର ହିନ୍ଦୁ ନାମ ସ୍ୱାକ୍ଷରିତ ଏକ ଆବେଦନ ଅର୍ପିତ ହୋଇଅଛି, ସେହି ଦିବସରେ କଲିକତା, ନବଦ୍ୱୀପ ଓ ତଦିତରସ୍ଥ ସ୍ଥାନ ନିବାସି ବିଧବା ବିବାହର ବିପକ୍ଷ ମହାଶୟମାନେସୁଦ୍ଧା ଏକ ଆବେଦନ କରି ଅଛନ୍ତି, କୌନ୍‌ସଲର ମେମ୍ବର ଶ୍ରୀଯୁକ୍ତ ଗ୍ରାଣ୍ଟ ସାହେବ ଉକ୍ତ ଉଭୟ ଆବେଦନକୁ ଗ୍ରାହ୍ୟ କରି ରଖିବାକୁ ଆଜ୍ଞା ଦେଇଅଛନ୍ତି ।

---

ଲଣ୍ଡନ ନଗରରେ "ପାରଶିୟା" ନାମକ ଗୋଟାଏ ଅତି ବୃହତ୍ ବାଷ୍ପୀୟ ତରି ନିର୍ମିତ ହୋଇଅଛି । ତଦ୍ରୂପ ବଡ଼ ଷ୍ଟିମର ପୃଥିବୀ ମଧ୍ୟରେ ଆଉ ନ ଥିବ । ଉକ୍ତ ଜାହାଜ ଏକ ଲକ୍ଷ ଆଠ ହଜାର ମହଣ ବୋଝ ଘେନି ପ୍ରତି ଘଣ୍ଟାରେ ୮ କୋଶ ମାର୍ଗ ଯାଇ ପାରେ । ଉକ୍ତ ଜାହାଜ ଦୀର୍ଘରେ ପ୍ରାୟ ୩୭୫ ହସ୍ତ ପରିମିତ ଏବଂ ପ୍ରତିରେ ତଦନୁରୂପ, ତାହାର ବାଷ୍ପ ଯନ୍ତ୍ରରେ ୧୨୦୦ ଘୋଟକର ବେଗ ପ୍ରଦତ୍ତ ହୋଇଅଛି ।

---

ଯେହେତୁ ସକଳ ଲୋକଙ୍କର କୌଣସି ମକଦ୍ଦମା ଗବର୍ଣ୍ଣମେଣ୍ଟରେ ଉପସ୍ଥିତ ଅଛି ଗବର୍ଣ୍ଣମେଣ୍ଟର ସେକ୍ରେଟେରୀମାନେ ତାଙ୍କ ସହିତ କିଛି କଥୋପକଥନ × × × × ସମ୍ପ୍ରତି × × × ଏକ ଆଜ୍ଞା × × ।

---

ଇଂରେଜୀ ସମ୍ବାଦପତ୍ର ଦ୍ୱାରା ଜଣାଗଲା ଯେ, ଦୁରଦୃଷ୍ଟ କାପ୍ତାନ ଜେ ମିଥନ ସାହେବ ପୀଡ଼ିତ ହୋଇ ଦୁଇ ଗ୍ରେନ୍ ମରଫିୟା ଅର୍ଥାତ୍ ଏକ ପ୍ରକାର ଗରଳ ତୁଲ୍ୟ ଔଷଧ ନିମନ୍ତେ ଡାକ୍ତର ଦେଷ୍ଟି ସାହେବଙ୍କଠାକୁ ଲେଖି-

ଥିଲେ । ଉକ୍ତ ଡାକ୍ତର ସାହେବଙ୍କ ନିକଟରେ ଯେତେବେଳେ ଚିଠି ପହୁଞ୍ଚିଲା ସେତେବେଳେ ସେ ନିଦ୍ରିତ ଥିଲେ । ତନ୍ଦ୍ରାଭଙ୍ଗରୁ ଜାଗ୍ରତ ହୋଇ ଚିଠି ପାଠ କରି ଅନ୍ୟ ମନସ୍କଭାବରେ ଦୁଇ ଗ୍ରେନ୍ ବଦଳରେ ୧୦ ଗ୍ରେନମାରଫିୟା ଲେଖି ଦେଲେ । ଅନନ୍ତର ଔଷଧାଳୟରେ ସେ ଚିଠି ଦେଖାଇବାରୁ ଔଷଧ ବିକ୍ରେତା ୧୦ ଗ୍ରେନର ଗୋଟିଏ ବଟିକା ପ୍ରସ୍ତୁତ କରି ଜେ ମିସନ ସାହେବଙ୍କ-ଠାକୁ ପଠାଇ ଦେଲା । ସେ ସେହି କାଳସ୍ୱରୂପ ବଟିକା ସେବନ କରି ରାତିରେ ପଞ୍ଚତ୍ୱ ପ୍ରାପ୍ତ ହେଲେ । ଚିକିତ୍ସକମାନଙ୍କର ସର୍ବଦା ସାବଧାନ ହୋଇ ଔଷଧାଦି ବିଷୟରେ ଲେଖାପଢ଼ା କରିବାର ଆବଶ୍ୟକ, କାରଣ କି, ସେମାନଙ୍କର ଅସାବଧାନତା ହେତୁରୁ ମନୁଷ୍ୟର ଅମୂଲ୍ୟ ଜୀବନ ନଷ୍ଟ ହେବାର ସମ୍ଭାବନା । ଡାକ୍ତର ବେଟି ସାହେବ ଯେବେ ସାବଧାନ ହୋଇଥାନ୍ତେ ତେବେ ମିସନ ସାହେବଙ୍କର ଏମନ୍ତ ହଠାତ୍ ମୃତ × × × ।

---

ଆମ୍ଭେ × × କାଶ କରୁ × × କୋର୍ଟ ଅଫ ଡିରେକ୍ଟର୍ସ ଦ୍ୱାରା ଗବର୍ଣ୍ଣମେଣ୍ଟର ଅଚୁକ୍ତିତ କର୍ମଚାରୀମାନଙ୍କ ଛୁଟୀ ବିଷୟରେ ଏକ ନୂତନ ବିଧାନ ଧାର୍ଯ୍ୟ ହୋଇଅଛି ଅର୍ଥାତ୍ ଶତସଂଖ୍ୟକ ମୁଦ୍ରା ବେତନଶ୍ରେଣି କର୍ମ ନିର୍ବାହକମାନେ ବର୍ଷେ କର୍ମ କଲେ ମାସେ ଛୁଟୀ ପାଇବେ । ଏ ନିୟମ ସ୍ଥାପିତ ହେବାରୁ ଅତ୍ୟନ୍ତ ପରିଶ୍ରମି କର୍ମକାରକମାନଙ୍କ ପକ୍ଷରେ ଅବଶ୍ୟ ମଙ୍ଗଳ ହୋଇଅଛି ଏଥିରେ ସନ୍ଦେହ କି ? ଗବର୍ଣ୍ଣମେଣ୍ଟର ଚୁକ୍ତିତ କର୍ମଚାରୀମାନେ କିଞ୍ଚିତ୍ ଛଳ ପ୍ରକାଶ କଲାମାତ୍ରକେ ୧୪ ଅବା ୧୫ ମାସର ଛୁଟୀ ଅନାୟାସରେ ପ୍ରାପ୍ତ ହୁଅନ୍ତି ମାତ୍ର ଅଚୁକ୍ତିତ କର୍ମଚାରୀମାନେ କୌଣସି-ରୂପେ ୧୦ ଦିନରୁ ଅଧିକ କଦାପି ଛୁଟୀ ପାଉ ନ ଥିଲେ ବର୍ତ୍ତମାନ ସେମାନଙ୍କର ଏ ଦୁଃଖ ମୋଚନ ହେଲା, ଏଣୁକରି କୋର୍ଟ ଅଫ ଡିରେକ୍ଟର୍ସ ସାହେବମାନଙ୍କୁ ଧନ୍ୟବାଦ କରୁଛୁ ।

---

ସିଟିଜନପତ୍ର ପାଠରେ ଜଣାଗଲା ଯେ, କୋର୍ଟ ଅଫ ଡିରେକ୍ଟର୍ସ ଆଧୁନିକ ଅଚୁକ୍ତିତ କର୍ମଚାରୀମାନଙ୍କ ପ୍ରତି ସଦୟ ହୋଇ ପେନଶନର ନିୟମ ପରିବର୍ତ୍ତନ କରିଅଛନ୍ତି ଅର୍ଥାତ୍ ପୂର୍ବରେ ୩୫ ବର୍ଷ କର୍ମ ନ କଲେ ପେନଶନର ପ୍ରତ୍ୟଧିକାରୀ ହେଉ ନ ଥିଲେ ଏବେ ୨୫ ବର୍ଷ ଉତ୍ତାରୁ ମାସିକ ବେତନରୁ

ଅର୍ଦ୍ଧେଟଙ୍କା ପ୍ରାପ୍ତ ହେବେ । ପୁନଶ୍ଚ ୨୦ ବର୍ଷ କର୍ମ କରି ଯେବେ କେହି ପେନଶନ ନେବାକୁ ବାଞ୍ଛାକରେ ତେବେ ଶେଷ ବେତନର ଦଶ ଅଂଶର ଏକାଂଶ ପାଇବ । ଏ ନିୟମ ସ୍ଥାପିତ ହେବାରୁ ଅଚୁକ୍ତିତ କର୍ମକାରିମାନଙ୍କ ଉପରେ ଗବର୍ଣ୍ଣମେଣ୍ଟର ବିଶେଷାନୁଗ୍ରହ ପ୍ରକାଶ ହୋଇଅଛି ।

———

ଇଂଲଣ୍ଡମ୍ୟାନ ପତ୍ରପାଠରେ ଅବଗତ ହେଲୁ ଯେ, ଅଯୋଧ୍ୟାରାଜ୍ୟ, ଖୋରାବ ଓ ବରାଚ ଓ ଲକ୍ଷ୍ନୌ ଆଉ ସୁଲତାନପୁର ଏ ଚାରି ଅଂଶରେ ବିଭକ୍ତ ହୋଇଅଛି ।

———

ଲର୍ଡ ଡେଲହୌସିଙ୍କ ନାମ ଏହି ଦେଶରେ ଚିରସ୍ମରଣାର୍ଥ ଚାନ୍ଦା ଦ୍ୱାରା ସେହଂ ପ୍ରତିମୂର୍ତ୍ତି ସ୍ଥାପନ ନିମନ୍ତେ ସ୍ୱାକ୍ଷର ହୋଇଅଛି ତହିଁରେ ଲେପଟେନେଣ୍ଟ ଗବର୍ଣ୍ଣର ଶ୍ରୀଯୁକ୍ତ ହେଲିଡେ ସାହେବ ୧୦୦୦ ମୁଦ୍ରା ଓ ଶ୍ରୀଯୁକ୍ତ ବାବୁ ପ୍ରସନ୍ନକୁମାର ଠାକୁର ୫୦୦ ମୁଦ୍ରା ଓ ଅନ୍ୟାନ୍ୟ ଅନେକ ମହାଶୟମାନେ ସୁଖ୍ୟାତି ପ୍ରାପ୍ତି ନିମନ୍ତେ ସ୍ୱ ୨ ନାମ ସ୍ୱାକ୍ଷର କରିଅଛନ୍ତି । ଅଳ୍ପକାଳ ମଧ୍ୟରେ ୫୫୦୦୦ ଟଙ୍କାର ଉର୍ଦ୍ଧ୍ୱ ସଂଗ୍ରହ ହୋଇଅଛି ।

———

ରେଇଲଓଏ କମ୍ପାନିଙ୍କର ସାପ୍ତାହିକ ଆୟ ବିବରଣରୁ ଜଣାଗଲା ଯେ, ଫେବ୍ରୁଏରି ମାସ ୪ ତାରିଖଠାରୁ ୯ ତାରିଖ ପର୍ଯ୍ୟନ୍ତେ ଯାତ୍ରି ଓ ଦ୍ରବ୍ୟାଦି ଭଡ଼ାରେ ସର୍ବସୁଦ୍ଧା ୨୧୧୮୫ ।୮ ଟଙ୍କା ଉତ୍ପନ୍ନ ହୋଇଅଛି ଏବଂତ କ୍ରମେ ମାର୍ଗର ଯେତେ ଦୀର୍ଘତା ବୃଦ୍ଧି ହେବ ତେତେ ଆୟର ଆଧିକ୍ୟ ହେବ ।

———

ଶ୍ରୋତଗାମୀ ହେଲୁ ଯେ, ସୁନ୍ଦରବନର କମିଶନର ଶ୍ରୀଯୁକ୍ତ ବାବୁ ଉମାଚାନ୍ଦ ସେନ ଚିରକାଳ ଅତିସୁଖ୍ୟାତି ସମଭିବ୍ୟାହାରରେ ଉକ୍ତ ପଦର କର୍ମ ନିର୍ବାହ କରି ବର୍ତ୍ତମାନ ପେନଶନ ପ୍ରାର୍ଥନା କରିବାରୁ ଗବର୍ଣ୍ଣମେଣ୍ଟ ତାଙ୍କ ପ୍ରତି ସନ୍ତୁଷ୍ଟ ହୋଇ ତାହାଙ୍କ ପ୍ରାର୍ଥନା ଗ୍ରହଣପୂର୍ବକ ପ୍ରଶଂସିତ ବାବୁଙ୍କୁ ରାୟବାହାଦୁର ଉପାଧି ପ୍ରଦାନ କରିଅଛନ୍ତି ।

ନବଦ୍ୱୀପାଧିପତି ଶ୍ରୀଲ ଶ୍ରୀଯୁକ୍ତ ରାଜା ଶ୍ରୀଶଚନ୍ଦ୍ର ବାହାଦୁର ଓ ଶାନ୍ତିପୁରସ୍ଥ କେତେକ ଭଦ୍ର ଲୋକଙ୍କ ଦ୍ୱାରା ବିଧବା ବିବାହ ପ୍ରଚଳିତ ହେବା ସପକ୍ଷରେ ଏକ ଆବେଦନପତ୍ର ସ୍ୱାକ୍ଷରିତ ହୋଇ ବ୍ୟବସ୍ଥାପକ ସମାଜରେ ଅର୍ପିତ ହୋଇଅଛି । ବୋଧହୁଏ ସେ ସ୍ଥାନର ଡେପୁଟୀ ମାଜିଷ୍ଟ୍ରେଟ ଶ୍ରୀଯୁତ ବାବୁ ଈଶ୍ୱରଚନ୍ଦ୍ର ଘୋଷାଲଙ୍କ ଯତ୍ନରେ ଏହି ଆବେଦନପତ୍ର ପ୍ରସ୍ତୁତ ହୋଇଥିବ ।

ଗବର୍ଣ୍ଣମେଣ୍ଟର ସେକ୍ରେଟେରୀ ମହାଶୟମାନେ ପୂର୍ବରେ ପ୍ରାୟ ବସି ୨ ବେତନ ଭୋଗ କରୁଥିଲେ, ବର୍ତ୍ତମାନ ଶ୍ରୀଯୁକ୍ତ ଲର୍ଡ କେନିଂ ବାହାଦୁରଙ୍କ କର୍ମଠ × ସମସ୍ତେ ଖାଲି × × × ସେ- × × ରାଜ କର୍ମରେ × × ତର କର୍ମ ଅଧେ କଲେ, ଅଧେ ପକାଇ ରଖିଲେ, ଆଉ ସେ କାଳ ନାହିଁ, ଯେ ଯେଉଁ କର୍ମ ଆରମ୍ଭ କରନ୍ତି ସେ ତାହା ନ ସାରିଲେ ଯାଇ ପାରନ୍ତି ନାହିଁ, ବେଲ ଘୃଣଘଣ୍ଟା ବାଜିଲେ ସମସ୍ତଙ୍କର ଅନ୍ତଃକରଣରେ ଯିବାର ଉଦ୍‌ବେଗ ହୁଏ ମାତ୍ର ଉପରେ ମୁଦ୍‌ଗର ହସ୍ତରେ ଗୌର ବାବୁମାନେ ତେମନ୍ତ ବସିଥାନ୍ତି, ଇହା ଏକ ପ୍ରକାର ଭଲ ହୋଇଅଛି, ଆଉ ଗବର୍ଣ୍ଣମେଣ୍ଟର କର୍ମ ପଡ଼ି ରହିବ ନାହିଁ, ଆମ୍ଭେମାନେ ପ୍ରାର୍ଥନା କରୁଁ କି ଲର୍ଡ ବାହାଦୁର ରାଜ କର୍ମରେ ଏହିରୂପ ସାବଧାନ ଥାଉନ୍ତୁ ।

---

କୌଣସି ମର୍ଯ୍ୟାଦାବନ୍ତ ହିନ୍ଦୁ ଆପଣା ସ୍ତ୍ରୀ ବିଷୟରେ ନିଷ୍ଠୁର ବ୍ୟବହାର କଲେ ମାଜିଷ୍ଟ୍ରେଟ ସାହେବ ଉକ୍ତ ସ୍ତ୍ରୀର ଆବେଦନ ପ୍ରମାଣେ ଅସଦ୍‌ବ୍ୟବହାରର ପ୍ରମାଣ ନେଇ ଦୁର୍ଜନ ସ୍ୱାମି ହସ୍ତରୁ ତାକୁ ମୁକ୍ତ କରିପାରନ୍ତି କି ନାହିଁ ? ଜିଲ୍ଲା ଚବିଶପରଗଣାର ଜଜ ଓ ମାଜିଷ୍ଟ୍ରେଟ ସାହେବଙ୍କ ମଧ୍ୟରେ ଏହି ବିଷୟରେ ରାୟ ଅମେଳ ହୋଇଥିଲା, ମାଜିଷ୍ଟ୍ରେଟ ସାହେବ କହୁଥିଲେ ସେ ଉକ୍ତ ପ୍ରକାର ସ୍ତ୍ରୀକୁ ସ୍ୱାମି ହସ୍ତରୁ ମୁକ୍ତ କରି ପାରନ୍ତି, ସେଶନ ଜଜ ସାହେବ କହୁଥିଲେ ମାଜିଷ୍ଟ୍ରେଟ ସାହେବଙ୍କର ତଦ୍ଵିଷୟରେ ହସ୍ତକ୍ଷେପ × × ନାହିଁ, ଶେଷରେ × × ସ୍ୱାମୀ ଅ × × ଜଜମାନେ × × ରେ ସମ୍ମତ ହୋଇଅଛନ୍ତି ।

ବର୍ତ୍ତମାନ ମାଜିଷ୍ଟ୍ରେଟ ସାହେବମାନେ ଉକ୍ତ ପ୍ରକାର ସ୍ତ୍ରୀଙ୍କୁ ଦୁର୍ବୃତ୍ତ ସ୍ୱାମିମାନଙ୍କ ହସ୍ତରୁ ମୁକ୍ତ କରିବାର କ୍ଷମତା ପାଇଲେ, ଏଥିରେ ହିନ୍ଦୁ ଲୋକଙ୍କ ମଧ୍ୟରେ ମାନ୍ୟ ଲୋକେ ଅପମାନିତ ହେବେ, ଅନେକ କୁଳାଙ୍ଗନାମାନେ ସ୍ୱାମୀର ଅସଦ୍ବ୍ୟବହାର ଓ କୁତ୍ସିତାଚରଣ ସହ୍ୟ କରି ନ ପାରି ମାଜିଷ୍ଟ୍ରେଟଙ୍କ

ଆଜ୍ଞାରେ ସ୍ୱତନ୍ତ୍ର ହେବେ, ଆମ୍ଭେମାନେ ଏ ନୂତନ ବିଧି ଶ୍ରବଣ କରି ଦୁଃଖିତ ନାହୁଁ କାରଣ କି, ଏଦେଶୀୟ ଅନେକ ଲୋକେ ସ୍ତ୍ରୀମାନଙ୍କୁ ଦାସୀ ଜ୍ଞାନକରି ସେମାନଙ୍କ ଉପରେ ଅତ୍ୟନ୍ତ କୁବ୍ୟବହାର ଏବଂତ ଅସଦାଚାର କରନ୍ତି, ଏ ବିଧାନ ହେତୁରୁ ସେମାନେ ନମ୍ର ହେବେ ଆଉ ସ୍ତ୍ରୀମାନଙ୍କ ଉପରେ ଅକାରଣ କଣ୍ଠଗର୍ଜନ କରି ପାରବେ ନାହିଁ ।

---

## ୧୬୭୩ ସାଲ ମେଷ ମାସର ଉତ୍କଳ ପଞ୍ଜିକା

୧ ମେଷ । ଶୁକ୍ରବାର ସପ୍ତମୀ ୫୧ । ୧୬ ଆର୍ଦ୍ରା ୩୦ । ୨୪ ମିଥୁନ ୬୦ ଅତିଗଣ୍ଡ ୨୯ । ୨୬ ଗର ୨୧ । ୫ ରବ୍ୟଂଶ ୨୯୪୩ । ୪୦ ଦିନାର୍ଦ୍ଧ ୧୫ । ୩୧ ପଣା ଯାତ୍ରା । ଏପ୍ରେଲ ୧୧ ତାରିଖ । କଚେରୀ ବନ୍ଦ ।

୨ ମେଷ । ଶନିବାର ଅଷ୍ଟମୀ ୫୧ । ୫୮ ପୁନର୍ବସୁ ୩୨ । ୧୭ ମିଥୁନ ୧୬ । ୪୪ ଶୁଭକର୍ମ ୨୬ । ୫୪ ବିଷ୍ଟି ୨୧ । ୩୭ ରବ୍ୟଂଶ ୦୪୩ । ୧୬ ଦିନାର୍ଦ୍ଧ ୧୫ । ୩୧ ଅଶୋକାଷ୍ଟମୀ । ଚୈତ୍ର ଗୁଣ୍ଡିଚ୍ଚ । ଏପ୍ରେଲ ୧୨ ତାରିଖ ।

୩ ମେଷ । ରବିବାର ନବମୀ ୫୪ । ୩୭ ପୁଷ୍ୟା ୩୫ । ୫୪ କର୍କଟ ୬୦ ଧୃତି ୫୮ । ୪୮ ବାଲବ ୨୩ । ୩୭ ରବ୍ୟଂଶ ୧୪୧ । ୪ ଦିନାର୍ଦ୍ଧ ୧୫ । ୩୧ ରାମନବମୀ । ଏପ୍ରେଲ ୧୩ ତାରିଖ ।

୪ ମେଷ । ସୋମବାର ଦଶମୀ ୫୭ । ୪୫ ଅଶ୍ଳେଷା ୪୦ । ୪୩ କର୍କଟ ୪୦ । ୪୩ ଶୂଳ ୨୫ । ୨୫ ତୈତିଲ ୨୬ । ୨୨ ରବ୍ୟଂଶ ୨୩୯ । ୧୦ ଦିନାର୍ଦ୍ଧ ୧୫ । ୩୨ ରାତ୍ରି ୨୫ ଦଣ୍ଡ ଉତ୍ତାରୁ ୧୦ ନକ୍ଷତ୍ରେ ବିବାହ । ଏପ୍ରେଲ ୧୪ ତାରିଖ ।

୫ ମେଷ । ମଙ୍ଗଳବାର ଏକାଦଶୀ ୬ ମଘା ୪୫ । ୩୮ ସିଂହ ୬୦ ଗଣ୍ଡ ୨୬ । ୫୦ ବାଣିଜ୍ୟ ୩୦ । ୧୮ ରବ୍ୟଂଶ ୩୩୮ । ୧୦ ଦିନାର୍ଦ୍ଧ ୧୫ । ୩୪ ଦି ୩୦ । ୧୮ ଭିତରେ ୧୦ ନକ୍ଷତ୍ରେ ବିବାହ । ଏପ୍ରେଲ ୧୫ ତାରିଖ ।

୬ ମେଷ । ବୁଧବାର ଏକାଦଶୀ ୨ । ୨୫ ପୂର୍ବାଫାଲ୍‌ଗୁନୀ ୫୨ । ୦ ସିଂହ ୬୦ ବୃଦ୍ଧି ୨୭ ୨୦ ବିଷ୍ଟି ୨ । ୨୫ ରବ୍ୟଂଶ ୪୩୬ । ୨୨ ଦିନାର୍ଦ୍ଧ ୧୫ । ୩୫ ରାତ୍ରି ୨୧ ଦଣ୍ଡ ଉତ୍ତାରୁ ୧୨ ନକ୍ଷତ୍ରେ ବିବାହ ୧୩ ନ ବୃହସ୍ପତି ବେଧ । ଏପ୍ରେଲ ୧୬ ତାରିଖ ।

୭ ମେଷ । ଗୁରୁବାର ଦ୍ୱାଦଶୀ ୭।୩୫ ଉତ୍ତରଫାଲ୍ଗୁନୀ ୫୮ । ୪୫ ସିଂହ ୯ । ୨୦ ଧ୍ରୁବ ୨୮ । ୫୦ ବାଲବ ୭ । ୨୮ ରବ୍ୟଂଶ ୫।୩୫ । ୧୦ ଦିନାର୍ଦ୍ଧ ୧୫ । ୩୭ ଦ ୯ । × × × ନକ୍ଷତ୍ରେ ବିବାହ । ଏପ୍ରେଲ ୧୭ ତାରିଖ ।

୮ ମେଷ । ଶୁକ୍ରବାର ତ୍ରୟୋଦଶୀ ୧୨ । × × × × ୬୦ ବ୍ୟାଘାତ ୩୦ । ୧୦ ତୈତିଳ ୧୨ × × × ୩ । ୪୮ ଦିନାର୍ଦ୍ଧ ୧୫ । ୩୮ ନ ୧୩ ବୃହସ୍ପତି ବେଧ । ଏପ୍ରେଲ ୧୮ ତାରିଖ ।

୯ ମେଷ । ଶନିବାର ଚତୁର୍ଦ୍ଦଶୀ ୨୭ । ୧୦ ହସ୍ତା ୫ । ୨୨ କନ୍ୟା ୩୭ । ୪୧ ହର୍ଷଣ ୩୧ । ୧୦ ବାଣିଜ୍ୟ ୧୭ । ୩୩ ରବ୍ୟଂଶ ୭।୩୨ । ୧୦ ଦିନାର୍ଦ୍ଧ ୧୫ । ୩୯ ଦମନକ ଚତୁର୍ଦ୍ଦଶୀ । ଏପ୍ରେଲ ୧୯ ତାରିଖ ।

୧୦ ମେଷ । ରବିବାର ପୌର୍ଣ୍ଣମୀ ୨୨ । ୧୩ ଚିତ୍ରା ୧୧ । ୧୮ ତୁଳ ୬୦ ବଜ୍ର ୩୨ । ୨୧ ବବ ୨୨ । ୧୩ ରବ୍ୟଂଶ ୮।୩୦ । ୫୧ ଦିନାର୍ଦ୍ଧ ୧୫ । ୪୧ ଏପ୍ରେଲ ୨୦ ତାରିଖ । ରବିବାର; ମାତ୍ର ଯେବେ ଚନ୍ଦ୍ର ଏପ୍ରେଲ ମାସ ୭ ତାରିଖରେ ଦେଖା ନ ଯାଏ ତେବେ ଏପ୍ରେଲ ମାସ ୨୧ ତାରିଖ ସୋମବାର କଚେରୀ ବନ୍ଦ ହେବ ।

୧୧ ମେଷ । ସୋମବାର ପ୍ରତିପଦା ୨୬ । ୧୦ ସ୍ୱାତି ୧୬ । ୪୨ ତୁଳ ୬୦ ସିଦ୍ଧି ୩୩ । ୨୦ କୌଳବ ୨୬ । ୧୦ ରବ୍ୟଂଶ ୯।୨୯ । ୭ ଦିନାର୍ଦ୍ଧ ୧୫ । ୪୩ ଏପ୍ରେଲ ୨୧ ତାରିଖ ।

୧୨ ମେଷ । ମଙ୍ଗଳବାର ଦ୍ୱିତୀୟା ୨୮ । ୨୨ ବିଶାଖା ୨୦ । ୩୭ ତୁଳ ୪ । ୩୮ ବ୍ୟତୀପାତ ୩୨ । ୧୩ ଗର ୨୮ । ୨୨ ରବ୍ୟଂଶ ୧୦।୨୭ । ୫୦ ଦିନାର୍ଦ୍ଧ ୧୫ । ୦୪ ଅନଧ୍ୟସ୍ନ ରାତ୍ରି ଦ ୪ । ୨୦ ଉତ୍ତାରେ ବିବାହ । ବିଜୟା ୩ ଏପ୍ରେଲ ୨୨ ତାରିଖ ।

୧୩ ମେଷ । ବୁଧବାର ତୃତୀୟା ୨୯ । ୧୨ ଅନୁରାଧା ୨୩ । ୨୦ ବୃଶ୍ଚିକ ୬୦ ବରୀୟାନ ୩୦ । ୧୦ ବିଷ୍ଟି ୨୯ । ୧୨ ରବ୍ୟଂଶ ୧୧।୨୫ । ୨୮ ଦିନାର୍ଦ୍ଧ ୧୫ । ୪୫ ଏପ୍ରେଲ ୨୩ ତାରିଖ ।

୧୪ ମେଷ । ଗୁରୁବାର ଚତୁର୍ଥୀ ୨୯ । ୦ ଜ୍ୟେଷ୍ଠା ୨୫ । ୨ ବୃଶ୍ଚିକ ୨୫ । ୨ ପରିଘ ୨୭ । ୧୨ ବାଲବ ୨୯ । ୦ ରବ୍ୟଂଶ ୧୨।୨୩ । ୫୮ ଦିନାର୍ଦ୍ଧ ୧୫ । ୪୭ ଏପ୍ରେଲ ୨୪ ତାରିଖ ।

୧୫ ମେଷ । ଶୁକ୍ରବାର ପଞ୍ଚମୀ ୨୭ । ୪୨ ମୂଳା ୨୫ । ୪୦ ଧନୁ ୬୦ ଶିବ ୨୩ । ୫୦ ତୈତିଳ ୨୭ । ୫୦ ରବ୍ୟଂଶ ୧୩୨୨ । ୧୦ ଦିନାର୍ଦ୍ଧ ୧୫।୪୮ ଦ ୨୭।୪୨ ଉତ୍ତାରୁ ଦଗ୍ଧ ଷଷ୍ଠୀ । ଏପ୍ରେଲ ୨୫ ତାରିଖ ।

୧୬ ମେଷ । ଶନିବାର ଷଷ୍ଠୀ ୨୫ । ୨୨ ପୂର୍ବାଷାଢ଼ା ୨୪ । ୫୦ ଧନୁ ୩୮ । ୫୭ ସିଦ୍ଧି ୧୯ । ୧୦ ବାଣିଜ୍ୟ ୨୫ । ୧୨ ରବ୍ୟଂଶ ୧୪୨୦ । ୧୦ ଦିନାର୍ଦ୍ଧ ୧୫ । ୧୯ ଦଗ୍ଧ ଷଷ୍ଠୀ ଦ ୨୫ ରାତ୍ର ୨୫ ଦଣ୍ଡ ଉତ୍ତାରୁ ୧୨ ନକ୍ଷତ୍ରେ ବିବାହ । ଏପ୍ରେଲ ୨୬ ତାରିଖ ।

୧୭ ମେଷ । ରବିବାର ସପ୍ତମୀ ୨୦ । ୩୦ ଉତ୍ତରାଷାଢ଼ା ୨୩ । ୫୦ ମକର
× × × ୨ ବବ ୨୪ । ୧୩ ରବ୍ୟଂଶ ୧୫୧୮ । ୪୬
× × × ୧୩ । ୨୦ ଭିତରେ କ ୨୧ ବିବାହ ।
× × × ।

୧୮ ମେଷ । ସୋମବାର ଅଷ୍ଟମୀ ୧୭ । ୫ ଶ୍ରବଣା ୨୦ । ୧୦ ମକର ୪୯ । ୧୫ ଶୁଭ ୬ । ୩୭ କୌଳବ ୧୭ । ୫ ରବ୍ୟଂଶ ୧୬୧୬ । ୪୮ ଦିନାର୍ଦ୍ଧ ୧୫ । ୫୨ ଏପ୍ରେଲ ୨୮ ତାରିଖ ।

୧୯ ମେଷ । ମଙ୍ଗଳବାର ନବମୀ ୧୧ । ୫୨ ଧନିଷ୍ଠା ୧୭ । ୧୦ କୁମ୍ଭ ୬୦ ଶୁକ୍ଳ ୦ । ୫୦ ଗର ୧୧ । ୫୨ ରବ୍ୟଂଶ ୧୭୧୫ । ୨୮ ଦିନାର୍ଦ୍ଧ ୧୫ । ୫୩ ଯୋଗକ୍ଷୟ ଦ ୫୪ ଏପ୍ରେଲ ୨୯ ତାରିଖ ।

୨୦ ମେଷ । ବୁଧବାର ଦଶମୀ ୬ । ୨୦ ଶତଭିଷା ୧୩ । ୨୦ କୁମ୍ଭ ୫୫ । ୧୦ ଇନ୍ଦ୍ର ୪୬ । ୭ ବିଷ୍ଟି ୬ । ୨୦ ରବ୍ୟଂଶ ୧୮୧୩ । ୧୭ ଦିନାର୍ଦ୍ଧ ୧୫ । ୫୪ ଦ ୬ । ୨୦ ଉତ୍ତାରୁ ଦ ୭ ଭିତରେ ବ୍ରତ । ଏପ୍ରେଲ ୩୦ ତାରିଖ ।

୨୧ ମେଷ । ଗୁରୁବାର ଏକାଦଶୀ ୦ । ୩୦ ପୂର୍ବଭାଦ୍ର ୯ । ୩୫ ମୀନ ୬୦ ବୈଧୃତି ୩୮ । ୧୦ ବାଳବ ୦ । ୩୦ ରବ୍ୟଂଶ ୧୯୧୧ । ୩୦ ଦିନାର୍ଦ୍ଧ ୧୫ । ୫୭ ତିଥିକ୍ଷୟ ୫୪ । ୪ ମେ ୧ ତାରିଖ ।

୨୨ ମେଷ । ଶୁକ୍ରବାର ତ୍ରୟୋଦଶୀ ୪୧ । ୦ ଉତ୍ତରଭାଦ୍ର ୫ । ୨୫ ମୀନ ୬୦ ବିଷ୍କୁମ୍ଭ ୩୦ । ୧୮ ଗର ୨୧ । ୨୦ ରବ୍ୟଂଶ ୨୦୮ । ୪୮ ଦିନାର୍ଦ୍ଧ ୧୫ । ୫୭ ମେ ୨ ତାରିଖ ।

୨୩ ମେଷ । ଶନିବାର ଚତୁର୍ଦ୍ଦଶୀ ୪୨ । ୨୦ ରେବତୀ ୧ । ୧୪ ମୀନ ୧ । ୧୪ ପ୍ରୀତି ୨୨ । ୧୫ ବିଷ୍ଟି ୧୫ । ୩୪ ରବ୍ୟଂଶ ୨୧୬ । ୧୮ ଦିନାର୍ଦ୍ଧ ୧୫ । ୫୮ ଶିବ ଚତୁର୍ଦ୍ଦଶୀ । ମେ ୩ ତାରିଖ ।

୨୪ ମେଷ । ରବିବାର ଅମାବାସ୍ୟା ୩୭ । ୨୦ ଭରଣୀ ୫୪ । ୧୦ ମେଷ ୬୦ ଆୟୁଷ୍ମାନ ୧୫ । ୩୫ ନାଗ ୯ । ୫୫ ରବ୍ୟଂଶ ୨୨୪ । ୫୫ ଦିନାର୍ଦ୍ଧ ୧୫ । ୫୯ ମେ ୪ ତାରିଖ ।

୨୫ ମେଷ । ସୋମବାର ପ୍ରତିପଦା ୩୩ । ୦ କୃତ୍ତିକା ୫୨ । ୧୦ ମେଷ ୯ । ୨୨ ସୌଭାଗ୍ୟ ୯ । ୨୨ କିସ୍ତୁଘ୍ନ ୫ । ୧୦ ରବ୍ୟଂଶ ୨୩୨ । ୫୦ ଦିନାର୍ଦ୍ଧ ୧୫ । ୫୯ ମେ ୫ ତାରିଖ ।

୨୬ ମେଷ । ମଙ୍ଗଳବାର ଦ୍ୱିତୀୟା ୨୯ । ୦ ରୋହିଣୀ ୫୦ । ୧୫ ବୃଷ ୬୦ ଶୋଭନ ୩ । ୩୦ ବାଲବ ୨୯ । ୦ ରବ୍ୟଂଶ ୨୪୦ । ୨୦ ଦିନାର୍ଦ୍ଧ ୧୫ । ୫୯ ଯୋଗକ୍ଷୟ ୫୫ ମେ ୬ ତାରିଖ ।

୨୭ ମେଷ । ବୁଧବାର ତୃତୀୟା ୨୬ । ୨ ମୃଗଶିର ୪୯ । ୨ ବୃଷ ୧୯ । ୫୦ ଶୁଭକର୍ମ ୫୩ । ୨୦ ଗର ୨୬ । ୨ ରବ୍ୟଂଶ ୨୪୫୮ । ୫୯ ଦିନାର୍ଦ୍ଧ ୧୬ । ୨ ଅକ୍ଷୟତୃତୀୟା । ଚନ୍ଦନ ଯାତ୍ରା ସତ୍ୟ ଯୁଗାଦି । ମେ ୭ ତାରିଖ ।

୨୮ ମେଷ । ଗୁରୁବାର ଚତୁର୍ଥୀ ୨୪ । × × ନ ୬୦ ଧୃତି ୫୦ । ୧୦ ବଣିଜ ୨୪ । ୦ × ଦିନାର୍ଦ୍ଧ ୧୬ । ୪ ମେ ୮ ତାରିଖ ।

୨୯ ମେଷ । ଶୁକ୍ରବାର ପଞ୍ଚମୀ ୨୩ । ୪୦ ପୁନର୍ବସୁ ୫୧ । ୫୨ ମିଥୁନ ୩୬ । ୨୨ ଶୂଳ ୪୭ । ୨୫ ବାଲବ ୨୩ । ୪୨ ରବ୍ୟଂଶ ୨୬୫୩ । ୫୮ ଦିନାର୍ଦ୍ଧ ୧୬ ୫ ମେ ୯ ତାରିଖ ।

୩୦ ମେଷ । ଶନିବାର ଷଷ୍ଠୀ ୨୪ । ୩୦ ପୁଷ୍ୟା ୫୪ । ୦୫ କର୍କଟ ୬୦ ଗଣ୍ଡ ୪୫ । ୧୦ ତୈତିଳ ୨: । ୩୦ ରବ୍ୟଂଶ ୨୭୫୧ । ୪୭ ଦିନାର୍ଦ୍ଧ ୧୬ । ୪ ଦଗ୍ଧଷଷ୍ଠୀ ଦ ୨ । ୩୦ ମେ ୧୦ ତାରିଖ ।

୩୧ ମେଷ । ରବିବାର ସପ୍ତମୀ ୨୬ । ୫୨ ଅଶ୍ଳେଷା ୫୮ । ୪୭ କର୍କଟ ୫୮ । ୪୭ ବୃଦ୍ଧି ୪୫ । ୨୦ ବାଣିଜ୍ୟ ୨୬ । ୫୨ ରବ୍ୟଂଶ ୨୮୪୯ । ୧୪ ଦିନାର୍ଦ୍ଧ ୧୬ । ୬ ନୀଳାଦ୍ରି ମହୋଦୟ । ମେ ୧୧ ତାରିଖ ।

...*...

ଏ ପୁସ୍ତକର ତଳଲେଖିତ ଗ୍ରାହକ ମହାଶୟମାନେ ୧୮୫୬ ସାଲର ସମ୍ପୂର୍ଣ୍ଣ ମୂଲ୍ୟ ପ୍ରଦାନ କରିଅଛନ୍ତି, ଯଥା ।

---

୩୦ । ଶ୍ରୀଯୁକ୍ତ ପାଦ୍ରୀ ଜେ ବକଲ ସାହେବ — — ଟ ୧।
୩୧ । ,, ବାବୁ ଚମନ ଲା ଯାଚକ — — ଟ ୧।

W. C. Lacey
ସମ୍ପାଦକ ।

# ପ୍ରବୋଧ ଚନ୍ଦ୍ରିକା

୫ ସଂଖ୍ୟା ।

ସନ ୧୨୬୩ । ବୃଷ ।  ✳  ସନ ୧୮୫୭ । ମେ ।

## ବିଷ୍ଣୁଶର୍ମକର୍ତ୍ତୃକ ହିତୋପଦେଶଃ ॥

---

ସେ ଶୃଗାଳ × × × ରେ କହିଲା, ମୃଗର ପ୍ରଥମ ଦର୍ଶନ ଦିନ ଆପଣ ସୁଦ୍ଧା × × × ତେବେ କି ପ୍ରକାରେ ଆପଣଙ୍କ ସହିତ ଇହାଙ୍କର ଉତ୍ତରୋତ୍ତର ପ୍ରୀତି ବଢୁଅଛି ? ଆହୁ ଶୁଣ,

ଯତ୍ର ବିଦ୍ୱଜ୍ଜନୋ ନାସ୍ତି ଶ୍ଲାଘ୍ୟସ୍ତତ୍ରାଲ୍ପଧୀରପି ।
ନିରସ୍ତପାଦପେ ଦେଶେ ଏରଣ୍ଡୋଽପି ଦ୍ରୁମାୟତେ ॥

ଯେଉଁଠାରେ ପଣ୍ଡିତ ଲୋକ ନ ଥାଏ ସେଠାରେ ଅଳ୍ପବୁଦ୍ଧି ଲୋକ ସୁଦ୍ଧା ପ୍ରଶଂସିତ ହୁଏ; ଯେଉଁ ଦେଶରେ ବୃକ୍ଷ ନାହିଁ ସେ ଦେଶରେ ଏରଣ୍ଡସୁଦ୍ଧା ବୃକ୍ଷ ହୁଏ ।

ଅୟଂ ନିଜଃ ପରୋ ବେତି ଗଣନା ଲଘୁଚେତସାଂ ।
ଉଦାରଚରିତାନାଂ ତୁ ବସୁଧୈବ କୁଟୁମ୍ବକଂ ॥

ଅଥଚ ଏ ଆତ୍ମୀୟ, ଏ ପର, ଏହି ଗଣନା କ୍ଷୁଦ୍ରାନ୍ତଃକରଣ ଲୋକଙ୍କର ହୁଏ; ସଚ୍ଚରିତ୍ର ଲୋକଙ୍କର ପୃଥିବୀରେ ସକଳ ଲୋକେ ଆତ୍ମୀୟ ହୁଅନ୍ତି । ଯେମନ୍ତ ଏହି ମୃଗ ଆମ୍ଭର ମିତ୍ର, ତେମନ୍ତ ଆପଣ ସୁଦ୍ଧା ଆମ୍ଭର ମିତ୍ର ଅଟ । ହରିଣ କହିଲା, ଏ ଉତ୍ତରରେ କି ପ୍ରୟୋଜନ ? ଏକତ୍ର ସମସ୍ତେ ପ୍ରଣୟାଳାପ କରି ସୁଖରେ ରହିବା; ଯେହେତୁରୁ,

ନ କଶ୍ଚିତ୍ କସ୍ୟଚନ୍ମିତ୍ରଂ ନ କଶ୍ଚିତ୍ କସ୍ୟଚଦ୍ରିପୁଃ ।
ବ୍ୟବହାରେଣ ମିତ୍ରାଣି ଜାୟନ୍ତେ ରିପବସ୍ତଥା ॥

ସ୍ୱଭାବରେ କେହି କାହାର ମିତ୍ର ନୁହେ, କେହି କାହାର ମଧ୍ୟ ଶତ୍ରୁ ନୁହେ, କିନ୍ତୁ ବ୍ୟବହାରରେ ମିତ୍ର ଓ ଶତ୍ରୁ ହୁଅନ୍ତି । ତହିଁ ଉତ୍ତାରୁ କାକ କହିଲା, ଏମନ୍ତ ହେଉ । ଅନନ୍ତର ପ୍ରାତଃକାଳରେ ସମସ୍ତେ ଆପଣା ୨ ଅଭିଲଷିତ ଦେଶକୁ ଗଲେ ।

ଥରେ ନିର୍ଜନରେ ଜମ୍ବୁକ କହୁଅଛି, ହେ ମିତ୍ର ମୃଗ, ଏହି ବନର ଏକ ପ୍ରଦେଶରେ ଶସ୍ୟପୂର୍ଣ୍ଣ କ୍ଷେତ୍ର ଅଛି, ଆମ୍ଭେ ତୁମ୍ଭଙ୍କୁ ଘେନି ଯାଇ ଦେଖାଇ ଦେବା । ଇହା କହି ତାହା ଦେଖାଇଲାରୁ ହରିଣ ପ୍ରତିଦିନ ସେଠାକୁ ଯାଇ ଶସ୍ୟ ଖାଏ । ତତ୍ପରେ କ୍ଷେତ୍ର ଦେଖି କ୍ଷେତ୍ରସ୍ୱାମୀ ଜାଲ ଯୋଜିତ କଲା । ତଦନନ୍ତର ପୁନର୍ବାର ମୃଗ ଆସି ପାଶରେ ବଦ୍ଧ ହୋଇ ଚିନ୍ତା କଲା, ମିତ୍ର ବ୍ୟତିରେକେ କିଏ ଆମ୍ଭଙ୍କୁ ଯମପାଶରୂପୀ ଏହି ବ୍ୟାଧ ପାଶରୁ ପରିତ୍ରାଣ କରିବାକୁ ସମର୍ଥ ହେବ ? ତତ୍ପରେ ଜମ୍ବୁକ ସେଠାରେ ଉପସ୍ଥିତ ହୋଇ ଭାବନା କଲା, ଏତେ ଦିନରେ ଆମ୍ଭର କାପଟ୍ୟରେ ମନୋଭିଳାଷ ସିଦ୍ଧ ହେଲା । କ୍ଷେତ୍ରସ୍ୱାମୀ ଯେତେବେଳେ ଏହି ମୃଗର × × × ତେତେବେଳେ ରକ୍ତରେ ଲିପ୍ତ ଅସ୍ଥି ଆମ୍ଭେ × × × ଯଥେଷ୍ଟରୂପେ ଭୋଜନ ହେବ । ହରିଣ ତାକୁ × × × କହୁଅଛି, ସଖେ ଶୃଗାଳ, ଆମ୍ଭର ବନ୍ଧନ ଛେଦନ କର, × × ଆମ୍ଭଙ୍କୁ ରକ୍ଷା କର; ଯେହେତୁରୁ,

ଆପତ୍ସୁ ମିତ୍ରଂ ଜାନୀୟାତ୍ ଯୁଦ୍ଧେ ଶୂରମୃଣେ ଶୁଚିଂ ।
ଭାର୍ଯ୍ୟାଂ କ୍ଷୀଣେଷୁ ବିତ୍ତେଷୁ ବ୍ୟସନେଷୁ ଚ ବାନ୍ଧବାନ୍ ॥

ମିତ୍ରକୁ ବିପତ୍ତି କାଳରେ, ଆଉ ଶୂରକୁ ଯୁଦ୍ଧରେ, ଏବଂ ଶୁଚିକୁ ଋଣରେ, ଆଉ ନିର୍ଦ୍ଧନ ହେଲେ ଭାର୍ଯ୍ୟାକୁ, ଓ ଦୁଃଖ କାଳରେ ବାନ୍ଧବକୁ ଜାଣିବ ।

ଉତ୍ସବେ ବ୍ୟସନେ ଚୈବ ଦୁର୍ଭିକ୍ଷେ ରାଷ୍ଟ୍ରବିପ୍ଳବେ ।
ରାଜଦ୍ୱାରେ ଶ୍ମଶାନେ ଚ ଯସ୍ତିଷ୍ଠତି ସ ବାନ୍ଧବଃ ॥

ଏବଂ ଉତ୍ସବରେ, ବ୍ୟସନରେ, ଦୁର୍ଭିକ୍ଷ କାଳରେ, ଦେଶୋପଦ୍ରବରେ, ରାଜଦ୍ୱାରରେ, ଓ ଶ୍ମଶାନରେ ଯେ ସହାୟ ହୁଏ, ସେହି ବାନ୍ଧବ ଅଟେ ।

ଶୃଗାଲ ପାଶ ଦେଖି ବାରମ୍ବାର ଚନ୍ତା କଲା, ଏହି ବନ୍ଧନ ଦୃଢ଼ ଅଟଇ; ଆଉ କହିଲା, ହେ ମିତ୍ର ଏ ପାଶ ଚର୍ମରଚିତ ଏହି ହେତୁରୁ ଆଜ ରବିବାର କିପ୍ରକାରେ ଇହା ଦନ୍ତରେ ସ୍ପର୍ଶ କରିବା ? ସଖେ, ଯେବେ ଅନ୍ତଃକରଣରେ ଅନ୍ୟ ପ୍ରକାର ନ ମଣ, ତେବେ ତୁମ୍ଭେ ଯାହା କହିବ ତାହା ପ୍ରାତଃକାଳରେ ଆମ୍ଭେ ଅବଶ୍ୟ କରିବା ।

ଅନନ୍ତର ସେ କାକ ସନ୍ଧ୍ୟାବେଳେ ମୃଗ ଆସି ନ ଥିବାର ଦେଖି ଇତସ୍ତତ ଅନ୍ୱେଷଣ କରି ସେହି ପ୍ରକାର ଦେଖି କହିଲା, ସଖେ, ଏ କି ? ମୃଗ କହିଲା, ହେ ମିତ୍ର, ମିତ୍ରବାକ୍ୟ ଅବଜ୍ଞାର ଫଳ ଏହି । ପଣ୍ଡିତମାନେ ତାହା କହିଅଛନ୍ତି,

ସୁହୃଦାଂ ହିତକାମାନାଂ, ଯଃ ଶୃଣୋତି ନ ଭାଷିତଂ ।
ବିପତ୍ସନ୍ନିହିତା ତସ୍ୟ ସ ନରଃ ଶତ୍ରୁନନ୍ଦନଃ ॥

ହିତାଭିଳାଷି ମିତ୍ର ଲୋକଙ୍କର କଥା ଯେ ନ ଶୁଣେ, ତାହାର ବିପତ୍ତି ଅତି ନିକଟ, ଆଉ ସେ ଲୋକ ଶତ୍ରୁର ଆନନ୍ଦଜନକ ହୁଏ । କାକ କହୁଅଛି, ସେ ବଞ୍ଚକ କେଉଁଠାରେ ଅଛି ? ହରିଣ କହିଲା, ସେ ଆମ୍ଭର ମାଂସ ଭୋଜନ ନିମନ୍ତେ ଏହିଠାରେ ଅଛି । କାକ କହୁଅଛି, ଆମ୍ଭେ ପୂର୍ବରେ କହିଅଛୁଁ,

ଅପରାଧୋ ନ ମେଽସ୍ତୀତି ନୈତଦ୍ବିଶ୍ୱାସ କାରଣଂ ।
ବିଦ୍ୟ × × ଶଂସେଭ୍ୟୋ ଭୟଂ ଗୁଣବତାମପି ॥

ଆମ୍ଭର × × ଅବିଶ୍ୱାସର କାରଣ ନୁହେ, ଯେ ହେତୁରୁ ଖଳ ଲୋକଠାରୁ × × × ଅଛି । ଆଉ ଶୁଣ,

× × × ସୁହୃଦ୍ବାକ୍ୟମରୁନ୍ଧତୀଂ ।
ନ ଜିଘ୍ରନ୍ତି ନ ଶୃଣ୍ୱନ୍ତି ନ ପଶ୍ୟନ୍ତି ଗତାୟୁଷଃ ॥

ଗତାୟୁ ଲୋକେ ପ୍ରଦୀପନିର୍ବାଣର ଗନ୍ଧପ୍ରାପ୍ତ ହୁଅନ୍ତି ନାହିଁ, ମଧ୍ୟ ସୁହୃଲ୍ଲୋକର ବାକ୍ୟସବୁ ଶୁଣନ୍ତି ନାହିଁ, ଏବଂ ଅରୁନ୍ଧତୀନାମକ ନକ୍ଷତ୍ରକୁ ଦେଖି ପାରନ୍ତି ନାହିଁ ।

ପରୋକ୍ଷେ କାର୍ଯ୍ୟହନ୍ତାରଂ ପ୍ରତ୍ୟକ୍ଷେ ପ୍ରିୟବାଦିନଂ ।
ବର୍ଜୟେତ୍ତାଦୃଶଂ ମିତ୍ରଂ ବିଷକୁମ୍ଭଂ ପୟୋମୁଖଂ ॥

ଆଉ ଅସାକ୍ଷାତରେ କାର୍ଯ୍ୟହନ୍ତା ଓ ସାକ୍ଷାତରେ ପ୍ରିୟବାଦୀ ଏମନ୍ତ ମିତ୍ରକୁ ତ୍ୟାଗ କରିବ, ଯେମନ୍ତ ମୁଖରେ କିଞ୍ଚିତ୍ ଦୁଗ୍ଧ ବିଷପୂରିତ କୁମ୍ଭ ।

ନ କଶ୍ଚିତ୍ କସ୍ୟଚନ୍ମିତ୍ରଂ ନ କଶ୍ଚିତ୍ କସ୍ୟଚଦ୍ରିପୁଃ ।
ବ୍ୟବହାରେଣ ମିତ୍ରାଣି ଜାୟନ୍ତେ ରିପବସ୍ତଥା ॥

ପ୍ରକୃତରେ କେହି କାହାର ମିତ୍ର ନୁହେ, କେହି କାହାର ମଧ୍ୟ ଶତ୍ରୁ ନୁହେ, କିନ୍ତୁ ବ୍ୟବହାରରେ ମିତ୍ର ଓ ଶତ୍ରୁ ହୁଅନ୍ତି । ତହିଁ ଉତ୍ତାରୁ କାକ କହିଲା, ଏମନ୍ତ ହେଉ । ଅନନ୍ତର ପ୍ରାତଃକାଳରେ ସମସ୍ତେ ଆପଣା ୨ ଅଭିଳଷିତ ଦେଶକୁ ଗଲେ ।

ଦିନେ ନିର୍ଜନରେ ଜମ୍ବୁକ କହୁଅଛୁ, ହେ ମିତ୍ର ମୃଗ, ଏହି ବନର ଏକ ପ୍ରଦେଶରେ ଶସ୍ୟପୂର୍ଣ୍ଣ କ୍ଷେତ୍ର ଅଛୁ, ଆମ୍ଭେ ତୁମ୍ଭଙ୍କୁ ଘେନି ଯାଇ ଦେଖାଇ ଦେବା । ଇହା କହି ତାହା ଦେଖାଇଲାରୁ ହରିଣ ପ୍ରତିଦିନ ସେଠାକୁ ଯାଇ ଶସ୍ୟ ଖାଏ । ତତ୍ପରେ କ୍ଷେତ୍ର ଦେଖି କ୍ଷେତ୍ରସ୍ୱାମୀ ଜାଲ ଯୋଜିତ କଲା । ତଦନନ୍ତର ପୁନର୍ବାର ମୃଗ ଆସି ପାଶରେ ବଦ୍ଧ ହୋଇ ଚିନ୍ତା କଲା, ମିତ୍ର ବ୍ୟତିରେକେ କିଏ ଆମ୍ଭଙ୍କୁ ଯମପାଶରୂପୀ ଏହି ବ୍ୟାଧ ପାଶରୁ ପରିତ୍ରାଣ କରିବାକୁ ସମର୍ଥ ହେବ ? ତଦ୍ବାଦ ଜମ୍ବୁକ ସେଠାରେ ଉପସ୍ଥିତ ହୋଇ ଭାବନା କଲା, ଏତେ ଦିନରେ ଆମ୍ଭର କାପଟ୍ୟରେ ମନୋଭିଳାଷ ସିଦ୍ଧ ହେଲା । କ୍ଷେତ୍ରସ୍ୱାମୀ ଯେତେବେଳେ ଏହି ମୃଗର × × × ତେତେ-ବେଳେ ରକ୍ତରେ ଲିପ୍ତ ଅସ୍ଥି ଆମ୍ଭେ × × × ଯଥେଷ୍ଟରୂପେ ଭୋଜନ କରିବ । ହରିଣ ତାକୁ × × × କହୁଅଛୁ, ସଖେ ଶୃଗାଳ, ଆମ୍ଭର ବନ୍ଧନ ଛେଦନ କର, × × ଆମ୍ଭଙ୍କୁ ରକ୍ଷା କର; ଯେହେତୁରୁ,

ଆପତ୍ସୁ ମିତ୍ରଂ ଜାନୀୟାଦ୍ଯୁଦ୍ଧେ ଶୂରମୃଣେ ଶୁଚିଂ ।
ଭାର୍ଯ୍ୟାଂ କ୍ଷୀଣେଷୁ ବିତ୍ତେଷୁ ବ୍ୟସନେଷୁ ଚ ବାନ୍ଧବାନ୍ ॥

ମିତ୍ରକୁ ବିପତ୍ତି କାଳରେ, ଆଉ ଶୂରକୁ ଯୁଦ୍ଧରେ, ଏବଂ ଶୁଚିକୁ ଋଣରେ, ଆଉ ନିର୍ଦ୍ଧନ ହେଲେ ଭାର୍ଯ୍ୟାକୁ, ଓ ଦୁଃଖ କାଳରେ ବାନ୍ଧବକୁ ଜାଣିବ ।

ଉତ୍ସବେ ବ୍ୟସନେ ଚୈବ ଦୁର୍ଭିକ୍ଷେ ରାଷ୍ଟ୍ରବିପ୍ଳବେ ।
ରାଜଦ୍ୱାରେ ଶ୍ମଶାନେ ଚ ଯସ୍ତିଷ୍ଠତି ସ ବାନ୍ଧବଃ ॥

ଏବଂ ଉତ୍ସବରେ, ବ୍ୟସନରେ, ଦୁର୍ଭିକ୍ଷ କାଳରେ, ଦେଶୋପଦ୍ରବରେ, ରାଜଦ୍ୱାରରେ, ଓ ଶ୍ମଶାନରେ ଯେ ସହାୟ ହୁଏ, ସେହି ବାନ୍ଧବ ଅଟେ ।

ଶୃଗାଲ ପାଶ ଦେଖି ବାରମ୍ବାର ଚକ୍ଷା କଲା. ଏହି ବନ୍ଧନ ଦୃଢ଼ ଅଟଇ; ଆଉ କହିଲା, ହେ ମିତ୍ର ଏ ପାଶ ଚର୍ମରଚିତ ଏହି ହେତୁରୁ ଆଜ ରବିବାର କିପରି ଇହା ଦନ୍ତରେ ସ୍ପର୍ଶ କରିବା ? ସଖେ, ଯେବେ ଅନ୍ତଃକରଣରେ ଅନ୍ୟ ପ୍ରକାର ନ ମଣ, ତେବେ ତୁମ୍ଭେ ଯାହା କହିବ ତାହା ପ୍ରାତଃକାଳରେ ଆମ୍ଭେ ଅବଶ୍ୟ କରିବା ।

ଅନନ୍ତର ସେ କାକ ସନ୍ଧ୍ୟାବେଳେ ମୃଗ ଆସି ନ ଥିବାର ଦେଖି ଇତସ୍ତତ ଅନ୍ୱେଷଣ କରି ସେହି ପ୍ରକାର ଦେଖି କହିଲା, ସଖେ, ଏ କି ? ମୃଗ କହିଲା, ହେ ମିତ୍ର, ମିତ୍ରବାକ୍ୟ ଅବଜ୍ଞାର ଫଳ ଏହି । ପଣ୍ଡିତମାନେ ତାହା କହିଅଛନ୍ତି,

ସୁହୃଦାଂ ହିତକାମାନାଂ, ଯଃ ଶୃଣୋତି ନ ଭାଷିତଂ ।
ବିପତ୍ସନ୍ନିହିତା ତସ୍ୟ ସ ନରଃ ଶତ୍ରୁନନ୍ଦନଃ ॥

ହିତାଭିଳାଷି ମିତ୍ର ଲୋକଙ୍କର କଥା ଯେ ନ ଶୁଣେ, ତାହାର ବିପତ୍ତି ଅତି ନିକଟ, ଆଉ ସେ ଲୋକ ଶତ୍ରୁର ଆନନ୍ଦଜନକ ହୁଏ । କାକ କହୁଅଛି, ସେ ବଞ୍ଚକ କେଉଁଠାରେ ଅଛି ? ହରିଣ କହିଲା, ସେ ଆମ୍ଭର ମାଂସ ଭୋଜନ ନିମନ୍ତେ ଏହିଠାରେ ଅଛି । କାକ କହୁଅଛି, ଆମ୍ଭେ ପୂର୍ବରେ କହୁଅଛୁଁ,

ଅପରାଧୋ ନ ମେଽସ୍ତୀତି ନୈତଦ୍ବିଶ୍ୱାସ କାରଣଂ ।
ବିଦ୍ୟ × × ଶଂସେଭ୍ୟୋ ଭୟଂ ଗୁଣବତାମପି ॥

ଆମ୍ଭର × × ଅବିଶ୍ୱାସର କାରଣ ନୁହେ, ଯେ ହେତୁରୁ ଖଳ ଲୋକଠାରୁ × × × ଅଛି । ଆଉ ଶୁଣ,

× × × ସୁହୃଦ୍ବାକ୍ୟମରୁନ୍ଧତୀଂ ।
ନ ଜିଘ୍ରନ୍ତି ନ ଶୃଣ୍ୱନ୍ତି ନ ପଶ୍ୟନ୍ତି ଗତାୟୁଷଃ ॥

ଗତାୟୁ ଲୋକେ ପ୍ରଦୀପନିର୍ବାଣର ଗନ୍ଧପ୍ରାପ୍ତ ହୁଅନ୍ତି ନାହିଁ, ମଧ୍ୟ ସୁହୃଲ୍ଲୋକର ବାକ୍ୟସୁଦ୍ଧା ଶୁଣନ୍ତି ନାହିଁ, ଏବଂ ଅରୁନ୍ଧତୀନାମକ ନକ୍ଷତ୍ରକୁ ଦେଖି ପାରନ୍ତି ନାହିଁ ।

ପରୋକ୍ଷେ କାର୍ଯ୍ୟହନ୍ତାରଂ ପ୍ରତ୍ୟକ୍ଷେ ପ୍ରିୟବାଦିନଂ ।
ବର୍ଜୟେତ୍ତାଦୃଶଂ ମିତ୍ରଂ ବିଷକୁମ୍ଭଂ ପୟୋମୁଖଂ ॥

ଆଉ ଅସାକ୍ଷାତରେ କାର୍ଯ୍ୟହନ୍ତା ଓ ସାକ୍ଷାତରେ ପ୍ରିୟବାଦୀ ଏମନ୍ତ ମିତ୍ରକୁ ତ୍ୟାଗ କରିବ, ଯେମନ୍ତ ମୁଖରେ କିଞ୍ଚିତ୍ ଦୁଗ୍ଧ ବିଷପୂରିତ କୁମ୍ଭ ।

ଅନନ୍ତର କାକ ଦୀର୍ଘ ନିଶ୍ୱାସ ପକାଇ କହିଲା, ଆରେ ବଞ୍ଚକ ଶୃଗାଳ, ତୁ ପାପୀ, କି କରୁଅଛୁ ? ଯେହେତୁର,

ସଂଲାପିତାନାଂ ମଧୁରୈର୍ବଚୋଭି,
ର୍ମିଥ୍ୟୋପଚାରୈଶ୍ଚ ବଶୀକୃତ ନାଂ ।
ଅଶାବତାଂ ଶ୍ରଦ୍ଧଧତାଞ୍ଚ ଲୋକେ,
କମର୍ଥିନାଂ ବଞ୍ଚୟିତବ୍ୟମସ୍ତି ॥

ମିଷ୍ଟ ବାକ୍ୟରେ ଆଳାପିତ ଯେଉଂ ଲୋକ, ଆଉ ମିଥ୍ୟୋପଚାରରେ ବଶୀକୃତ ଯେଉଂ ଲୋକ, ଏବଂ ଆଶାଯୁକ୍ତ ଓ ଶ୍ରଦ୍ଧାଯୁକ୍ତ ଯେ ଯାଚକ ଏମାନଙ୍କର ଯେଉଂ ବଞ୍ଚନା କରିବା ସେ କି ? ଅଥଚ,

ଉପକାରିଣି ବିଶ୍ରବ୍‌ଧେ ଶୁଦ୍ଧମତୌ ଯଃ ସମାଚରତି ପାପଂ ।
ତଂ ଜନମସତ୍ୟସନ୍ଧଂ ଭଗବତି ବସୁଧେ କଥଂ ବହସି ॥

ଉପକାରୀ ଓ ବିଶ୍ୱସ୍ତ ଓ ନିର୍ମଳାନ୍ତଃକରଣ ଯେଉଂ ଲୋକ, ତାହା ବିଷୟରେ ଯେଉଂ ବ୍ୟକ୍ତି ଅଧର୍ମାଚରଣ କରେ, ହେ ଭଗବତି ପୃଥିବି, ତୁମ୍ଭେ ସେ ମିଥ୍ୟାଅଭିସନ୍ଧି ଲୋକକୁ କିରୂପେ ଧାରଣ କରିଅଛ ?

ଦୁର୍ଜନେନ ସମଂ ସଖ୍ୟଂ ପ୍ରୀତିଞ୍ଚାପି ନକାରୟେତ୍ ।
ଉଷ୍ଣୋ ଦହତି ଚାଙ୍ଗାରଃ ଶୀତଃ କୃଷ୍ଣାୟତେ କରଂ ॥

ଆଉ ଦୁଷ୍ଟ ଲୋକ ସହିତ ମିତ୍ରତା କରିବ ନାହିଁ, ପ୍ରୀତି ମଧ୍ୟ କରିବ ନାହିଁ; କାହିଁକି ନା, ତପ୍ତ ଅଙ୍ଗାରକୁ ସ୍ପର୍ଶ କଲେ ହସ୍ତ ଦାହ କରେ, ଆଉ ଶୀତଳ ଅଙ୍ଗାର ହାତ କଳା କରେ । ଅଥବା ଦୁର୍ଜନ × × × ସ୍ୱଭାବ,

ପ୍ରାକ୍ ପାଦୟୋଃ ପତତି × × ×
କର୍ଣ୍ଣେ କଳଂ କିମପି ରୌତି × × ×
ଛିଦ୍ରଂ ନିରୂପ୍ୟ ସହସା ପ୍ରବିଶ × × ×
ସର୍ବଂ ଖଳସ୍ୟ ଚରିତଂ ମଶକଃ କରୋତି ॥

ଆଗ ପାଦତଳେ ପଡେ, ପଶ୍ଚାତ୍ ପୃଷ୍ଠର ମାଂସ ଖାଏ; ଅଳ୍ପ ଅଳ୍ପ କରି କର୍ଣ୍ଣରେ ଆଶ୍ଚର୍ଯ୍ୟ ମଧୁର ଶବ୍ଦ କରେ, ପଶ୍ଚାତ୍ ଛିଦ୍ର ଅନ୍ୱେଷଣ କରି ନିଃଶଙ୍କ ହୋଇ ଅକସ୍ମାତ୍ ପ୍ରବେଶ କରେ ଯେ ମଶା, ସେ ଏହି ପ୍ରକାର ଖଳ ଲୋକର ସମୁଦାୟ ଚରିତ୍ର ବ୍ୟକ୍ତ କରେ ।

ଦୁର୍ଜନଃ ପ୍ରିୟବାଦୀ ଚ ନୈତଦ୍ବିଶ୍ୱାସ କାରଣଂ ।
ମଧୁ ତିଷ୍ଠତି ଜିହ୍ୱାଗ୍ରେ ହୃଦି ହାଲାହଲଂ ବିଷଂ ॥

ଏବଂ ଦୁର୍ଜନ ଅଥଚ ପ୍ରିୟବାଦୀ ଏମନ୍ତ ଲୋକ ବିଶ୍ୱାସଭୂମି ନୁହେ କାରଣ କି, ତାହା ଜିହ୍ୱାଗ୍ରରେ ମଧୁ ଓ ହୃଦୟରେ ବିଷ ଥାଏ ।

ଅନନ୍ତର ପ୍ରାତଃକାଳରେ କ୍ଷେତ୍ରପତି ଯଷ୍ଟି ହାତରେ ଘେନି ସେଠାକୁ ଆସୁଅଛି, ଇହା ବାୟସ ଦେଖିଲା । କ୍ଷେତ୍ରପାଳକୁ ଦେଖି କାକ କହିଲା, ହେ ମିତ୍ର ମୃଗ, ତୁମ୍ଭେ ନିଶ୍ୱାସ ବନ୍ଦ କରି ପେଟ ଫୁଲାଇ ପାଦ ସବୁ ସ୍ଥିର କରି ଆପଣାକୁ ମୃତ ଶରୀର ପରି ଦେଖାଇ ରହିଥାଅ, ଆମ୍ଭେ ତୁମ୍ଭ ଚକ୍ଷୁକୁ ଥଣ୍ଟରେ ହାଣୁଥିବୁଁ । ଯେତେବେଳେ ଆମ୍ଭେ ଶବ୍ଦ କରିବା, ତେତେବେଳେ ତୁମ୍ଭେ ଉଠି ଶୀଘ୍ର ପଳାଇବ । କାକ କଥାରେ ମୃଗ ସେହିପରି ରହିଲା । ତଦନନ୍ତର ଆହ୍ଲାଦରେ ପ୍ରଫୁଲ୍ଲିତନୟନ ହୋଇ ସେ କ୍ଷେତ୍ରପତି ମୃଗକୁ ସେହି ପ୍ରକାର ଦେଖି, ଆଃ ଆପେ ମରିଅଛୁ ଇହା କହି ବନ୍ଧନ ଫିଟାଇ ଜାଲ ଗୋଟାଇବା ନିମନ୍ତେ ଚଞ୍ଚଳ ହେଲା । ସେଠାରୁ ମୃଗ କାକର ଶବ୍ଦ ଶୁଣି ଶୀଘ୍ର ଉଠି ପଳାଇଲା । ତଦନନ୍ତର କ୍ଷେତ୍ରପତି ମୃଗୋଦ୍ଦେଶରେ ଲଗୁଡ଼ କ୍ଷେପଣ କରନ୍ତେ ତାହାରି ଶୃଗାଳ ନଷ୍ଟ ହେଲା । ପଣ୍ଡିତମାନେ ତାହା କହି ଅଛନ୍ତି ।

ତ୍ରିଭିର୍ବର୍ଷୈସ୍ତ୍ରିଭିଃ ମାସୈସ୍ତ୍ରିଭିଃପକ୍ଷୈସ୍ତ୍ରିଭିର୍ଦିନୈଃ ।
ଅତ୍ୟୁତ୍କଟୈଃ ପାପପୁଣ୍ୟୈ ରିହୈବ ଫଳମଶ୍ନୁତେ ॥

ଅତ୍ୟନ୍ତ ଉତ୍କଟ ଯେ ପାପ ଓ ପୁଣ୍ୟ ତଦ୍ଦ୍ୱାରା ଇହ ଲୋକରେ ତିନି ଦିନ କିମ୍ବା ତିନି ପକ୍ଷ ଅବା ତିନି ମାସ ଅଥବା ତିନି ବର୍ଷରେ ଫଳଭୋଗ ହୁଏ । ଅତଏବ ଆମ୍ଭେ କହୁଁ, ଖାଦ୍ୟ ଆଉ ଖାଦକର ଯେଉଂ ପ୍ରୀତି ସେ ଆପଦର କାରଣ ଅଟେ ।

---

## × ସୀତାଙ୍କ ବିବରଣ

ଇହା କହି ଭରତ ଓ ଶତ୍ରୁଘ୍ନ ଚତୁରଙ୍ଗ ସେନା ସମଭିବ୍ୟାହାରରେ ତପସ୍ୱି ବେଶରେ ରାମଙ୍କ ଅନ୍ୱେଷଣ କରି ୨ ଚିତ୍ରକୂଟ ପର୍ବତକୁ ଯାଇ ଦେଖିଲେ ଯେ ଗୋଟାଏ ପର୍ଣ୍ଣଶାଳା ଦ୍ୱାରରେ ରାମଚନ୍ଦ୍ର ବସିଅଛନ୍ତି, ସୀତା

ତନ୍ମଧ୍ୟରେ ଏବଂ ଲକ୍ଷ୍ମଣ ବାହାରେ ଅଛନ୍ତି । ଶ୍ରୀରାମ ଦର୍ଶନରେ ଭରତ ଗଳବସ୍ତ୍ର ହୋଇ ତାଙ୍କ ପଦାନତ ହେଲେ । ରାମ ତାଙ୍କୁ ଉଠାଇ ଆଲିଙ୍ଗନ କଲେ । ଅନନ୍ତର ଭରତ ରାମଙ୍କ ଚରଣ ଧାରଣ ପୂର୍ବକ କହିଲେ, ଆପଣ କାହା ବାକ୍ୟରେ ରାଜ୍ୟ ତ୍ୟାଗ କରି ବନକୁ ଆସିଅଛନ୍ତି । ବାମା ଜାତିଙ୍କର ବାମା ବୁଦ୍ଧି; ସେମାନଙ୍କ କଥାରେ କିଏ କେଉଁଠାରେ ରାଜ୍ୟ ତ୍ୟାଗ କରେ ବା ଦେଶାନ୍ତରକୁ ଯାଏ । ମାତା ଯେଉଁ ଅପରାଧ କରିଅଛନ୍ତି ସେ ଅପରାଧ ଆମ୍ଭର, ତାହା ମାର୍ଜ୍ଜନା କରି ଦେଶକୁ ଚାଲ, ଆପଣ ଅଯୋଧ୍ୟାର ଭୂଷଣ, ଆପଣଙ୍କ ବିନା ଅଯୋଧ୍ୟା ଅନ୍ଧକାର । ରାମ କହିଲେ ଭରତ, ତୁମ୍ଭେ ପଣ୍ଡିତ ହୋଇ କାହିଁକି ବିମାତାଙ୍କ ଅନୁଯୋଗ କର; ଆମ୍ଭେ ପିତୃ ଆଜ୍ଞାରେ ବନବାସ ଆସିଅଛୁ; ବିମାତାଙ୍କର କିଛି ମାତ୍ର ଦୋଷ ନାହିଁ । ଇହା କହି ରାମ ପିତାଙ୍କ କୁଶଳାଦି ପଚାରିଲେ ହେଠାରୁ ବଶିଷ୍ଠ ମୁନି ତାଙ୍କର ମୃତ୍ୟୁ ସମ୍ବାଦ ଜ୍ଞାପନ କଲେ । ରାମ ପିତାଙ୍କ ମୃତ୍ୟୁ ସମ୍ବାଦରେ ଉଚ୍ଚୈଃସ୍ୱରରେ କ୍ରନ୍ଦନ କଲେ, ଏବଂ ଲକ୍ଷ୍ମଣ ଓ ସୀତାସୁଦ୍ଧା ରୋଦନ କଲେ । ପରେ ବଶିଷ୍ଠ ମୁନିଙ୍କ ବିଧାନାନୁସାରେ ତିନି ଦିନ ଅଶୌଚ ଗ୍ରହଣାନନ୍ତର ରାମ ପିତୃ ଶ୍ରାଦ୍ଧାଦି କଲେ । ତଦନନ୍ତର ଭରତଙ୍କୁ ନାନା ପ୍ରକାର ବୁଝାଇ କହିଲେ ଅଯୋଧ୍ୟା ନଗର ଶୂନ୍ୟ ହୋଇଅଛି; କୌଣସି ଦିନ କୌଣସି ଶତ୍ରୁ ଆସି ରାଜ୍ୟ ନଷ୍ଟ କରିବ; ଅତଏବ ତୁମ୍ଭେ ଯାଇ ରାଜ୍ୟ ଶାସନ ଓ ପ୍ରଜା ପାଳନ କର । ଚତୁର୍ଦ୍ଦଶ ବର୍ଷ ଗତପ୍ରାୟ; ତାହାବାଦ ସମସ୍ତେ ପୁନର୍ବାର ଏକତ୍ର ହେବା । ଭରତ କହିଲେ ସିଂହର ଭାର ଶୃଗାଳ କି କେତେବେଳେ ବହନ କରି ପାରେ ? ନାହିଁ, ଆମ୍ଭେ କି ପ୍ରକାରେ ରାଜ୍ୟ ଶାସନ କରିବୁଁ । ମାତ୍ର ଯେବେ ଏକାନ୍ତ ଗୃହକୁ ନ ଯିବ ତେବେ ଆମ୍ଭଙ୍କୁ ଆପଣଙ୍କ ଚରଣ ଚିହ୍ନ ପାଦୁକା ପ୍ରଦାନ କରନ୍ତୁ, ଆମ୍ଭେ ତାହା ସିଂହାସନରେ ସ୍ଥାପନ କରି ଆପଣଙ୍କ ନାମରେ ରାଜ୍ୟ କରିବୁଁ, ଯେବେ ତାହା ନ କରନ୍ତି ତେବେ ଆମ୍ଭେସୁଦ୍ଧା ଆପଣଙ୍କ ସଙ୍ଗେ ବନ ପ୍ରବାସ କରିବୁଁ । ଏକଥା ଶୁଣି ରାମ ତାଙ୍କୁ ଆପଣାର ପାଦୁକା ପ୍ରଦାନ କଲେ । ଭରତ ସେହି ପାଦୁକା ମସ୍ତକରେ ଘେନି ଆପଣା × × × ତାହା ସିଂହାସନରେ ସ୍ଥାପନପୂର୍ବକ ସେଥିରେ ଦଣ୍ଡ ×× ।

ଭରତଙ୍କ ଗମନାନ୍ତେ କିଛି ଦିନ ପରେ × × ଏଠାରେ ଥିଲେ ଭରତ ପୁନର୍ବାର ନେବାକୁ ଆସିବେ, ଅତଏବ ଏ ସ୍ଥାନରେ ଅବସ୍ଥିତି କରିବା ଉଚିତ ନୁହେ, ଅନ୍ୟ ସ୍ଥାନକୁ ଚାଲ । ଏହି ଆଶଙ୍କାରେ ରାମ ଲକ୍ଷ୍ମଣ

ସୀତା ସହିତେ ଅଗସ୍ତ୍ୟ ପର୍ବତକୁ ଯାତ୍ରା କଲେ । ସେଇ ପର୍ବତକୁ ଆଗମନ ମାତ୍ର ଅଗସ୍ତ୍ୟ ମୁନି ଅଗ୍ରସର ହୋଇ ସେମାନଙ୍କୁ ଯଥୋଚିତ ସମାଦର କରି ଆପଣା ଆଶ୍ରମକୁ ଘେନିଗଲେ । ସେଇ ମୁନିଙ୍କ ଆଶ୍ରମରେ କେତେକ ଦିନ ରହି ସେମାନେ ପଞ୍ଚବଟୀ ବନକୁ ଗମନ କଲେ ଓ ସେଠାରେ କୁଟୀର ନିର୍ମାଣ କରି ବାସ କଲେ ।

ଏହି ସମୟରେ ଲଙ୍କାରେ ରାବଣ ରାଜା ହୋଇଥିଲେ । ଲଙ୍କା ଲବଣ ସମୁଦ୍ର ମଧ୍ୟସ୍ଥ ଏକ ଦ୍ୱୀପ । ବର୍ତ୍ତିମାନ ତାହା ନାମ ସିଂହଳଦ୍ୱୀପ । ସେଇ ଦ୍ୱୀପରେ ପୂର୍ବ ରାକ୍ଷସ ଜାତିଙ୍କର ଅଧିକାର ଥିଲା, ମାତ୍ର ସେମାନେ ଦେବତା-ମାନଙ୍କ ସଙ୍ଗେ ସର୍ବଦା ଯୁଦ୍ଧ ବିଗ୍ରହ କରନ୍ତି, ଏହି କାରଣ ଦେବତାଗଣ ସେମାନଙ୍କୁ ଯୁଦ୍ଧରେ ପରାଭବ କରି ରାକ୍ଷସ ବଂଶ ଧ୍ୱଂସ କଲାବାଦ ଲଙ୍କା ଅଧିକାରୀ ହୋଇ ବିଶ୍ୱଶ୍ରବା ମୁନିଙ୍କ ପୁତ୍ର ବୈଶ୍ରବଣଙ୍କୁ ସେହି ରାଜ୍ୟ ଦେଇ ଥିଲେ ।

ମାତ୍ର ଯୁଦ୍ଧ ସମୟରେ କେତେ ଗୁଡାଏ ରାକ୍ଷସ ଲଙ୍କାରୁ ପଳାଇ କରି ପାତାଳ ମଧ୍ୟରେ ଲୁଚି ରହିଥିଲେ । ବୈଶ୍ରବଣ ଲଙ୍କାଧିପତି ହେଲାରୁ ସେମାନଙ୍କର ପୁନର୍ବାର ଲଙ୍କାଧିକାରର ବାଞ୍ଛା ହେବାରୁ ସୁମାଳୀ ନାମରେ ରାକ୍ଷସାଧ୍ୟକ୍ଷ ଆପଣା ଦୁହିତା ନିକଷାକୁ କହିଲା ତୁମ୍ଭେ ବିଶ୍ୱଶ୍ରବା ମୁନିଙ୍କ ନିକଟକୁ ଗମନ କରି ଏବଂ ତାଙ୍କୁ ପ୍ରସନ୍ନ କରି ତଦ୍ୱାରା ପୁତ୍ର ଉତ୍ପାଦନ କରି, ସେହି ପୁତ୍ର ଲଙ୍କାଧିକାରୀ ହେବ । ବିଶେଷ, ସେଇ ପୁତ୍ର ବୈଶ୍ରବଣଙ୍କ ବୈମାତ୍ର ଭ୍ରାତା ହେବ ତହିଁରେ ରାଜ୍ୟ ମିଳିବା ସମ୍ଭବ । ନିକଷା ପିତୃ ବାକ୍ୟରେ ବିଶ୍ୱଶ୍ରବା ମୁନିଙ୍କ ନିକଟକୁ ଯାଇ କାୟମନୋବାକ୍ୟରେ ତାଙ୍କର ସେବା କଲା । ମୁନି ସେଥିରେ ସନ୍ତୁଷ୍ଟ ହୋଇ ତାକୁ ବର ପ୍ରାର୍ଥନା କରିବାକୁ କହିଲେ । ତହିଁରେ ନିକଷା ଏହି ପ୍ରାର୍ଥନା କଲା ଯେ ଆପଣଙ୍କ ଦ୍ୱାରା ମୋହର ଦୁଇ ପୁତ୍ର ହେଉନ୍ତୁ । ବିଶ୍ୱଶ୍ରବା ମୁନି ସେଇ ପ୍ରାର୍ଥନା ପୂର୍ତ୍ତି କରି କହିଲେ, ତୁମ୍ଭ ଗର୍ଭରେ ଦୁଇ ପୁତ୍ର ଜନ୍ମିବେ; ମାତ୍ର ସେମାନେ ଦୁର୍ଜୟ ରାକ୍ଷସ ହେବେ । ନିକଷା ମୁନିଙ୍କି ପ୍ରଣାମ କରି କହିଲା ପ୍ରଭୋ, ମୋହର ଅଭିଳାଷ ସିଦ୍ଧ କଲ ସେଥିରେ ପ୍ରଫୁଲ୍ଲ ହେଲି । କିନ୍ତୁ ମୋହର ସନ୍ତାନ ଦୁର୍ଜୟ ରାକ୍ଷସ ହେବେ ଏଥିରେ × × ଅତଏବ ସର୍ବଗୁଣ ବିଶିଷ୍ଟ ଆଉ ଏକ ପୁତ୍ର ମତେ × × ତୋହର ଆଉ ଏକ ପୁତ୍ର ସର୍ବଗୁଣବିଶିଷ୍ଟ ହେବ ।

ଏହି କଥା × × × ରାକ୍ଷସୀ ଅତିଶୟ ଆନନ୍ଦିତା ହେଲା । ପରେ ଯଥା କାଳରେ ତାହାର ତିନି ଗୋଟି ପୁତ୍ର ହେଲେ । ଜ୍ୟେଷ୍ଠ ରାବଣ, ତାହାର ଦଶ ମୁଣ୍ଡ, ବିଂଶତି ହସ୍ତ ଓ ବିଂଶତି ଚକ୍ଷୁ । ଦ୍ୱିତୀୟ କୁମ୍ଭକର୍ଣ୍ଣ, ତାହାର ପ୍ରକାଣ୍ଡ ଶରୀର । ତୃତୀୟ ସର୍ବଗୁଣବିଶିଷ୍ଟ ବିଭୀଷଣ । ରାବଣ ଅତ୍ୟନ୍ତ ବଳବାନ୍ ଓ ଦିଗ୍‌ବିଜୟୀ ହେଲେ । କୁମ୍ଭକର୍ଣ୍ଣ ଅତ୍ୟନ୍ତ ଅଳସ; ଅହରହ ନିଦ୍ରା ଯାନ୍ତି । ବିଭୀଷଣ ପରମ ଧାର୍ମିକ ଥିଲେ ଏବଂ ସ୍ୱଜାତିର ନ୍ୟାୟ ନରହିଂସା ବା ଅନ୍ୟ ମନ୍ଦକର୍ମ କରନ୍ତି ନାହିଁ ।

ରାବଣ କ୍ରମେ କ୍ରମେ ଅନେକ ଦେଶ ଜୟ କଲେ ଏବଂ ଆପେ ବାହୁବଳରେ ଲଙ୍କା ଅଧିକାର କଲେ । ତଦାଦି କ୍ରମେ କ୍ରମେ ରାବଣଙ୍କର ଅନେକ ପରିବାର ହେଲେ । ତାଙ୍କ ଦୋର୍ଦ୍ଦଣ୍ଡ ପ୍ରତାପରେ ମେଦିନୀ କମ୍ପମାନ ହେଲା । ରାମାୟଣରେ ଇହାସୁଦ୍ଧା ଲେଖାଅଛି ଯେ ତାଙ୍କ ଭୟରେ ଦେବତା-ମାନେ ତାଙ୍କର ଆଜ୍ଞାକାରୀ ହୋଇଥିଲେ ।

ଏହି ରାବଣର ସୂର୍ପନଖାନାମ୍ନୀ ଏକ ସହୋଦରୀ ଥିଲା । ସେ ଅନେକ ନିଶାଚର ସମଭିବ୍ୟାହାରରେ ଅରଣ୍ୟ ଭ୍ରମଣ କରି କରି ପଞ୍ଚବଟୀ ବନରେ ରାମ ଓ ଲକ୍ଷ୍ମଣଙ୍କର ଭୁବନମୋହନରୂପ ଲାବଣ୍ୟ ଦର୍ଶନରେ ମୋହିତା ହୋଇ ପରମ ରମଣୀୟ ବେଶରେ ସେମାନଙ୍କ ନିକଟରେ ଉପସ୍ଥିତ ହୋଇ ଆପଣା ପ୍ରଖର ସ୍ମର ବେଗର ସାନ୍ତ୍ୱନାର୍ଥ ରାମଙ୍କର ଶରଣାଗତ ହେଲା । ରାମ କହିଲେ ଦେଖ ଆମ୍ଭର ଧର୍ମପତ୍ନୀ ସଙ୍ଗେ ଅଛି, ଅତଏବ ଆମ୍ଭେ ତୁମ୍ଭର କାମନା ସିଦ୍ଧ କରିବାକୁ ଅକ୍ଷମ । ରାକ୍ଷସୀ ଏହି କଥାରେ ଲକ୍ଷ୍ମଣଙ୍କ ନିକଟରେ ସେହିରୂପେ ପ୍ରାର୍ଥନା କଲା । ଲକ୍ଷ୍ମଣ କହିଲେ ଆମ୍ଭେ ତପସ୍ୱୀ ଆମ୍ଭ କର୍ତ୍ତୃକ ତୁମ୍ଭର ମନସ୍କାମନା ପୂର୍ଣ୍ଣ ହୋଇ ପାରିବ ନାହିଁ । ରାମ ଲକ୍ଷ୍ମଣ ଦୁହେଁ ଏହିରୂପେ ନିରାଶ କଲାରୁ ସୂର୍ପନଖା ବିବେଚନା କଲା କି ସୀତାଙ୍କ ସକାଶେ ଆମ୍ଭର କାର୍ଯ୍ୟ ସିଦ୍ଧ ହେଲା ନାହିଁ । ଅତଏବ ବଦନ ବ୍ୟାଦାନ କରି ତାଙ୍କୁ ଗ୍ରାସ କରିବାକୁ ଉଦ୍ୟତ ହେଲା । ସେଥିରେ ଲକ୍ଷ୍ମଣ ସୀତାଙ୍କୁ ରକ୍ଷା କରି ତୀକ୍ଷ୍ଣ ଅସ୍ତ୍ର ଦ୍ୱାରା ତାହାର ନାସିକା ଓ କର୍ଣ୍ଣ ଛେଦନ କଲେ । ସୂର୍ପନଖା ସେଇ କ୍ରୋଧରେ ଆପଣା ସମଭିବ୍ୟାହାରୀ ରାକ୍ଷସ ସେନା ସେନ ଯୁଦ୍ଧ ଆରମ୍ଭ କଲା । ମାତ୍ର ରାମ ସେଇ ରାକ୍ଷସଗଣଙ୍କର ନିଧନ କଲେ । ତହିଁରେ ସୂର୍ପନଖା ଆତୁର ମନଃ ପୀଡ଼ା ପାଇ ସ୍ୱୀୟ ସହୋଦର ରାବଣ ନିକଟକୁ ଯାଇ ଏହିରୂପେ କହିଲା

ଯେ ରାଜା ଦଶରଥଙ୍କ ପୁତ୍ର ରାମ ଭାର୍ଯ୍ୟା ସହିତ ବନକୁ × × × ଦେଖିଲୁଁ ଯେ ତାଙ୍କର ପତ୍ନୀ ସୀତା ଅତି ରୂପବତୀ × × ପାତାଳରେ ତତ୍ତୁଲ୍ୟ ସୁନ୍ଦରୀ ସ୍ତ୍ରୀ ନାହିଁ । ଅତଏବ × × × ଆଣିବାକୁ ଯତ୍ନ କରୁଥିଲୁଁ । ତହିଁରେ ରାମ ଆମ୍ଭର ନାସିକା × × × ଛେଦନ କରି ଦେଇଅଛନ୍ତି ।

ରାବଣ ସୂର୍ପନଖାର ଦୁର୍ଦ୍ଦଶା, ବିଶେଷତଃ ସୀତାଙ୍କ ରୂପର ବୃତ୍ତାନ୍ତ ଶ୍ରବଣ କରି ସୀତା ହରଣାଭିଳାଷୀ ହୋଇ ବିବେଚନା କଲେ, କି ରାମ ଓ ଲକ୍ଷ୍ମଣ ସର୍ବଦା ସୀତାଙ୍କୁ ରକ୍ଷା କରନ୍ତି, ଅତଏବ କୌଶଳ ଦ୍ୱାରା ତାଙ୍କୁ ହରଣ କରିବାକୁ ହେବ । ମନେ ମନେ ଏହି ସ୍ଥିର କରି ମାରୀଚ ନାମକ ରାକ୍ଷସକୁ ଡାକି କହିଲେ, ହେ ମାରୀଚ ସୀତା ହରଣ ବିଷୟରେ ତୁମ୍ଭଙ୍କୁ ସାହାଯ୍ୟ କରିବାକୁ ହେବ ତୁମ୍ଭେ କୌଣସି କୌଶଳରେ ରାମ ଲକ୍ଷ୍ମଣଙ୍କୁ ବନକୁ ଭୁଲାଇ ଘେନି ଯିବ, ଆମ୍ଭେ ତପସ୍ୱି ବେଶରେ ସୀତାଙ୍କୁ ଘେନି ଆସିବୁଁ । ଏହି କର୍ମ କଲେ ତୁମ୍ଭଙ୍କୁ ଯଥୋଚିତ ପୁରସ୍କାର ଦେବୁଁ । ମାରୀଚ କହିଲା ମହାରାଜ, ରାମ ଅତ୍ୟନ୍ତ ବୀର, ବାଲ୍ୟକାଳରେ ଯେତେବେଳେ ଯଜ୍ଞ ନାଶ କରିବାକୁ ଯାଇଥିଲୁଁ, ତେତେବେଳେ ସେ ଯେରୂପ ବାଣ କ୍ଷେପଣ କରନ୍ତି ସେଥିରେ ଆମ୍ଭେମାନେ ଅନ୍ଧକାର ଦେଖିଥିଲୁଁ । ଏତେବେଳେ ତାଙ୍କର ଯୌବନାବସ୍ଥା ସୁତରାଂ ଅଧିକ ବଳ ଓ ଶକ୍ତି ହୋଇଅଛି; ଅତଏବ ଆମ୍ଭ ଦ୍ୱାରା ଏ କର୍ମ ସାଧନ ହେବ ନାହିଁ । ରାବଣ କହିଲେ, କି ଆମ୍ଭର ବାକ୍ୟ ଅବହେଳା କର, ଏହି କଥା କହି ତାକୁ ବିନାଶ କରିବାକୁ ଉଦ୍ୟତ ହେଲେ । ମାରୀଚ କି କରେ, ରାବଣ ମାରିଲେ ସୁଦ୍ଧା ମରିବ ଓ ରାମ ମାରିଲେ ମଧ୍ୟ ମରିବ ଏହି ବିବେଚନା କରି ସ୍ୱୀକାର କଲା ।

ତଦନନ୍ତର ମାରୀଚ ପଞ୍ଚବଟୀ ବନକୁ ଗମନ କଲା । ରାବଣ ତାହା ପଛେ ୨ ଗଲେ । ତଦାଦ ରାମ ଯେଉଁ ସ୍ଥାନରେ କୁଟୀର ନିର୍ମାଣ କରି ସୀତାଙ୍କୁ ଘେନି କରି ଥିଲେ, ସେହିଠାରେ ମାରୀଚ ମାୟାବିଦ୍ୟା ଦ୍ୱାରା ସ୍ୱର୍ଣ୍ଣ ମୃଗ ହୋଇ ଇତସ୍ତତଃ ଭ୍ରମଣ କଲା । ସୀତା ସେହି ସ୍ୱର୍ଣ୍ଣ ମୃଗ ଦର୍ଶନରେ ରାମଙ୍କୁ କହିଲେ, ଯେବେ ସେହି ମୃଗ ବଧ କରି ଆଣିପାର ତେବେ ତାହା ଚର୍ମ ବିଛାଇ କୁଟୀର ମଧ୍ୟରେ ବସିବା । ରାମଚନ୍ଦ୍ର ସୀତାଙ୍କ ପରିତୋଷାର୍ଥେ ଲକ୍ଷ୍ମଣଙ୍କୁ ତାଙ୍କ ରକ୍ଷାର୍ଥ ନିଯୁକ୍ତ କରି ମାୟା ମୃଗକୁ ଧରିବା ଲାଗି ଗମନ କଲେ । ମାୟା ମୃଗ ତାଙ୍କୁ ଦେଖି ପଳାଇଲା । ଏହିରୂପେ ମୃଗର ପଶ୍ଚାଦ୍‌ଗାମୀ ହେଲେ, ମାତ୍ର କୌଣସିରୂପେ ଧରି

ନ ପାରି ତାହା ପ୍ରତି ଶର ନିକ୍ଷେପ କଲେ । ସେହି ସମୟରେ ମାୟାବି ରାକ୍ଷସ ହାଇ ରେ ଲକ୍ଷ୍ମଣ ମଲି ଏହି କଥା କହି ଭୂମିରେ ପଡ଼ିଲା । ସୀତା କୁଟୀର × × × ଶୁଣି ମନେ ୨ ବିବେଚନା କଲେ ପ୍ରାୟ ରାମଙ୍କର କୌଣସି × × ଭାଇରେ ଲକ୍ଷ୍ମଣ, ଏ କଥା କାହିଁକି କହିଲେ । × × କରି ଲକ୍ଷ୍ମଣଙ୍କୁ କହିଲେ ଯେ ତୁମ୍ଭେ ଯାଇ ଦେଖ, ରାମଚନ୍ଦ୍ର × × କାହିଁକି ଡାକିଲେ । ପ୍ରାୟ କୌଣସି ରାକ୍ଷସ ତାଙ୍କୁ ଧରି ଥିବ । ଲକ୍ଷ୍ମଣ କହିଲେ ରାମଙ୍କୁ ଧରିବାକୁ ବ୍ରହ୍ମାଣ୍ଡରେ ଏ ପ୍ରକାର କିଏ ଅଛି ? ପରନ୍ତୁ ରାମ ଆମ୍ଭଙ୍କୁ ଆପଣଙ୍କ ରକ୍ଷାର୍ଥେ ରଖି ଯାଇ-ଅଛନ୍ତି, ସେଥିରେ ଆମ୍ଭେ ଆପଣଙ୍କୁ ଶୂନ୍ୟ ଗୃହରେ ଏକାକିନୀ ରଖି କିରୂପେ ପ୍ରସ୍ଥାନ କରିବୁ ।

ସୀତା ଏଥିରେ ଲକ୍ଷ୍ମଣଙ୍କୁ ଅନେକ ଭର୍ତ୍ସନା କଲେ, ଆଉ କହିଲେ, ଏକ ଭାଇ ରାମଙ୍କ ରାଜ୍ୟ ନେଇଅଛନ୍ତି ତୁମ୍ଭେ ପ୍ରସ୍ତୁ ଆମ୍ଭକୁ ନେବା ପାଇଁ ମାନସ କରିଅଛ । ଏହି କାରଣ ଶ୍ରୀରାମଙ୍କୁ ଅବହେଳା କରି ଏଠାରୁ ଯିବାକୁ ଇଚ୍ଛା କର ନାହିଁ । ଲକ୍ଷ୍ମଣ କହିଲେ ଆମ୍ଭଙ୍କୁ ଏରୂପ ଭର୍ତ୍ସନା କରିବ ନାହିଁ, ରାମଚନ୍ଦ୍ର ଯଦ୍ୟପି ସହୋଦର, ତଥାପି ତାଙ୍କୁ ପିତୃସ୍ୱରୂପ ଜାଣୁଁ ଏବଂ ଆପଣଙ୍କୁ ଜନନୀତୁଲ୍ୟ ଜ୍ଞାନ କରୁଁ ଅତଏବ ଏପ୍ରକାର କଟୁକଥା ଆମ୍ଭଙ୍କୁ ଆଉ କହିବ ନାହିଁ । ଆମ୍ଭେ ରାମଙ୍କ ଆଜ୍ଞାରେ ଏଠାରେ ଅଛୁଁ, ଆପଣ ଯେବେ ଆଜ୍ଞା କରିବ ତେବେ ଆମ୍ଭେ ତିଳାର୍ଦ୍ଧ ବିଳମ୍ବ କରିବୁ ନାହିଁ ଏହିକ୍ଷଣି ଯାଉଅଛୁ । ସୀତା କହିଲେ ତେବେ ଯାଇ ଦେଖ, ରାମ ତୁମ୍ଭଙ୍କୁ କି କାରଣ ଡାକିଲେ । ଏହି କଥାରେ ଲକ୍ଷ୍ମଣ ଆପଣା ଧନୁକରେ ସୀତା ଯେଉଁଠାରେ ଥିଲେ ସେଠାର ଚତୁର୍ଦ୍ଦିଗରେ ରେଖା କାଟି ଦେଲେ । ତତ୍ପରେ ସୀତାଙ୍କୁ କହିଲେ ଆମ୍ଭେ ରାମଙ୍କ ଉଦ୍ଦେଶରେ ଯାଉ-ଅଛୁଁ, ଆପଣ ଗୃହ ମଧ୍ୟରେ ଥାଅ । କଦାଚ ରେଖାର ବହିର୍ଗତ ହେବ ନାହିଁ । ସୀତା କହିଲେ, ନା ହେବୁ ନାହିଁ ।

ରାବଣ ଏହି ସବୁ କଥା ଦୂରରେ ଥାଇ ଶୁଣିଲେ, ତତ୍ପରେ ଲକ୍ଷ୍ମଣ ଗଲାରୁ ସେ ଆପଣା ଶକଟ ଅନ୍ତରେ ରଖି ବ୍ରହ୍ମଚାରୀ ବେଶରେ ହସ୍ତରେ ଛତ୍ର ଓ ସ୍କନ୍ଧରେ ଝୁଲି ଧାରଣ କରି ସୀତାଙ୍କ କୁଟୀର ବାହାରେ ଛିଡ଼ା ହୋଇ ସୀତାଙ୍କଠାରୁ ଭିକ୍ଷା ମାଗିଲେ । ସୀତା ଭିକ୍ଷୁକ ଦେଖି କୁଟୀର ମଧ୍ୟରେ ଯେଉଁ ଫଳ ମୂଳାଦି ଥିଲା ତାହା ନେଇ ଗଣ୍ଡୀର ଭିତରେ ରଖି କହିଲେ ଏହି ଭିକ୍ଷା ନିଅ । ମାତ୍ର ଛଦ୍ମବେଶୀ ରାବଣ ରେଖା ଭିତରୁ ତାହା ନେଇ ନ ପାରି ସୀତାଙ୍କୁ କହିଲେ

ତୁମ୍ଭେ ବାହାରକୁ ଆସି ଆମ୍ଭଙ୍କୁ ଭିକ୍ଷା ଦିଅ । ସୀତା କହିଲେ ଆମ୍ଭେ ରେଖାରୁ ବାହାର ହେବୁ ନାହିଁ ; ତୁମ୍ଭେ ଏହିଠାରୁ ଭିକ୍ଷା ଉଠାଇ ନିଅ । ଏଥିରେ ବ୍ରହ୍ମଚାରୀ ବେଶୀ ରାବଣ କହିଲେ ଯେବେ ତୁମ୍ଭେ ବାହାରକୁ ଆସି ଭିକ୍ଷା ନ ଦେବ ତେବେ ଆମ୍ଭେ ତୁମ୍ଭ ଉପରେ କୋପ କରିବୁଁ । ତେତେବେଳେ ସୀତା କି କରନ୍ତି, ବ୍ରହ୍ମଶାପ ଶଙ୍କାରେ × × ଅବହେଳ ନ କରି ଗଣ୍ଡୀରରୁ ବାହାର ହୋଇ ଭିକ୍ଷା × × ଯେଉଁରୂପେ ବାହାର ହୋଇଅଛନ୍ତି ସେହିରୂପେ ରାବଣ × × ହସ୍ତ ଧାରଣ କଲେ । ସୀତା କହିଲେ ଆରେ ପାପିଷ୍ଠ ! ତୋହର × × ତୁ ଆମ୍ଭର ଅଙ୍ଗ ସ୍ପର୍ଶ କର ନା । ରାବଣ କହିଲେ ସୀତେ, ତୁମ୍ଭେ ଆମ୍ଭଙ୍କୁ ଚିହ୍ନି ପା'ରୁ ନା, ଆମ୍ଭେ ଦଶମୁଣ୍ଡ ରାବଣ; ଆମ୍ଭ ପ୍ରତି ତୁମ୍ଭେ ଅନୁକୂଳ ହୁଅ । ଆମ୍ଭେ ତୁମ୍ଭଙ୍କୁ ଆମ୍ଭ ରାଜ୍ୟରେ ରାଜେଶ୍ୱରୀ କରିବୁ, ଏବଂ ଇନ୍ଦ୍ରଙ୍କ ଅମରାବତୀ ଅପେକ୍ଷା ଆମ୍ଭର ଯେଉଁ ଉତ୍ତମ ପୁରୀ ଅଛି ସେଠାରେ ତୁମ୍ଭଙ୍କୁ ରଖିବୁଁ । ଆମ୍ଭର ଯେତେ ରାଣୀ ଅଛନ୍ତି ସେ ସବୁ ତୁମ୍ଭର ଦାସୀ ହୋଇ ସେବା କରିବେ, ତୁମ୍ଭେ ସେମାନଙ୍କୁ ଅନ୍ନ ଦେଲେ ସେମାନେ ଅନ୍ନ ପାଇବେ । ଆଉ ତୁମ୍ଭଙ୍କୁ ସ୍ୱର୍ଣ୍ଣ, ମଣି ମାଣିକ୍ୟରେ ଭୂଷିତ କରିବୁଁ । ଅତଏବ ତୁମ୍ଭେ ବନେବନେ ଭ୍ରମଣ କରି କାହିଁ କି ରାମଙ୍କ ସେବାରେ ଜନ୍ମ ବିଫଳ କରୁଅଛ, ଆସ ଆମ୍ଭ ସେବାରେ ପରମ ସୁଖରେ ରହିବ ।

—⁕—

## ୩ । ଧର୍ମ ବିଷୟ

ଅର୍ଥାଃ ପାଦରଜୋପମା ଗିରିନଦୀବେଗୋପମଂ ଯୌବନଂ,
ଆୟୁଷ୍ୟଂ ଜଲବିନ୍ଦୁଲୋଲଚପଲଂ ଫେନୋପମଂ ଜୀବନଂ ॥
ଧର୍ମଂ ଯୋ ନ କରୋତି ନିନ୍ଦିତମତିଃ ସ୍ୱର୍ଗାର୍ଗଲୋଦ୍‌ଘାଟନଂ,
ପଶ୍ଚାତ୍ତାପଯୁତୋ ଜରାପରିଗତଃ ଶୋକାଗ୍ନିନା ଦହ୍ୟତେ ॥

ଧନସମ୍ପତ୍ତି ଧୂଳିତୁଲ୍ୟ, ପର୍ବତସ୍ଥ ନଦୀ ବେଗର ନ୍ୟାୟ ଯୌବନ, ଜଳ ବିନ୍ଦୁବତ୍ ଆୟୁଚପଳ ଏବଂ ଜୀବନ ଫେନାର ନ୍ୟାୟ, କ୍ଷଣସ୍ଥାୟୀ ସଂସାରର ସମସ୍ତ ପଦାର୍ଥ ଏହିରୂପ କ୍ଷଣପରିଣାମୀ ଏବଂ ନଶ୍ୱର ଦେଖି ମୂଢ଼ ଯେଉଁ ଅବୋଧମାନେ ସ୍ୱର୍ଗଦ୍ୱାରର ଅର୍ଗଳ ଅର୍ଥାତ୍ କିଳଣି ଫିଟାଇବା ଉପାୟ ଯେ ଧର୍ମ ତାହା ଅର୍ଜନ ନ କରନ୍ତି ସେମାନେ ଜରାଗ୍ରସ୍ତ ଓ ବୃଦ୍ଧ ଦଶାକ୍ରାନ୍ତ ହୋଇ ଶୋକାଗ୍ନିରେ ଦଗଧ ହୁଅନ୍ତି । ପରମ ଦୟାବାନ୍ ଜଗତ୍ ପ୍ରସବିତା ଏହି ସଂସାରରେ ମନୁଷ୍ୟ ଜାତିଙ୍କୁ ପ୍ରାଣି ମଧ୍ୟରେ ଶ୍ରେଷ୍ଠତ୍ୱ ପଦ ଦେଇ ଅଛନ୍ତି ।

ଜ୍ଞାନରେ ଅନ୍ୱିତ କରିଅଛନ୍ତି ଏବଂ ସକଳ ସୁଖ ଆମ୍ଭମାନଙ୍କ କର ତଳେ ରଖି ଅଛନ୍ତି ଅତଏବ ଅନବରତ ଯତ୍ନରେ ସେହି ଜ୍ଞାନ ରତ୍ନ ଦ୍ୱାରା ପିତୃ ପ୍ରସାଦରସ୍ଥ କରି ଜୀବନର ସାଫଲ୍ୟ କରିବା ସମସ୍ତଙ୍କର ଅତି ଉଚିତ, ନଚେତ୍ କେବଳ ଆତ୍ମୋଦର ପୂରଣାର୍ଥେ ଓ ଇନ୍ଦ୍ରିୟ ଚରିତାର୍ଥେ ମନୁଷ୍ୟ ସୃଷ୍ଟ ହୋଇ ନାହାନ୍ତି । ଆହାର ନିଦ୍ରା × ମୈଥୁନ ବଂଶପାଳନାଦି ଶାରୀରିକ ଧର୍ମ ପ୍ରାଣି ମାତ୍ରରେ ବର୍ତ୍ତମାନ × ଦ୍ୱାରା ମନୁଷ୍ୟଙ୍କ ପ୍ରଶୁଙ୍କ, ଏ ଦୁଇର ଭେଦ ବୁଝା-ଯାଏ × × × ମନୁଷ୍ୟଙ୍କୁ ଦ୍ୱିପଦ ପଶୁ ଭିନ୍ନ ଆଉ କି କୁହାଯିବ ।

ଆମ୍ଭେମାନେ × × ପ୍ରତିପାଦକ ଯେଉଁ ଧର୍ମତତ୍ତ୍ୱାନ୍ୱେଷୀ ହେଉ ନାହୁ, ସାଂସାରିକ ସୁଖରେ କେବଳ ସର୍ବକାଳ ଅନୁରକ୍ତ ଥାଇ ଆୟୁଃକ୍ଷୟ କରି ବହୁ ବିଷୟ ବ୍ୟାପାରରେ ଲିପ୍ତ ହେଉଥିବା କାଳର ଗତି ହେତୁ କରୁ ନାହୁଁ ଏବଂ ମୋହମୟୀ ପ୍ରମୋଦ ମଦିରାପାନରେ ଉନ୍ମତ୍ତତା ହେତୁ ଜନ୍ମ ଜରା ମୃତ୍ୟୁ ଦେଖିସୁଦ୍ଧା ଚେତିତ ହେଉ ନାହୁଁ ।

ହାୟ ହାୟ ! ଥରେ ନିର୍ଜନରେ ନିବିଷ୍ଟ ମନରେ ଏହି ସଂସାରର ନଶ୍ୱରତ୍ୱ ବିବେଚନା କରି ଦେଖିଲେ କେଉଁ ମୂଢ଼ ହୃଦୟରେ ଧର୍ମ ପ୍ରବୃତ୍ତି ପ୍ରବେଶ ହୁଏ ନାହିଁ ? ଶ୍ରୀ ନିତ୍ୟ ଚଞ୍ଚଳା, ବିଷୟ ରସ ପରିଣାମରେ ବିରସ, ଦେହ ନାନା ରୋଗର ଘର, ବହୁ ଧନ ବହୁ ଅନର୍ଥର କାରଣ, ଆତ୍ମୀୟ ସ୍ୱଜନ ଦାରୁଣ ଶୋକର ମୂଳୀଭୂତ, ଅବଳାମାନେ ଅନର୍ଥ କାରଣ, ତଥାପି ସକଳ ଜୀବମାନେ ଭୟାନକ ପାପ ପଥର ଯାତ୍ରୀ ହେଉଅଛନ୍ତି ଧର୍ମର ଅକୃତ୍ରିମ ସୁଖ ଲାଳସାରେ ଅତ୍ୟଳ୍ପ ଲୋକଙ୍କ ମନ ଚେଷ୍ଟିତ ହୁଏ, ପ୍ରତିକ୍ଷଣ ସକଳ ପ୍ରାଣି ଆମ୍ଭମାନଙ୍କ ନୟନକୁ ଅଦୃଶ୍ୟ ହୋଇ ଅନ୍ଧକାରମୟ ରାଜ୍ୟକୁ ଯାଉ ଅଛନ୍ତି ତଥାପି ଆଶା ଶେଷ ହୁଏ ନାହିଁ । ରେ ଆଶା ରାକ୍ଷସି ତୋର କି ଆଶ୍ଚର୍ଯ୍ୟ ମୋହିନୀ ଶକ୍ତି ଅଛି, ମୁମୂର୍ଷାବସ୍ଥାରେ ସୁଦ୍ଧା ପ୍ରାଣୀମାନେ ତୁମ୍ଭ ସଙ୍ଗ ତ୍ୟାଗ କରିବାକୁ ଚାହାନ୍ତି ନାହିଁ, ତୁମ୍ଭର ପରାମର୍ଶରେ ସକଳ ଜୀବମାନେ ନାନା ଉତ୍କଟ ପାପକର କାର୍ଯ୍ୟରେ ପ୍ରବୃତ୍ତ ହେଉଅଛନ୍ତି । ଅତଏବ, ହେ ବନ୍ଧୁଗଣ, ଏ ପ୍ରକାର ସର୍ବନାଶୀ ପାପ ପିଶାଚୀକୁ ଦାସୀ କରି ରଖ, ତେବେ ସମସ୍ତ ଜଗତ୍ତ ତୁମ୍ଭର ଦାସ ହେବେ । କାହିଁକି ଚିରକାଳ ଆଶା ଦାସ ହୋଇ ସମସ୍ତଙ୍କ ଦାସତ୍ୱ ଓ ନରକ ଭାର ମସ୍ତକରେ ବହନ କର ? ବିବେକ ଅଞ୍ଜନରେ ଜ୍ଞାନ ନେତ୍ର ଉନ୍ମୀଳିତ କରି ଜୀବନ ସର୍ବସ୍ୱ ଧର୍ମ ମିତ୍ର ସହାୟରେ ଅବଳୀଳା କ୍ରମରେ ବୃଥା ଭୂତ ବନ୍ଧନରୁ ମୁକ୍ତ ହୁଅ । ———

# ୪ । ବାୟୁସେଚନ

ପ୍ରାଚୀନ ପଣ୍ଡିତମାନେ ବାୟୁକୁ ଜଗତ୍ପ୍ରାଣ ବୋଲି ବର୍ଣ୍ଣନା କରିଅଛନ୍ତି । ଫଳତଃ ବିବେଚନା କଲେ ପୃଥିବୀସ୍ଥ ପ୍ରାଣିଙ୍କ ଜୀବନସ୍ୱରୂପ, ଇହା ଅନାୟାସରେ ପ୍ରତିପନ୍ନ ହେବ । ଅନ୍ୟାନ୍ୟ ବସ୍ତୁ × × × ଦୁଇ ଏକ ଦିନ ବଞ୍ଚିବାକୁ ସମର୍ଥ ହେଉଅଛୁଁ × × × କ୍ଷଣକାଳ ଜୀବନ ଧାରଣ କରିବାକୁ କାହାରି ଶକ୍ତି × × × ଏକ ଗୃହର ବାୟୁ ସଞ୍ଚାରର ବାଟ ରୋଧ କରି ଦିଅନ୍ତୁ × × × କ୍ଷଣକାଳ ମଧ୍ୟରେ ପ୍ରାଣନାଶର ସମ୍ଭାବନା ହେବ । କାରଣ, ଆମ୍ଭେମାନେ ନିଶ୍ୱାସରେ ଯେଉଁ ବାୟୁ ଆକର୍ଷଣ କରୁଁ, ତାହା ଅକ୍ସିଜେନ ଓ ନାଇଟ୍ରୋଜେନ ଗାସ ଏହି ନାମଧେୟ ଦୁଇ ପ୍ରକାର ପବନ । ତନ୍ମଧ୍ୟରେ ଅକ୍ସିଜେନ ଗାସର ୮° ଭାଗ ଏବଂ ନାଇଟ୍ରୋଜେନ ଗାସର ୨° ଭାଗ ସମ୍ମିଳିତ ଥାଏ । ଇହା ଶରୀର ମଧ୍ୟରେ ପ୍ରବେଶ ହୋଇ ଶରୀର ରକ୍ତକୁ ନିର୍ମଳ କରେ, ପୁଣି ଯାହା ଆମ୍ଭେମାନେ ପ୍ରଶ୍ୱାସରେ ବାହାର କରି ପକାଉଁ ତାହାର ନାମ କାର୍ବଣିକ ଆସିଡ଼ ଗାସ, ଏ ରାତ୍ରିବେଳେ ବୃକ୍ଷ ଇତ୍ୟାଦିରୁ ବହିର୍ଗତ ହୁଏ । ଏ ସକାଶେ ମନୁ ପ୍ରଭୃତି ଅତି ପ୍ରାଚୀନ ଗ୍ରନ୍ଥକର୍ତ୍ତାମାନେ ରାତ୍ରିକାଳରେ ବୃକ୍ଷମୂଳେ ବାସ କରିବାର ନିଷେଧ କରିଅଛନ୍ତି, ଯଥା ।

ରାତ୍ରୌଚବୃକ୍ଷମୂଳାନି ଦୂରତଃ ପରିବର୍ଜୟେତ୍ ।

ନବାବ ସେ ରାଜ ଉଦ୍ଦୌଲଙ୍କ ସେନାପତି ମାଣିକଚାନ୍ଦ କଲିକତା ଗଡ଼ ମଧ୍ୟରେ ଦୀର୍ଘ ୧୮ ହାତ ପ୍ରସ୍ଥ ୯ ହାତ ପରିମାଣର ଗୋଟାଏ କୋଠରୀରେ ୧୪୬ ଜଣ ଇଂରେଜଙ୍କୁ ରାତ୍ରିଯାକ ରୁଦ୍ଧ କରି ରଖିବାରେ ଯେ ପ୍ରକାର ଭୟଙ୍କର ବ୍ୟାପାର ଘଟିଥିଲା, ତାହା ଅନେକଙ୍କୁ ସୁପ୍ରକାଶରୂପେ ଜଣାଅଛି । ସେ କୋଠରୀରେ ଏକ ମାତ୍ର ବାୟୁ ସଞ୍ଚାରର ଖିଡ଼ିକି ଥିଲା । ସୁତରାଂ ଆବଶ୍ୟକ ରୂପେ ବାୟୁ ପ୍ରବେଶ ହେବାର କୌଣସି ପଥ ନ ଥିଲା । ଉକ୍ତ ଇଂରେଜ ବନ୍ଦୀମାନଙ୍କର ପ୍ରଶ୍ୱାସ ଦ୍ୱାରା ଜନ୍ମିଥିବାର ମନ୍ଦ ପବନ କ୍ରମେ କ୍ରମେ ଘନୀଭୂତ ହେବାକୁ ଲାଗିଲା । ସେହି ରାତ୍ରିରେ ଯନ୍ତ୍ରଣାର ଆଉ ପରିସୀମା ନ ଥିଲା, ବନ୍ଦୀମାନେ ଅତିଶୀଘ୍ର ଘୋରତର ପିପାସାରେ କାତର ହେଲେ, ଆଉ ସମସ୍ତେ ବାୟୁବିନା ଅସ୍ଥିର ହେଲେ । ପ୍ରତ୍ୟେକ କିଞ୍ଚିତ୍ ବାୟୁଲାଭ ପ୍ରତ୍ୟାଶାରେ ଗବାକ୍ଷ

ନିକଟକୁ ଯିବା ନିମନ୍ତେ ବିବାଦ କରିବାକୁ ଲାଗିଲେ । ଆମ୍ଭମାନଙ୍କ ଦୁଃସହ କ୍ଳେଶ ଅବସାନ କର ବୋଲି ରକ୍ଷକମାନଙ୍କୁ ପ୍ରାର୍ଥନା କଲେ ଏବଂ ପରିଶେଷରେ ଏକ ୨ ହୋଇ ତଳେ ପଡ଼ିଲେ । ଅବଶିଷ୍ଟ ଲୋକେ ଶବରାଶି ଉପରେ ଛିଡ଼ା ହୋଇ ନିଶ୍ୱାସ ନିମନ୍ତେ ଅନେକ ସ୍ଥାନ ପାଇଲେ ତଦ୍ଦ୍ୱାରା କେତେକ ବଞ୍ଚି ରହିଲେ । ଆର ଦିନ ପ୍ରାତଃକାଳରେ ଦ୍ୱାର ଫିଟାଇଲାରୁ ଜଣାଗଲା, ଶଏ ଛୟାଳିଶ ଜଣଙ୍କ ମଧ୍ୟରେ ୨୩ ଜଣ ଜୀବିତ ଅଛନ୍ତି । ବାକୀ ସମସ୍ତେ × × ଅଛନ୍ତି ।

ଅତଏବ × × ବାସ କରିବାକୁ ହୁଏ ତାହା ଗୃହ ପାଖରେ ଗବାକ୍ଷ × × ଗମନର ପଥ ରଖିବାର ସର୍ବତୋଭାବେ ବିଧେୟ × × ମୋହରୀ ଇତ୍ୟାଦି ମଧ୍ୟରୁ କାର୍ବଣିକ ଆସିଡ ଗ୍ୟାସ ଉତ୍ପନ୍ନ ହୁଏ, ଏହି ଦୁର୍ଗନ୍ଧ ବାୟୁ ନିଶ୍ୱାସ ଦ୍ୱାରା ଶରୀର ମଧ୍ୟରେ ପ୍ରବେଶ ହେଲେ ମନୁଷ୍ୟକୁ ରୁଗ୍ଣ, ଶୀର୍ଣ୍ଣ ଆଉ ଶ୍ରୀଭ୍ରଷ୍ଟ କରେ ଏସକାଶେ ମୋହରୀ ଇତ୍ୟାଦି ନିକଟରେ ବାସ କରିବାର କୌଣସି ପ୍ରକାରେ ଉଚିତ ନୁହେ । ଶରୀର ମଧ୍ୟରେ ଶିରା ସଂଯୋଗରେ ସର୍ବଦା ରକ୍ତ ଗମନାଗମନ କରୁଅଛି, ସେହି ରକ୍ତ ଶରୀରସ୍ଥ ଅନ୍ୟାନ୍ୟ ନଷ୍ଟ ପଦାର୍ଥ ସହିତ ମିଶ୍ରିତ ହୋଇ ମନ୍ଦ ହୋଇଯାଏ । ତକ୍ରାଦ ପ୍ରଚୁର ପବନ ନିଶ୍ୱାସ କରିବାରୁ ସେହି ପବନ ଦେହ ମଧ୍ୟରେ ପ୍ରବେଶ କରି ସେହି ରକ୍ତକୁ ପରିଷ୍କାର କରେ । ଯେବେ ହିତକାରି ବାୟୁ ସଙ୍ଗେ କୌଣସି ଅହିତକାରୀ ବସ୍ତୁ ପ୍ରବେଶ କରେ ତେବେ ଅତଶୀଘ୍ର ରୋଗୀ ହେବାର ସଂଶୟ କି ? ଯଦ୍ୟପି ଆମ୍ଭେମାନେ ସର୍ବଦା କୁତ୍ସିତ ସ୍ଥାନ ପରିତ୍ୟାଗ କରି, ଯେଉଁ ସ୍ଥାନରେ ନିତ୍ୟ ଶୁଦ୍ଧ ସରଳ ବାୟୁର ସଞ୍ଚାର ହେଉଅଛି, ଏହି ପ୍ରକାର ସ୍ଥାନରେ ବାସ କରିବା ତେବେ କୌଣସି ପୀଡା ଆମ୍ଭମାନଙ୍କୁ ଆକ୍ରମଣ କରି ପାରିବ ନାହିଁ ମାତ୍ର ସର୍ବଦା ଶରୀର ସୁସ୍ଥ ଓ ବଳିଷ୍ଠ ରହିବ । ସବୁ ବିଷୟରେ ପ୍ରୀତି ଲାଭ କରି ପାରିବା, ଶରୀର ସୁସ୍ଥ ରହିଲେ ଆଉ ଆମ୍ଭମାନଙ୍କର କୌଣସି ବିଷୟରେ ଅଭାବ ରହିବ ନାହିଁ । ଆମ୍ଭେମାନେ ବାୟୁ ସେବା ଦ୍ୱାରା ଶରୀରକୁ ଯେତେ ସୁସ୍ଥ ଓ ବଳବାନ୍ କରିବା ତେତେ ଆମ୍ଭମାନଙ୍କୁ ଉତ୍ତମ ୨ ଫଳଲାଭ ହେବ ।

——:——

# ୫—ରକ୍ତ ଚଳିବା ବିଷୟ

ଯେମନ୍ତ ଲଣ୍ଡନ ମହାନଗରର ପ୍ରତ୍ୟେକ ଗୃହରେ ଜଳ ପ୍ରଦାନ କରିବା ଲାଗି ନାନା ସ୍ଥାନରେ ନାନା ନଳ ସ୍ଥାପିତ ଅଛି, ତଦ୍ରୂପ ସକଳ ଶରୀରରେ ରକ୍ତ ପ୍ରଦାନାର୍ଥେ ନାନା ସ୍ଥାନରେ ନାନା ରକ୍ତ ଶିରା ସ୍ଥାପିତ ଅଛି । ସେହି ସବୁ ନଗର ମଧ୍ୟରେ ସର୍ବତ୍ର ଜଳ ଚଳାଇବା ଦକାଶେ ନଦୀ ତୀରରେ ଗୋଟାଏ ଦମକଳ ଅର୍ଥାତ୍ ଜଳ ଉଠାଇବା କଳ ସ୍ଥାପିତ ଅଛି, ଏବଂ ସେହି ଦମକଳରୁ ନାନା ବୃହତ୍ ୨ ନଳ ନାନା ଦିଗକୁ ନିର୍ଗତ ହୁଏ, ଏବଂ ସେହି ସବୁ ବୃହତ୍ ନଳରୁ କ୍ଷୁଦ୍ର ୨ ନଳ ବାହାର ହୋଇ ନାନା ମାର୍ଗ ଓ ଗଳିରେ ଗମନ କରେ, ଏବଂ ସେଥିରୁ ଆହୁରି କ୍ଷୁଦ୍ର ୨ ନଳ ବାହାର × × ପ୍ରତ୍ୟେକ ଗୃହକୁ ଯାଏ, ସେହିରୂପ ଆମ୍ଭମାନଙ୍କ ଶରୀରରେ ସହସ୍ର × ରକ୍ତ ଶିରା ଶରୀରର ଆଦ୍ୟନ୍ତ ସବୁଠାରେ ରକ୍ତ ଯେ × × ନଗରସ୍ଥ ଲୋକେ ଜଳ ପାଇ ଯେମନ୍ତ ସ୍ୱେଚ୍ଛାନୁସାରେ × × ସେହିରୂପ ରକ୍ତ ବ୍ୟସ୍ତ ହେଲେ ହୁଏ ନାହିଁ । କାହିଁକି ନା ଯେଉଁ ରକ୍ତ ଅନ୍ତକରଣରୁ ନିର୍ଗତ ହୋଇ ଶିରାଦ୍ୱାରା ଅଙ୍ଗର ଅନ୍ତ ପର୍ଯ୍ୟନ୍ତ ଗମନ କରେ, ତାହାକୁ ସେହି ଅନ୍ତଃକରଣରେ ପୁନର୍ବାର ପ୍ରବେଶ ହେବାକୁ ହୁଏ, ନରୁବା ଶରୀରର ସ୍ୱାସ୍ଥ୍ୟ ହୋଇ ପାରେ ନାହିଁ ।

ଅନ୍ତଃକରଣକୁ ରକ୍ତ ଫେରି ଆସିବା ଲାଗି ଅନ୍ୟ ୨ ନଳସ୍ୱରୂପ ଶିରା ସ୍ଥାପିତ ଅଛି, ଉକ୍ତ ସବୁ ଶିରାର ଅଗ୍ରଭାଗ ସେହି ପ୍ରଥମ ଶିରାର କ୍ଷୁଦ୍ର ୨ ଅଗ୍ରଭାଗ ସଙ୍ଗେ ସଂଲଗ୍ନ ହୋଇ ରକ୍ତ ସଂଗ୍ରହ କଲେ ପୁନର୍ବାର ଅନ୍ତକରଣରେ ପ୍ରବେଶ କରାଏ । ରକ୍ତ ବିତରଣକାରୀ ଓ ରକ୍ତ ସଂଗ୍ରହକାରୀ, ଏହି ଯେଉଁ ଦୁଇ ପ୍ରକାର ରକ୍ତ ଶିରା ଅଛି, ସେମାନଙ୍କ ଆକୃତିରେ ଅଳ୍ପ ବିଶେଷ ଅଛି; ମାତ୍ର ରକ୍ତ ବିତରଣକାରୀ ଶିରାଦ୍ୱାରା ରକ୍ତ ଯେ ପ୍ରକାର ରକ୍ତାଶୟ ଅନ୍ତକରଣରୁ ବାହାର ହୋଇ ଶରୀରର ସର୍ବ ସ୍ଥାନରେ ଉପନୀତ ହୁଏ, ତଦ୍ରୂପ ରକ୍ତ ସଂଗ୍ରହକାରୀ ଶିରା ଦ୍ୱାରା ରକ୍ତ ସର୍ବ ସ୍ଥାନରୁ ସଂଗୃହୀତ ହୋଇ ପୁନର୍ବାର ଅନ୍ତଃକରଣରୂପେ ଆଶୟରେ ଏକତ୍ରୀକୃତ ହୁଏ, ତହିଁରେ ପ୍ରଥମେ କ୍ଷୁଦ୍ର ୨ ଶିରାରେ ରକ୍ତ ସଂଗୃହୀତ ହେଲେ କ୍ରମେ ୨ ସବୁ ବଡ଼ ଶିରାରେ ପ୍ରବେଶ କରେ, ଶେଷରେ ଅଧିକ ବଡ଼ ଏକ ମହାଶିରାରେ ମିଳିତ ହୋଇ ଏକ ବାଟରେ ଅନ୍ତଃକରଣରେ ପ୍ରବିଷ୍ଟ ହୁଏ ।

ଅନ୍ତଃକରଣ ରକ୍ତ ଚାଳନକାରୀ ଗୋଟାଏ ଦମକଳ ପରି ହୋଇ ଚାରି ଗହ୍ୱରସ୍ୱରୂପ ଆଶୟରେ ବିଭକ୍ତ । ସେହି ଅନ୍ତଃକରଣ ସଙ୍କୁଚିତ ହୋଇ-

ପାରେ ଆଉ ସଙ୍କୁଚିତ ହେଲେ ଅନ୍ତରେ ଥିବା ରକ୍ତ ବଳେ ୨ ବାହାରି ପଡ଼େ, ପୁନର୍ବାର ଶିଥିଳ ହେଲେ ଅନ୍ତଃକରଣ ଫମ୍ପା ଓ ବିସ୍ତାରିତ ହୋଇ ରକ୍ତ ସଂଗ୍ରହକାରି ଶିରା ଦ୍ୱାରା ଆଣି ରକ୍ତ ଗ୍ରହଣ କରେ। ତତ୍ପର ଦ୍ୱିତୀୟବାର ସଙ୍କୁଚିତ ହୋଇ ବିତରଣକାରି ଶିରା ଦେଇ ରକ୍ତ ବାହାର କରି ପକାଏ ଅର୍ଥାତ୍ ଯେତେ ରକ୍ତ ଗ୍ରହଣ କରିଥିଲା ତେତିକମାତ୍ର ପୁନର୍ବାର ବାହାର କରେ। ଏହିରୂପେ ଘଡ଼ିକ ମଧ୍ୟରେ ଚାରି ହଜାର ଥର ସଙ୍କୁଚିତ ଓ ବିସ୍ତାରିତ ହୋଇ ଅନ୍ତଃକରଣ ଆପଣା କର୍ମ ସାଧନ କରି ଶରୀରର ସର୍ବାଙ୍ଗ ପ୍ରତ୍ୟଙ୍ଗରେ ରକ୍ତ ଯୋଗାଇ ଦିଲ ଦିଏ ଆଉ ମାସକୁ ମାସ ଅବିଶ୍ରାମରେ ଶ୍ରମ କରି କ୍ଲାନ୍ତ ହୁଏ ନାହିଁ। ଏହି ସବୁ ଦ୍ୱାରା ଈଶ୍ୱରଙ୍କର ମହାକୌଶଳ ସମ୍ପୂର୍ଣ୍ଣରୂପେ ପ୍ରକାଶ ହେଉଅଛି। ଦେଖ ଅନ୍ତଃକରଣରୁ ଯେଉଁ ରକ୍ତ ବାହାରେ, ତାହା ପ୍ରଥମେ × × ×
କ୍ରମେ ୨ କ୍ଷୁଦ୍ର ଶିରାରେ ପ୍ରବେଶ କରେ; କିନ୍ତୁ ଯେଉଁ × × ×
ଫେରି ଆସେ ସେହି ରକ୍ତ ପ୍ରଥମେ କ୍ଷୁଦ୍ର ୨ ଶିରାରେ × × ×
ବଡ଼ ଶିରାରେ ପ୍ରବେଶ କରେ। ସୁତରାଂ ରକ୍ତ ବିତରଣକାରୀ × ×
ଯେତେ ବଳରେ ଭିଡ଼ି ପଡ଼େ, ତେତେ ବଳରେ ସଂଗ୍ରହକାରି ଶିରାରେ ପଡ଼େ ନାହିଁ। ସେଥିରେ ଯେମନ୍ତ ଶରୀରର କୌଣସି ହାନି ଜନ୍ମି ନ ପାରିବ, ଏହି କାରଣ ପରମେଶ୍ୱର ରକ୍ତ ସଂଗ୍ରହକାରି ଶିରା ଅପେକ୍ଷା ରକ୍ତ ବିତରଣକାରି ସକଳ ଶିରାକୁ ଅଧିକ ସ୍ଥୂଳ ଓ ଶକ୍ତ କରିଅଛନ୍ତି। ରକ୍ତ ବିତରଣକାରି ଓ ରକ୍ତ ସଂଗ୍ରହକାରି ଏହି ଦୁଇପ୍ରକାର ଶିରା ମଧ୍ୟରେ ଏହି ଏକ ବିଶେଷ ହୁଏ ଏବଂ ପରମେଶ୍ୱରଙ୍କ କୌଶଳ ପ୍ରକାଶକାରି ଆଉରି ଗୋଟାଏ ଭେଦ ଅଛି। ଯେଉଁ ଶିରା ଅନ୍ତଃକରଣରୁ ରକ୍ତ ଆଣି ବିତରଣ କରେ ତାହା ଯେବେ ବନ୍ଧା ଯାଏ ତେବେ ରକ୍ତ ସଂଗ୍ରହକାରି ଅନ୍ୟ ଶିରା ବନ୍ଧା ଯିବାରୁ ତାହାର ବନ୍ଧା ଯିବାର ଅଧିକ ମନ୍ଦ ହେବ, ଏହି ନିମନ୍ତେ ରକ୍ତ ବିତରଣକାରି ଶିରା ଶକ୍ତ ହୋଇଅଛି ତାହା କେବଳ ନୁହେ ମାତ୍ର ମାଂସପେଶୀ ମଧ୍ୟରେ ଅତି ଗୁପ୍ତ ସ୍ଥାନରେ ସ୍ଥାପିତ ଅଛି, କିମ୍ବା ଅସ୍ଥି ଉପରେ ଖୋଳା କ୍ଷୁଦ୍ର ୨ ଖାତରେ ଗମନ କରେ। ରକ୍ତ ବିତରଣକାରି ଶିରା ରକ୍ଷାର୍ଥେ ପଞ୍ଜରା ଅନ୍ତଃପାର୍ଶ୍ୱରେ ସେହି ପ୍ରକାର ସ୍ଥାନ ଦତ୍ତ ଅଛି ଏବଂ ଯେଉଁ ଅଙ୍ଗୁଳି ସହଜରେ ହାନି ହୋଇପାରେ ତାହାର ଅନ୍ତରସ୍ଥ ଅସ୍ଥିର ପାର୍ଶ୍ୱରେ ତଦ୍ରୂପ ନିମ୍ନପଥ ଅଛି। ତହିଁରେ ରକ୍ତ ବିତରଣକାରି ଶିରା ଏ ପ୍ରକାର ସାବଧାନରେ ରକ୍ଷା ହୁଏ ଯେ ଅଙ୍ଗୁଳୀର ଅସ୍ଥି ପର୍ଯ୍ୟନ୍ତ କାଟିଲେ ସୁଦ୍ଧା ସେହି ଶିରାର କିଛି ହାନି ହୋଇ ପାରେ ନାହିଁ।

## ୭ । କଣିକା ସଂଗ୍ରହ

ଜଣେ ଗଣକର ମାହାତ୍ମ୍ୟ ।—ଏକ ବାଦଶାହ କୌଣସି ଗଣକଙ୍କୁ ପଚାରିଲେ, "ଆମ୍ଭ ମରଣକାଳ କେତେଦିନ ବାକି ଅଛି ?" ଗଣକ ଉତ୍ତର କଲା, "ଦଶବର୍ଷ" । ଏକଥା ଶୁଣି ବାଦଶାହା ଅତିଶୟ ଭାବିତ ଓ ଚକ୍ଷୁପଲକରେ ପୀଡ଼ିତ ହୋଇ ଶଯ୍ୟାଗତ ହେଲେ । ତହିଁରେ ଜଣେ ସୁବୁଦ୍ଧି ଅମାତ୍ୟ ଏହି ଦୁର୍ଦ୍ଦୈବର ସଦୁପାୟ କରିବା ଅଭିପ୍ରାୟରେ ସେଇ ଗଣକଙ୍କୁ ବାଦଶାହଙ୍କ ସମ୍ମୁଖକୁ ଡାକି ପଚାରିଲା; ତୁମ୍ଭ ଜୀବନର ଆଉ କେତେ କାଳ ବାକି ଅଛି ? ସେ ଉତ୍ତର କଲା, ବଂଶତି ବର୍ଷ ବାକି ଅଛି । ରାଜମନ୍ତ୍ରୀ ତତ୍‌କ୍ଷଣାତ୍ ତଲବାର ଘେନି ତା'ହାର ମସ୍ତକ ଛେଦନ କରି କହିଲା, ମହାରାଜ ଏ ଗଣକର ଗଣନାର ସ୍ଥୈର୍ଯ୍ୟ ଦେଖନ୍ତୁ । × × ରେ ସନ୍ତୁଷ୍ଟ ହୋଇ ମନ୍ତ୍ରିର ବୁଦ୍ଧି କୌଶଳ ପ୍ରଶଂସା × × ବାକ୍ୟରେ ଆସ୍ଥା କଲେ ନାହିଁ ।

---

ଧର୍ମଶାଳଠାରୁ ରାଜଭବନର ପ୍ରଭେଦ କି ?—ଜଣେ ସନ୍ନ୍ୟାସୀ ନାନା ଦେଶରେ ଭ୍ରମଣ କରୁ କରୁ ବାଲ୍ ନାମକ ଏକ ନଗରରେ ଉପସ୍ଥିତ ହୋଇ ଧର୍ମଶାଳ ବୋଲି ଜଣେ ରାଜାଙ୍କ ପ୍ରାସାଦରେ ପ୍ରବେଶ କଲା; ଆଉ ଇତସ୍ତତଃ ଅବଲୋକନ କରି ରାଜାଙ୍କ ମହାମୂଲ୍ୟାସନରେ ବସି ବିଶ୍ରାମ କରିଥିଲା । ଏଥି ମଧ୍ୟରେ ରକ୍ଷକମାନେ ତାହାକୁ ଦେଖି ପଚାରିଲେ, ତୁମ୍ଭେ ଏଠାକୁ କାହିଁକି ଆସିଅଛ ? ସନ୍ନ୍ୟାସୀ କହିଲା, ଆମ୍ଭର ଏ ଚଟୀରେ ରାତ୍ରି ଯାପନ କରିବାର ଇଚ୍ଛା ଅଛି । ତହିଁରେ ଚୌକିଦାରମାନେ କ୍ରୋଧରେ ତାହାକୁ କହିଲେ ଏ ଚଟୀ ନୁହେ, ଏ ରାଜଭବନ । ଏମନ୍ତ ସମୟରେ ରାଜା ନିଜେ ସେ ସ୍ଥାନ ଦେଇ ଯାଉଥିବାରୁ ତାକୁ ଦେଖି ହାସ୍ୟ ବଦନରେ ପଚାରିଲେ, ସନ୍ନ୍ୟାସିନ୍, ତୁମ୍ଭେ ଏ ରାଜଭବନ କି ଧର୍ମଶାଳ ବୁଝି ପାରିଲ ନାହିଁ ? ସନ୍ନ୍ୟାସୀ କହିଲା, ମହାରାଜ, ମୁଁ ଏକ ପ୍ରଶ୍ନ ପଚାରିବାର ଇଚ୍ଛା ଅଛି, ଆଜ୍ଞା ହେଉ । ସନ୍ନ୍ୟାସୀ ରାଜାଜ୍ଞା ପ୍ରାପ୍ତ ହୋଇ ପଚାରିଲା, ମହାରାଜ, ଯେତେବେଳେ ଏହି ଗୃହ ପ୍ରଥମରେ ନିର୍ମାଣ ହୋଇଥିଲା, ତହିଁରେ କିଏ ବାସ କରିଥିଲେ ? ରାଜା କହିଲେ, ଆମ୍ଭ ପୂର୍ବପୁରୁଷମାନେ । ତଦନ୍ତର ସନ୍ନ୍ୟାସୀ ପଚାରିଲା, ଶେଷରେ କିଏ ବାସ କରିଥିଲା ? ରାଜା କହିଲେ, ଆମ୍ଭର ପିତା । ତହିଁରେ ସନ୍ନ୍ୟାସୀ

ପଚାରିଲ, ବର୍ତ୍ତମାନ କିଏ ବାସ କରୁଅଛି ? ରାଜା କହିଲେ, ଆମ୍ଭେ । ତଦ୍ବାଦ ସନ୍ନ୍ୟାସୀ ପଚାରିଲ, ଏ ଉତ୍ତାରେ କିଏ ବାସ କରିବେ ? ରାଜା କହିଲେ, ଆମ୍ଭ ଉତ୍ତରାଧିକାରୀ । ସନ୍ନ୍ୟାସୀ କହିଲ ମହାରାଜ, ଯେଉଁ ସ୍ଥାନରେ ବେଳକୁବେଳ ଏତେଲୋକ ବାସ କରନ୍ତି ଆଉ ଅନୁକ୍ରମେ ଯହିଁରେ ଏତେ ଜଣ ଅତିଥି ବାସ କରିବେ ସେ ସ୍ଥାନକୁ ରାଜଭବନ ବୋଲିଯାଏ ନାହିଁ; ଧର୍ମଶାଳା ବୋଲିଯାଏ ।

---

# ସମାଚାର ପତ୍ରିକା

ସୁରା ବିକ୍ରୟକାରିମାନଙ୍କ ପ୍ରତି ପୋଲିସର × × × ହେଉଅଛି । × × × ସୁରା ବିକ୍ରୟ × × × ଖୋଲି ନ ରଖିଲେ × ବ୍ୟବସାୟିମାନେ ଏତଦାଜ୍ଞା ପାଳନ କରନ୍ତି ନାହିଁ ତହିଁରେ ଅନେକଙ୍କର ଅର୍ଥଦଣ୍ଡ ହୋଇଅଛି । ଅର୍ଥଦଣ୍ଡରେ ସେମାନଙ୍କର କି ଶାସନ ହେବ ? ଦୈବାତ୍ ଏକ ଦିନରେ ୫ ବା ୧୦ ଟଙ୍କା ଦଣ୍ଡ ହେବ କିନ୍ତୁ ରାତ୍ରିରେ ଅତିରିକ୍ତ ଦୁଇ ଘଣ୍ଟା କାଳ ମଦ୍ୟବିକ୍ରୟ କଲେ ସେମାନେ ଜରିମାନାର ଦ୍ୱିଗୁଣ ଲାଭ କରନ୍ତି ତହିଁରେ ପୋଲିସର ମାଜିଷ୍ଟ୍ରେଟ ସାହେବମାନେ ବାରମ୍ବାର ଅର୍ଥଦଣ୍ଡ କଲେ ସୁଦ୍ଧା ରାତ୍ରି ୯ ଘଣ୍ଟା ବାଦ ମଦ୍ୟ ବିକ୍ରୟ ନିବାରଣ କରି ପାରନ୍ତି ନାହିଁ ବର୍ତ୍ତମାନ ବିରକ୍ତ ହୋଇ ଅନେକ ସୁରା ବିକ୍ରେତାଙ୍କ ଲାଇସେନ୍ସ ଅର୍ଥାତ୍ ଅନୁମତିପତ୍ର ରଦ କରୁଅଛନ୍ତି ତହିଁରେ ଏତେ ଦୋକାନ ବନ୍ଦ ହୋଇ ଯାଇଅଛି ଯେ ତଦ୍ଦ୍ୱାରା ଗବର୍ଣ୍ଣମେଣ୍ଟର ଅବକାରୀ ମହାଲର ବାର୍ଷିକ ବାର ହଜାର ଟଙ୍କା ମାସୁଲ କ୍ଷତି ହେବ । ଗବର୍ଣ୍ଣମେଣ୍ଟ ପ୍ରଜାଙ୍କ ଅନିଷ୍ଟ ନିବାରଣ ନିମନ୍ତେ ଏତେ କ୍ଷତି ସ୍ୱୀକାର କରି ଅଛନ୍ତି ତଥାଚ ଉକ୍ତ କୁବ୍ୟବହାର ବନ୍ଦ ହେଉ ନାହିଁ । ପ୍ରଥମରେ ପୋଲିସ ଚୌକିଦାର ଦାରୋଗା ଜମାଦାରମାନଙ୍କୁ ଶାସନ ନ କଲେ କୌଣସିରୂପେ ଏ କୁବ୍ୟବହାର ରହିତ ହେବ ନାହିଁ, ପୋଲିସ ଚୌକିଦାରମାନେ ସୁରା ବିକ୍ରୟକାରିଙ୍କଠାରୁ ଅନେକ ଘୁଷ ନିଅନ୍ତି । ପ୍ରତ୍ୟେକ ସୁରା ଘର ପଛରେ ବା ପାଖରେ ଗୋଟାଏ ଗୋଟାଏ ଗୁପ୍ତଦ୍ୱାର ଅଛି, ଶୁଣ୍ଢିମାନେ ରାତ୍ରି ୯ ଘଣ୍ଟା ବାଦ ସଦର ଦ୍ୱାର ରୁଦ୍ଧ କରି ରଖନ୍ତି ଗୁପ୍ତ ଦ୍ୱାରରେ ମଦ୍ୟପ ଓ ସୁରା ଆସ୍ୱାଦକାରିଙ୍କୁ ଘରେ ପ୍ରବେଶକରାଇ ଅଭିଷ୍ଟ ସାଧନ କରନ୍ତି । ପୋଲିସ ପ୍ରହରୀମାନେ କଥା କହନ୍ତି ନାହିଁ, ଦେଖିଲେ ସୁଦ୍ଧା ଦେଖନ୍ତି ନାହିଁ, ବର୍ତ୍ତମାନ ଉଆଟଗଞ୍ଜର ପୋଲିସ ଥାନାର ଶାମିଲ ଏକ ଶୁଣ୍ଢି ଗୃହକୁ

କେତେ ଜଣ ଖଲାସୀ ରାତରେ ମଦରା କଣିବାକୁ ଯାଇଥିଲେ, ତେତେବେଳେ ରାତି ୯ ଘଣ୍ଟା ଗତ ହୋଇଥିବାରୁ ଦୋକାନୀ ସେମାନଙ୍କୁ ମଦ୍ୟ ଦେଲା ନାହିଁ ତହୁଁ ସେଇ ସ୍ଥାନର ପୋଲିସ ଚୌକିଦାର ଆପେ ସୁରାଳୟରୁ ମଦ୍ୟ ଘେନି ସେମାନଙ୍କୁ ଦେଲା, ଥାନାର ସରଜନ ତାହା ଦେଖି ଉକ୍ତ ଚୌକିଦାରକୁ ଜରିମାନା କରିଅଛନ୍ତି । ଅତଏବ ପୋଲିସ ଶାସନ ଆଗେ କର୍ତ୍ତବ୍ୟ ନଚେତ୍ ଅନ୍ୟ କୌଣସି ଉପାୟରେ ଅଧିକ ରାତରେ ସୁରା ବିକ୍ରୟ ବନ୍ଦ ହେବ ନାହିଁ ।

———

ରେବିନିଉ ବୋର୍ଡର ମେମ୍ବର ମେଂ ରକେଟସ ସାହେବ ଫିନାନସିୟଲ କମିଶନର ହୋଇ ମଫସଲ ଭ୍ରମଣ କରିବାକୁ ଯାଇଅଛନ୍ତି ଏବଂ ଫେରି ଆସିଲେ ଗବର୍ଣ୍ଣମେଣ୍ଟଙ୍କ କୌନସଲର ମେମ୍ବର ଆସନରେ ବସିବେ । ଭଗଲପୁରର କମିଶନର ମେଂ ଷ୍ଟିନଫୋର୍ଥ ସାହେବ ମେଂ ରକେଟସ ସାହେବଙ୍କ କର୍ମରେ ନିଯୁକ୍ତ ହେବେ । କଲିକତାର ପ୍ରଧାନ ମାଜିଷ୍ଟ୍ରେଟ୍ ମେଂ କୋବର୍ଣ୍ଣ ସାହେବ ଭଗଲପୁର ଓ ସନ୍ତାଳ ପ୍ରଦେଶର କମିଶନର ହେବେ, ଉଠାଇତ ଧୃତ କରଣୀୟ କମିଶନର ମେଂ ହୁଆକୋପ ସାହେବ କଲିକତାର ପ୍ରଧାନ ମାଜିଷ୍ଟ୍ରେଟୀ ପଦ ପାଇବେ, ମେଂ ଏଫ୍ ଏଲ ସିଣ୍ଟନ ସାହେବ ରେବିନିଉ ବୋର୍ଡର ଜୁନିୟର ସେକ୍ରେଟେରୀ ପଦରେ ଏବଂ ମେଂ ଲୁଇସ ସାହେବ ଲସିଂଟନ ସାହେବଙ୍କ କର୍ମରେ ନିଯୁକ୍ତ ହେବେ, ପ୍ରଶଂସିତ ସାହେବମାନେ ବର୍ତ୍ତମାନ ଏକଟିଂରୂପେ ନିଯୁକ୍ତ ହେବେ ।

———

ନବୀନ ଗବର୍ଣ୍ଣର ଜେନରଲ ବାହାଦୁର ଗବର୍ଣ୍ଣମେଣ୍ଟର ସକଳ କାର୍ଯ୍ୟ ବିଲକ୍ଷଣ ନିରୀକ୍ଷଣ ପରୀକ୍ଷଣ କରୁଅଛନ୍ତି, ସେକ୍ରେଟେରୀମାନଙ୍କୁ ସାୟଂକାଳ ପର୍ଯ୍ୟନ୍ତ ଅଫିସରେ ରଖନ୍ତି ସେଥିରେ ସମସ୍ତେ ଶ୍ରୀଯୁତ ଲର୍ଡ କେନିଂ ବାହାଦୁରଙ୍କ ପ୍ରତି ବିରକ୍ତ ହେଉଅଛନ୍ତି ।

× × × ଧନପ୍ରାଣ ରକ୍ଷା × × ହେଉଅଛନ୍ତି, ଯଶୋହରର ଗ୍ରାମ ପାଖରେ ଗତ ଛ ମାସ ମଧ୍ୟରେ ଅସଂଖ୍ୟ ଚୋରୀ ଡକାଇତୀ ହୋଇଅଛି, ମାଜିଷ୍ଟ୍ରେଟ ସାହେବ ଜିଲାର ଶାନ୍ତି ରକ୍ଷାରେ ମନଯୋଗ କରନ୍ତି ନାହିଁ, ପୋଲିସ ଆମଲମାନେ ଅର୍ଥ ଉପାର୍ଜନରେ ବ୍ୟସ୍ତ, ପ୍ରଜାମାନଙ୍କର କୌଣସି ସଦୁପାୟ ଜଣାଯାଏ ନାହିଁ, ଉପରିସ୍ଥ ରାଜପୁରୁଷମାନେ ପୁଣି ଏ ସକଳ ବୃତ୍ତାନ୍ତରେ କର୍ଣ୍ଣପାତ କରନ୍ତି ନାହିଁ ।

———

ରାଜା ଦଲିପ ସିଂହଙ୍କ ମାତା ରାଣୀ ଚନ୍ଦ୍ରାବତୀ ଇଙ୍ଗଲଣ୍ଡ ଗମନ କରିବାକୁ ଉଦ୍ୟୋଗ କରିଅଛନ୍ତି, ତାଙ୍କ ଅଭିପ୍ରାୟ ମହାରାଣୀଙ୍କ ସମୀପରେ କମ୍ପାନୀଙ୍କ ବିରୁଦ୍ଧରେ ଅଭିଯୋଗ କରିବେ । ନେପାଳ ରାଜା ବର୍ତ୍ତମାନ ଉକ୍ତ ରାଣୀଙ୍କୁ ମାସିକ ସହସ୍ର ମୁଦ୍ରା ବୃତ୍ତି ଦେଉଅଛନ୍ତି ତହିଁରେ ତାଙ୍କର ଦିନପାତ ହୁଏ ।

ଇଷ୍ଟ ଇଣ୍ଡିଆ କମ୍ପାନିମାନେ ଭାରତବର୍ଷର ଅନେକ ସ୍ୱାଧୀନ ଆଶ୍ରିତ ରାଜାମାନଙ୍କ ରାଜ୍ୟ ନେଇଅଛନ୍ତି କେହି ଏ ପର୍ଯ୍ୟନ୍ତ ବିଲାତରେ ଆପିଲ୍ କରି ହୃତ ରାଜ୍ୟ ପୁନର୍ବାର ପ୍ରାପ୍ତ ହୋଇ ନାହିଁ, ଅତଏବ କମ୍ପାନିମାନଙ୍କୁ ଏ ଦେଶର କର୍ତ୍ତା ଓ ରାଜା ଜ୍ଞାନ କରିବାକୁ ହେବ, ଯେଉଁମାନଙ୍କ ଆଜ୍ଞା ଉପରେ ହୁକୁମ ଚଳେ ନାହିଁ × × ଭିନ୍ନ ଆଉ କ × × ସଭା କୁଲୀନ × × ସଭା ଏବଂ ଡିରେକ୍ଟ × ସଭା ଏକ; କେବଳ ନାମ ଭେଦ ମାତ୍ର, ଇଷ୍ଟ ଇଣ୍ଡିଆ କମ୍ପାନିମାନେ ଏ ଦେଶରେ ଯେଉଁ ୨ ରାଜାଙ୍କୁ ରାଜ୍ୟଭ୍ରଷ୍ଟ କରିଅଛନ୍ତି ସେଥିରେ ଅବଶ୍ୟ ବିଲାତୀୟ କର୍ତ୍ତାପକ୍ଷଙ୍କ ଇଙ୍ଗିତ ଥିଲା ଯେବେ ଇଙ୍ଗିତ ନ ଥିବ ତେବେ ସେମାନେ କାହିଁକି କମ୍ପାନିକୃତ ଅନ୍ୟାୟ ସକଳ କାର୍ଯ୍ୟ ସ୍ଥିରତର ରଖିବେ ।

ଅଯୋଧ୍ୟାର ରାଜା ବାହାଦୂର ଇଙ୍ଗଲଣ୍ଡ ଗମନ କରିବା ମାନସରେ କଲିକତାକୁ ଆସିଅଛନ୍ତି ସେ ବିଲାତକୁ ଯାଇ କ କରିବେ ? ଲଣ୍ଡ ମଧ୍ୟରେ ଯତ୍କିଞ୍ଚିତ୍ ପୂର୍ବ ସଞ୍ଚିତ ଅଛି ତାହାସୁଦ୍ଧା କ୍ଷୟକର ଋଣଜାଲରେ ଆବଦ୍ଧ ହେବେ । ମହାରାଣୀ ତାଙ୍କୁ ସମୁଚିତ ସମ୍ମାନ ଦେବେ ମାତ୍ର କାର୍ଯ୍ୟ ସମୟରେ କଥା କହି ପାରିବେ ନାହିଁ । ଲର୍ଡ ମହାଶୟମାନେ ଯାହା କରିବେ ତାହା ସ୍ଥିର ହେବ । ଇଙ୍ଗଲଣ୍ଡ ମହାରାଣୀଙ୍କର କୌଣସି ବିଶେଷ କ୍ଷମତା ନାହିଁ, ହିନ୍ଦୁମାନେ ମୃଣ୍ମୟୀ ଓ ପାଷାଣମୟୀ ଦେବୀ ମୂର୍ତ୍ତିଙ୍କୁ ମାନ୍ୟ କରିଥାନ୍ତି ଅଥଚ ସେ ମୂର୍ତ୍ତିର କୌଣସି କ୍ଷମତା ନାହିଁ, ଆମ୍ଭମାନଙ୍କ ଶ୍ରୀମତୀ ତଦ୍ରୂପ କ୍ଷମତାରହିତା ରାଜ୍ଞୀମୂର୍ତ୍ତି ମାତ୍ର, ତାଙ୍କ ଅଧୀନ ଆନ୍ୟାନ୍ୟ ବୃତ୍ତିଭୋଗି ରାଜାମାନଙ୍କ ନ୍ୟାୟ ସେସୁଦ୍ଧା ବୃତ୍ତି ଲବ୍ଧଧନରେ ଦିନଯାପନ କରନ୍ତି ତାଙ୍କର ସମ୍ପୂର୍ଣ୍ଣ ଇଚ୍ଛା ଅଟେ ହିନ୍ଦୁ ପ୍ରଜାମାନେ ସୁଖରେ ଥିବେ, ମାତ୍ର ତାଙ୍କ ଇଚ୍ଛାରେ କୌଣସି ଇଷ୍ଟାନିଷ୍ଟ ଫଳୋଦୟ ହୁଏ ନାହିଁ ।

———

# ବିଦ୍ୟାଳୟ ସ୍ଥାପନୀୟ ସଭା ।

ବର୍ତ୍ତମାନ ଖୁଲନା ଜିଲାରେ ଅନେକ ଭଦ୍ରଲୋକ ଉପସ୍ଥିତ ହୋଇ ଅଛନ୍ତି । ବିଶେଷତଃ ଲବଣର ସୁପରିଣ୍ଟେଣ୍ଡେଣ୍ଟ ଶ୍ରୀଯୁକ୍ତ ରଡଫୋର୍ଡ ସାହେବ ଅତି ସଲ୍ଲୋକ । ଇଂରେଜ ଭାଷା ତାଙ୍କର ସ୍ୱଜାତୀୟ ଭାଷା ତହିଁରେ ସାହେବ ପାରଦର୍ଶୀ ହୋଇଅଛନ୍ତି ଏବିଷୟରେ ଆମ୍ଭେମାନେ ପ୍ରଶଂସା କରୁଁ ନାହିଁ ଅନ୍ୟାଯ୍ୟ ବଙ୍ଗ ରାଜ୍ୟ ଗୁଡ଼ି ଅନ୍ୟ କୌଣସି ରାଜ୍ୟସ୍ଥ ଲୋକେ ସ୍ୱଜାତୀୟ ଭାଷାରେ ଅଗ୍ରଗଣ୍ୟ ହୁଅନ୍ତି ନାହିଁ, ଉକ୍ତ ସାହେବ ସଂସ୍କୃତ ବଙ୍ଗଳା ଉଭୟ ଭାଷାରେ ରତ୍ନସ୍ୱରୂପ ହୋଇଅଛନ୍ତି । ବିଶେଷତଃ ମିଷ୍ଟଭାଷୀ, ପରହିତୈଷୀ ସାଧାରଣ ବିଦ୍ୟା ପ୍ରତ୍ୟାଶୀ, ନମ୍ର ସ୍ୱଭାବ ଇତ୍ୟାଦି ସଦ୍‌ଗୁଣ ଭୂଷଣରେ ସୁଶୋଭିତ । ଏହି କାରଣ ତାଙ୍କ ପ୍ରତିଷ୍ଠା ଲେଖିବାକୁ ହୁଏ ଅପର ଶ୍ରୀଯୁକ୍ତ ବାବୁ ଗୁରୁଚରଣ ଦାସ ଯେ ଚମ୍ପୁର ପୋଲିସ ଦାରୋଗା ଥିଲେ ତହିଁରେ ବିଶ୍ୱାସିନୀରୂପେ ରାଜକର୍ମ କରି ରାଜପୁରୁଷମାନଙ୍କ ପ୍ରିୟ ପାତ୍ର ହୋଇଅଛନ୍ତି । ଗବର୍ଣ୍ଣମେଣ୍ଟ ତାଙ୍କୁ ଖୁଲନା ନଗରରେ ଡେପୁଟୀ ମାଜିଷ୍ଟ୍ରେଟୀ କର୍ମରେ ନିଯୁକ୍ତ କରିଅଛନ୍ତି ଏ ଦୁଇ ଜଣ ଗୁଣି ଲୋକଙ୍କ ଉଦ୍‌ଯୋଗରେ ଖୁଲନା ନଗରରେ ବିଦ୍ୟାଳୟ ସ୍ଥାପନୀୟ ଗୋଟାଏ ସଭା ହୋଇ ଥିଲା । ଶ୍ରୀଯୁକ୍ତ ବାବୁ ଗୁରୁଚରଣ ଦାସ ନିମନ୍ତ୍ରଣପତ୍ର ଦ୍ୱାରା ସେଠାର ସର୍ବ ସାଧାରଣଙ୍କୁ ସଭାକୁ ଡାକିବାରେ ସମସ୍ତେ ସଭାରେ ଉପସ୍ଥିତ ହେଲାରୁ ଉକ୍ତ ଶ୍ରୀଯୁକ୍ତ ସାହେବ ସଭାପତି ହୋଇ ଏମନ୍ତ ବକ୍ତୃତା କଲେ ତାହା ଶୁଣି ବିଦ୍ୟା-ଳୟ ସ୍ଥାପନ ବିଷୟରେ ସଭାସ୍ଥ ସକଳ ଲୋକଙ୍କ ଚିତ୍ତ ଆକର୍ଷଣ ହେଲା ଅନନ୍ତର ଶ୍ରୀଯୁକ୍ତ ବାବୁ ଗୁରୁଚରଣ ଦାସ ଡେପୁଟୀ ମାଜିଷ୍ଟ୍ରେଟ ମହାଶୟ ସାହେବଙ୍କ ବକ୍ତୃତା ପୋଷକତାରେ ଯେଉଁ ସକଳ ସଦୁପଦେଶ ଦେଲେ ତହିଁରେ ସଭ୍ୟ ମହାଶୟମାନେ ବିଦ୍ୟାଳୟ ସ୍ଥାପନରେ ସମ୍ମତ ହେଲେ । ତତ୍ପରେ ଡେପୁଟୀ ପୋଷ୍ଟମାଷ୍ଟର ଶ୍ରୀଯୁକ୍ତ ବାବୁ ଯଦୁନାଥ ରାୟ ବିଦ୍ୟାର କି କି ଗୁଣ ତାହା ବର୍ଣ୍ଣନ କରି ସମସ୍ତଙ୍କୁ ସନ୍ତୁଷ୍ଟ କରାଇଲେ । ମଧ୍ୟରେ ଲବଣସମ୍ପର୍କୀୟ ପ୍ରଧାନ ଦାରୋଗା ଶ୍ରୀଯୁକ୍ତ ବାବୁ ଯଦୁନାଥ ସେଟ ବିଦ୍ୟା ବିଷୟରେ ଏକ ପ୍ରସ୍ତାବ ପାଠ କରି ଥିଲେ ତହିଁରେ ସୁଦ୍ଧା ପ୍ରାୟ ସମସ୍ତଙ୍କ ଚିତ୍ତରଞ୍ଜନ ହେଲା । ତଦାଦି ସଭ୍ୟଗଣଙ୍କ ସ୍ୱାକ୍ଷ-ରରେ ମାସିକ ୬୦ ଟଙ୍କା ସଂଗ୍ରହ ହୋଇଅଛି । ବର୍ତ୍ତମାନ ଗବର୍ଣ୍ଣମେଣ୍ଟ × × ତେବେ ଇଷ୍ଟ × × ବନ ମଧ୍ୟରେ × × ଅନୁଗ୍ରହରେ ଖୁଲନା × × ହୋଇଅଛି ମାତ୍ର ସେଠା ଲୋକେ କେବଳ ଅନ୍ଧକାରରେ ରହିଅଛନ୍ତି । ଉକ୍ତ ସ୍ଥାନରେ ବିଦ୍ୟାଳୟ ହେଲେ ବାଳକମାନେ ଶିକ୍ଷାପ୍ରାପ୍ତ ହୋଇ ଗବର୍ଣ୍ଣମେଣ୍ଟଙ୍କର

ଚରବାଧ୍ୟତ ହେବେ । ଆମ୍ଭେ ଶୁଣି ଅଛୁଁ ଉକ୍ତ ସ୍ଥାନରେ ବିଦ୍ୟାଳୟ ସ୍ଥାପନାଭିଲାଷରେ ଶ୍ରୀଯୁକ୍ତ ଉଡ୍ରୋ ସାହେବ ଗମନ କରିଥିଲେ, ସେ କହି ଆସି ଅଛନ୍ତି "ସାଧାରଣ ଦାନରେ ଯେଉଁ ଧନ ଉତ୍ପନ୍ନ ହେବ ତହିଁର ଅଧିକ ଧନ ଗବର୍ଣ୍ଣମେଣ୍ଟ ଦେବେ" ଅତଏବ ଗବର୍ଣ୍ଣମେଣ୍ଟ ଯେ ଆନୁକୂଲ୍ୟ କରିବେ ଏଥିରେ ସନ୍ଦେହ ନାହିଁ, ତଥାଚ ଆମ୍ଭେମାନେ ଶ୍ରୀଯୁକ୍ତ ଉଡ୍ରୋ ସାହେବଙ୍କୁ ପୁନଃ ସ୍ମରଣ କରାଉଅଛୁଁ ସେ ଯାହା ସ୍ୱୀକାର କରି ଆସିଅଛନ୍ତି ତାହା ଯେମନ୍ତ ନ ଭୁଲନ୍ତି । ଯଦ୍ୟପି ଖୁଲନା ନଗର ଲବଣମୟ ବାଦା ବେଷ୍ଟିତ କଷ୍ଟ ସ୍ଥାନ ଅଟେ ତଥାଚ ସ୍ୱାସ୍ଥ୍ୟକର ଅଧିକାର ବହିର୍ଭୂତ ନୁହେ ଅତଏବ ଉଦ୍ଯୋଗି ମହାଶୟମାନେ ଇହାବାଦ କି କରିବେ ଆମ୍ଭେମାନେ ଅବଶ୍ୟ ଜାଣି ପାରିବା ।

——

## ଅଗ୍ନି × ×

ଫାଲଗୁନ ମାସ × × ରାତ୍ରରେ ଜିଲା ରଙ୍ଗପୁର × ×ରେ ଅଗ୍ନି × × × ହୋଇଅଛୁ × × ।

## ବିଲାତ ×

ପେରିସ ନଗର ସନ୍ଧି ସଭାର କାର୍ଯ୍ୟାରମ୍ଭ ହୋଇଅଛୁ, ଯେଉଁ ୬ ରାଜାମାନଙ୍କ ରାଜ ପ୍ରତିନିଧିଗଣ ସନ୍ଧି ସଭାରେ ଉପସ୍ଥିତ ହେବେ ସେହି ସକଳ ରାଜାମାନେ ପରସ୍ପର ବିଶେଷ ବିଶେଷ ନିୟମର ପ୍ରସ୍ତାବ କରିବା କ୍ଷମତା ରଖିବେ ।

ଉଭୟ ପକ୍ଷୀୟ ସେନା ସବୁ ଯୁଦ୍ଧରେ ବିଶ୍ରାମ ଦେଇ ଅଛନ୍ତି ମାତ୍ର ଏହି ସଭା ସ୍ଥାପନ ଅବ୍ୟବହିତ ପୂର୍ବରେ ଫ୍ରେଞ୍ଚ ସେନାମାନେ ସିବାଷ୍ଟପୋଲର ଅନ୍ତ-ର୍ଗତ ଫୋର୍ଟ ନିକଲସ ଓ ଫୋର୍ଟ ଆଲେକଜନ୍ଦର ନାମକ ଦୁଇ ଗଡ଼ ଭାଙ୍ଗି ଦେଇଅଛନ୍ତି ।

ଆଶୁ ଆମେରିକା ରାଜ୍ୟ ସଙ୍ଗେ ଯୁଦ୍ଧ ଘଟନାର କୌଣସି ଆଶଙ୍କା ନାହିଁ, ସନ୍ଧି ସଭାରେ ଇଂରେଜ ଫ୍ରେଞ୍ଚାଦି ରାଜ ପ୍ରତିନିଧିମାନେ ରୁଷମାନଙ୍କ ନାଇ-କୋଲେଫ ଦୁର୍ଗ ଭାଙ୍ଗିବାକୁ ପ୍ରସ୍ତାବ କରିଅଛନ୍ତି, ରୁଷ ପ୍ରତିନିଧି ସେଥିରେ ସମ୍ମତ ହୁଅନ୍ତି ନାହିଁ, ସରଜନ ମ୍ୟାକଲିନ ସାହେବ ସିବାଷ୍ଟପଲ ସେନାମାନଙ୍କ ଦୁରବସ୍ଥା

ଘଟଣା ବିଷୟରେ ଯେଉଁ ଯେଉଁ ରିପୋର୍ଟ କରିଥିଲେ ସେଥିର ସତ୍ୟାସତ୍ୟତା ଜାଣିବା କାରଣ ମନ୍ତ୍ରିମାନେ ଏକ ଅଫିସର ବୋର୍ଡ ନିଯୁକ୍ତ କରିବାକୁ ସମ୍ମତ ହୋଇଅଛନ୍ତି ତୁରକ ସେନାପତି ଉମର ପାଶାର ବଦଳରେ ଇସଲାମ ପାଶା ଆସିଆଖଣ୍ଡକୁ ପ୍ରେରିତ ହୋଇଅଛନ୍ତି ।

ଆସିଆରେ ତୁର୍କି ଓ ରୁଷମାନେ ସମାନରୂପେ ସାହାଯ୍ୟ ପାଇଅଛନ୍ତି ।

ଆମେରିକା ହୌସ ଆବ ରେପ୍ରେଜେଣ୍ଟେଟିଭ୍ ଏକ ବକ୍ତା ମନୋନୀତ କରି ଅଛନ୍ତି ଫେବ୍ରୁଏରି ମାସ ୨ ଦିନରେ ବେଙ୍କେଂସ ସାହେବ ସେଇ ପଦରେ ନିଯୁକ୍ତ ହୋଇଅଛନ୍ତି ।

ଗବର୍ଣ୍ଣମେଣ୍ଟ ବର୍ତ୍ତମାନ ୫୦ ଲକ୍ଷ ପୌଣ୍ଡ ଋଣଗ୍ରହଣାର୍ଥେ ଯେଉଁ ଯୁଦ୍ଧ ପୁସ୍ତକ ବାହାର କରି ଥିଲେ ସେଥିରେ ଅତି ଶୀଘ୍ର ସ୍ୱାକ୍ଷର ହୋଇଅଛି, ତତ୍ପରେ ପୁନଶ୍ଚ ୩୦ ମିଲ୍ୟନ ଋଣ ଗ୍ରହଣର ପ୍ରସ୍ତାବ ଉଠିଅଛି ।

---

---

୧ ବୃଷ । ସୋମବାର ଅଷ୍ଟମୀ ୩୦ । ୧୨ ମଘା ୬୦ ସିଂହ ୬୦ ଧୃବ ୪୬ । ୨୦ ବବ ୩୦ । ୧୨ ରବ୍ୟଂଶ ୨୯୪୭ । ୭ ଦିନାର୍ଦ୍ଧ ୧୬ । ୭ ଗ୍ରୀଷ୍ମ ଋତୁ । ମାସାଧିପ ଚନ୍ଦ୍ର । ମେ ୧୨ ତାରଖ ।

୨ ବୃଷ । ମଙ୍ଗଳବାର ନବମୀ ୩୩ । ୪୦ ମଘା ୪ । ୫୦ ସିଂହ ୬୦ ବ୍ୟାଘାତ ୪୬ । ୨୦ ବାଲବ ୨ । ୧୦ ରବ୍ୟଂଶ ୦୪୪ । ୪୯ ଦିନାର୍ଦ୍ଧ ୧୬ । ୮ ଦ ୪ । ୫୦ ଉତ୍ତରେ ୧୦ ନକ୍ଷତ୍ରେ ବିବାହ । ମେ ୧୩ ତାରଖ ।

୩ ବୃଷ । ବୁଧବାର ଦଶମୀ ୩୯ । ୧୨ ପୂର୍ବ × × । ୫୪ ସିଂହ ୨୭ । ୩୦ ହର୍ଷଣ ୪୬ । ୩୦ × × ୫୭ ରବ୍ୟଂଶ ୧୪୨ । ୪୩ ଦିନାର୍ଦ୍ଧ ୧୬ । × × ୫୪ ଉତ୍ତର ନ ୧୨ ବିବାହ । ମେ ୧୪ × × ।

୪ ବୃଷ । ଗୁରୁବାର ଏକାଦଶୀ ୪୪ × × ୨୭ । ୭ କନ୍ୟା ୬୦ ବଜ୍ର ୪୯ । ରବ୍ୟଂଶ ୨୪୦ । ୧୮ ଦିନାର୍ଦ୍ଧ ୧୬ । × × ଏକାଦଶୀ । ମେ ୧୫ ତାରଖ ।

୫ ବୃଷ । ଶୁକ୍ରବାର ଦ୍ୱାଦଶୀ ୪୯ । ୧୦ ହସ୍ତା ୨୩ । ୨୦ କନ୍ୟା ୫୭ । ୨ ସିଦ୍ଧି ୫୧ । ୩୪ ବବ ୧୬ । ୩୦ ରବ୍ୟଂଶ ୩୩୭ । ୪୩ ଦିନାର୍ଦ୍ଧ ୧୬ । ୧୨ ମେ ୧୬ ତାରଖ ।

୬ ବୃଷ । ଶନିବାର ତ୍ରୟୋଦଶୀ ୫୪ । ୧୮ ଚିତ୍ରା ୩୦ । ୫ ତୁଳା ୬୦ ବ୍ୟତୀପାତ ୫୩ । ୮ କୌଳବ ୨୨ । ୦ ରବ୍ୟଂଶ ୪୩୫ । ୨୦ ଦିନାର୍ଦ୍ଧ ୧୬ । ୧୩ ଦ ୩୦ । ୫ ଉତ୍ତର ୧୫ ନକ୍ଷତ୍ରେ ବିବାହ ଗ୍ରହ ଦ ୨୧ଶ୍ଚ ଉତ୍ତର ବଜ୍ରପା ୩ ମେ ୧୭ ତାରଖ ।

୭ ବୃଷ । ରବିବାର ଚତୁର୍ଦ୍ଦଶୀ ୫୮ । ୧୨ ସ୍ୱାତି ୩୫ । ୫୦ ତୁଳା ୬୦ ବରୀୟାନ ୫୩ । ୨୭ ଗର ୨୫ । ୪୫ ରବ୍ୟଂଶ ୫୩୨ । ୫୪ ଦିନାର୍ଦ୍ଧ ୧୬ । ୧୪ ନୃସିଂହ ଜନ୍ମ । ମେ ୧୮ ତାରଖ ।

୮ ବୃଷ । ସୋମବାର ପୌର୍ଣ୍ଣମୀ ୫୯ । ୩୩ ବିଶାଖା ୪୦ । ୧୫ ତୁଳା ୨୩ । ୪୨ ପରିଘ ୫୨ । ୫୮ ବିଷ୍ଟି ୨୮ । ୫୨ ରବ୍ୟଂଶ ୬୩୦ । ୪୦ ଦିନାର୍ଦ୍ଧ ୧୬ । ୧୫ ମେ ୧୯ ତାରଖ ।

୯ ବୃଷ । ମଙ୍ଗଳବାର ପ୍ରତିପଦା ୬୦ ଅନୁରାଧା ୪୩ । ୧୦ ବୃଶ୍ଚିକ ୬୦ ଶିବ ୫୧ । ୫୮ ବାଳବ ୩୦ । ୧୦ ରବ୍ୟଂଶ ୯୨୭ । ୩୨ ଦିନାର୍ଦ୍ଧ ୧୬ । ୧୭ ମେ ୨୦ ତାରିଖ ।

୧୦ ବୃଷ । ବୁଧବାର ପ୍ରତିପଦା ୦ । ୩୦ ଜ୍ୟେଷ୍ଠା ୪୫ । ୪୭ ବୃଶ୍ଚିକ ୪୫ । ୪୭ ସିଦ୍ଧ ୪୯ । ୧୦ କୌଳବ ୦ । ୩୦ ରବ୍ୟଂଶ ୧୦୪ । ୫୨ ଦିନାର୍ଦ୍ଧ ୧୬ । ୧୭ ମେ ୨୧ ତାରିଖ ।

୧୧ ବୃଷ । ଗୁରୁବାର ଦ୍ୱିତୀୟା ୦ । ୩୫ ମୂଳା ୪୫ । ୫୮ ଧନୁ ୬୦ ସାଧ୍ୟ ୪୬ । ୨୦ ଗର ୦ । ୩୫ ରବ୍ୟଂଶ ୯୨୨ । ୨୦ ଦିନାର୍ଦ୍ଧ ୧୬ । ୧୮ ତୃତୀୟା କ୍ଷୟ ୫୪ । ୩୦ ମେ ୨୨ ତାରିଖ ।

୧୨ ବୃଷ । ଶୁକ୍ରବାର ଚତୁର୍ଥୀ ୫୭ । ୫୦ ପୂର୍ବାଷାଢ଼ା ୪୫ । ୨୬ ଧନୁ ୫୯ । ୮ ଶୁଭ ୪୮ । ୮ ବବ ୨୭ । ୫୭ ରବ୍ୟଂଶ ୧୦୧୮ । ୪୩ ଦିନାର୍ଦ୍ଧ ୧୬ । ୧୯ ଦଗ୍ଧ ୬ ଦ ୫୭ ମେ ୨୩ ତାରିଖ ।

୧୩ ବୃଷ । ଶନିବାର ପଞ୍ଚମୀ ୫୨ । ୨୮ ଉତ୍ତରାଷାଢ଼ା ୪୩ । ୫ ମକର ୬୦ ଶୁକ୍ଳ ୩୫ । ୧୦ କୌଳବ ୨୪ । ୩ ରବ୍ୟଂଶ ୧୧୧୧ । ୩୭ ଦିନାର୍ଦ୍ଧ ୧୬ । ୨୦ ବଛପା ୧ ଦ ୨୮ । ୨୦ ଉଗ୍ରାର୍ ୨୧ **ନକ୍ଷଷେ** ବବାନ୍ଧ । ମେ ୨୪ ତାରିଖ ।

୧୪ ବୃଷ । ରବିବାର ଷଷ୍ଠୀ ୪୮ । ୪୩ ଶ୍ରବଣା ୪୧ । ୨୦ ମକର ୬୦ ବ୍ରହ୍ମ ୨୯ । × × × ୨୧ । ୩୦ ରବ୍ୟଂଶ ୧୨୧୪ । ୩୬ ଦିନାର୍ଦ୍ଧ × × ନକ୍ଷଷେ ବ୍ରତ । ମେ ୨୫ ତାରିଖ ।

୧୫ ବୃଷ । × × × ୧୨ । ଧନିଷ୍ଠା ୩୮ । ୪ ମକର ୯ । ୩୭ × × × × ୧୫ । ୫୩ ରବ୍ୟଂଶ ୧୩୧୩ । ୧୮ × × × ମେ ୨୬ ତାରିଖ ।

୧୬ ବୃଷ । ମଙ୍ଗଳବାର ଅଷ୍ଟମୀ ୩୭ । ୨୮ ଶତଭିଷା ୩୪ । ୧୦ କୁମ୍ଭ ୬୦ ବୈଧୃତି ୧୫ । ୫୮ ବାଳବ ୧୦ । ୩୭ ରବ୍ୟଂଶ ୧୪୯ । ୧୨ ଦିନାର୍ଦ୍ଧ ୧୬ । ୨୩ ଶୁକ୍ରବୃଦ୍ଧ ଅଶୁଦ୍ଧ କାଳ ଦ ୨୨ । ୨୨ ମେ ୨୭ ତାରିଖ ।

୧୭ ବୃଷ । ବୁଧବାର ନବମୀ ୩୧ । ୩୫ ପୂର୍ବଭାଦ୍ର ୩୦ । ୧୨ । କୁମ୍ଭ ୧୬ । ୧୮ ବିଷ୍କୁମ୍ଭ ୮ । ୩୭ ତୈତିଳ ୪ । ୧୮ ରବ୍ୟଂଶ ୧୫୫ । ୩୫ ଦିନାର୍ଦ୍ଧ ୧୬ । ୨୪ ମେ ୨୮ ତାରିଖ ।

୧୮ ବୃଷ । ଗୁରୁବାର ଦଶମୀ ୨୫ । ୧୪ ଉତ୍ତରଭାଦ୍ର ୨୬ । ୩୦ ମୀନ ୬୦ ପ୍ରୀତି ୦ । ୫୭ ବିଷ୍ଟି ୨୫ । ୧୦ ରବ୍ୟଂଶ ୧୬୩ । ୪୮ ଦିନାର୍ଦ୍ଧ ୧୬ । ୨୪ ଯୋଗଷସ୍ଥ ୫୨ । ମେ ୨୯ ତାରିଖ ।

୧୯ ବୃଷ । ଶୁକ୍ରବାର ଏକାଦଶୀ ୧୯ । ୩୪ ରେବତୀ ୨୨ । ୫ ମୀନ ୨୨ । ୫ ସୌଭାଗ୍ୟ ୪୫ । ୩୬ ବାଲବ ୧୯ । ୩୭ ରବ୍ୟଂଶ ୧୭୦ । ୪୮ ଦିନାର୍ଦ୍ଧ ୧୬ । ୨୫ ଜଳକ୍ରୀଡ଼ା ୧୧ ମେ ୩୦ ତାରିଖ ।

୨୦ ବୃଷ । ଶନିବାର ଦ୍ୱାଦଶୀ ୧୩ । ୧୦ ଅଶ୍ୱିନୀ ୧୮ । ୩୮ ମେଷ ୬୦ ଶୋଭନ ୩୮ । ୦ ତୈତିଳ ୧୩ । ୩୭ ରବ୍ୟଂଶ ୧୭୫୭ । ୧୦ ଦିନାର୍ଦ୍ଧ ୧୬ । ୨୫ ମେ ୩୧ ତାରିଖ ।

୨୧ ବୃଷ । ରବିବାର ତ୍ରୟୋଦଶୀ ୮ । ୨୦ ଭିଜା ୧୫ । ୩୫ ମେଷ ୨୯ । ୨୦ ଅତିଗଣ୍ଡ ୩୦ । ୧୦ ବାଣିଜ୍ୟ ୮ । ୨୦ ରବ୍ୟଂଶ ୧୮୫୪ । ୩୪ ଦିନାର୍ଦ୍ଧ ୧୬ । ୨୫ ଶିବ ୧୪ ଜୁନ ୧ ତାରିଖ ।

୨୨ ବୃଷ । ସୋମବାର ଚତୁର୍ଦ୍ଦଶୀ ୩ । ୨୩ କୃତ୍ତିକା ୧୨ । ୮ ଭିଜା ୬୦ ଶୁଭକର୍ମ ୨୫ । ୨୦ ଶକୁନି ୩ । ୨୩ ରବ୍ୟଂଶ ୧୯୫୧ । ୭ ଦିନାର୍ଦ୍ଧ ୧୬ । ୨୬ ସାବିତ୍ରୀ ପୂଜା । ଷସ୍ଥା ୫୫ । ୫୭ ଜୁନ ୨ ତାରିଖ ।

୨୩ ବୃଷ । ମଙ୍ଗଳବାର ପ୍ରତିପଦା ୫୬ । ୮ ରୋହିଣୀ ୧୦ । ୩୨ ବୃଷ ୩୯ । ୫୭ ଧୃତି ୨୦ । ୨୫ କିସ୍ତୁଘ୍ନ ୨୬ । ୮ ରବ୍ୟଂଶ ୨୦୪୮ । ୧୦ ଦିନାର୍ଦ୍ଧ ୧୬ । ୨୫ ଜୁନ ୩ ତାରିଖ ।

୨୪ ବୃଷ । ବୁଧବାର ଦ୍ୱିତୀୟା ୪୫ । ୧୭ ମୃଗଶିରା ୯ । ୪୦ ମିଥୁନ ୬୦ ଶୂଳ ୧୬ । ୫ ବାଲବ ୧୫ । ୧୫ ରବ୍ୟଂଶ ୨୧୪୬ । ୨୦ ଦିନାର୍ଦ୍ଧ ୧୬ । ୨୬ ଜୁନ ୪ ତାରିଖ ।

୨୫ ବୃଷ । ଗୁରୁବାର ତୃତୀୟା ୫୩ । ୫୦ ଆର୍ଦ୍ରା । ୧୦ । ୪ ମିଥୁନ ୫୯ । ୫୮ ଗଣ୍ଡ ୧୨ । ୪ ତୈତିଳ ୨୩ । ୩୦ ରବ୍ୟଂଶ ୨୨୪୨ । ୧୦ ଦିନାର୍ଦ୍ଧ ୧୬ । ୨୭ ରମ୍ଭା ତୃତୀୟା । ଜୁନ ୫ ତାରିଖ ।

୨୬ ବୃଷ । ଶୁକ୍ରବାର ଚତୁର୍ଥୀ ୫୪ । ୨୦ ପୁନ × × × ୪୦ କର୍କଟ ୬୦ ବୃଦ୍ଧି ୯ । ୩୮ ବାଣିଜ୍ୟ ୨୪ । × × × ୫୪୦ । ୩୦ ଧନାର୍କ ୧୬ । ୨୮ ଦଗ୍ଧ ୪ × × ×

୨୭ ବୃଷ । ଶନିବାର ପଞ୍ଚମୀ ୫୬ । ୨୯ × × ୬୦ ଧ୍ରୁବ ୬ । ୫୦ ବବ ୨୫ । ୩୦ ରବ୍ୟଂଶ × × ଧନାର୍କ ୧୬ । ୨୯ ମହାଦେବ ବିବାହ । ଜୁନ ୭ ତାରିଖ ।

୨୮ ବୃଷ । ରବିବାର ଷଷ୍ଠୀ ୫୯ । ୮ ଅଶ୍ଳେଷା ୧୮ । ୨୪ କର୍କଟ ୧୮ । ୨୪ ବ୍ୟାଘାତ ୭ । ୦ କୌଳବ ୨୭ । ୦ ରବ୍ୟଂଶ ୨୫୪୪।୪୮ ଧନାର୍କ ୧୬ । ୩୦ ଶିତଳ ୬ । ଶନି ପଶ୍ଚିମାସ୍ତ ଦ ୪୦ ଜୁନ ୮ ତାରିଖ ।

୨୯ ବୃଷ । ସୋମବାର ସପ୍ତମୀ ୬୦ ମଘା ୨୩ । ୬ ସିଂହ ୬୦ ହର୍ଷଣ ୬ । ୩୦ ଗର ୩୧ । ୨୦ ରବ୍ୟଂଶ ୨୬୫୩ । ୧୦ ଧନାର୍କ ୧୬ । ୩୦ ଜୁନ ୯ ତାରିଖ ।

୩୦ ବୃଷ । ମଙ୍ଗଳବାର ସପ୍ତମୀ ୪ । ୨୪ ପୂର୍ବଫାଲ୍‌ଗୁନୀ ୨୯ । ୩୦ ସିଂହ ୪୬ । ୨୦ ବଜ୍ର ୮ । ୩୫ ବାଣିଜ୍ୟ ୪ । ୨୪ ରବ୍ୟଂଶ ୨୭୨୮ । ୩୦ ଧନାର୍କ ୧୬ । ୩୧ ବୁଧପଶ୍ଚିମାସ୍ତ ଦ ୭ । ୧୦ ଜୁନ ୧୦ ତାରିଖ ।

୩୧ ବୃଷ । ବୁଧବାର ଅଷ୍ଟମୀ ୮ । ୩୫ ଉତ୍ତରଫାଲ୍‌ଗୁନୀ ୩୫ । ୨୦ କନ୍ୟା ୬୦ ସିଦ୍ଧି ୯ । ୪୪ ବବ ୮ । ୩୦ ରବ୍ୟଂଶ ୨୮୨୪ । ୨୦ ଧନାର୍କ ୧୬ । ୩୨ ପ୍ରଥମରଜ । ଜୁନ ୧୧ ତାରିଖ ।

---

ଏ ପୁସ୍ତକର ଉଲ୍ଲେଖିତ ଗ୍ରାହକ ମହାଶୟମାନେ ୧୮୫୬ ସାଲର ସମ୍ପୂର୍ଣ୍ଣ ମୂଲ୍ୟ ପ୍ରଦାନ କରିଅଛନ୍ତି, ଯଥା ।

---

୩୨ । ଶ୍ରୀଯୁକ୍ତ ଏଚ ଆର କ୍ଲାର୍କ ସାହେବ । ମୁ । ପୁରୀ ଟ ୪।

୩୩ । ପାଦ୍ରୀ ଡବଲିଉ ମିଲର ସାହେବ ଟ ୧।

୩୪ । ,, ବାବୁ ଦାଶରଥି ସାହୁ ଟ ୧।

—:*:—

# ପ୍ରବୋଧ ଚନ୍ଦ୍ରିକା

୧୨ ସଂଖ୍ୟା

ସନ ୧୨୭୪ । ଧନୁ । ✻ ସନ ୧୮୬୭ । ଡିସେମ୍ବର ।

## ୧ । ଅଥ ବିଷ୍ଣୁଶର୍ମ୍ମକର୍ତ୍ତୃକ ହିତୋପଦେଶଃ ॥

ମନ୍ଥର ସେ ହିତବାକ୍ୟ ଅବଜ୍ଞା କରି ମହାଦ୍‌ଭୟରେ ମୁଗ୍‌ଧ ହୋଇ ସେ ଜଳାଶୟ ତ୍ୟାଗ କରି ସ୍ଥଳଗଲା ଏବଂ ହିରଣ୍ୟକ, ଲଘୁପତନକ ଓ ଚିତ୍ରାଙ୍ଗ ଅମଙ୍ଗଳ ଆଶଙ୍କା କରି ସ୍ନେହପ୍ରଯୁକ୍ତ ମନ୍ଥରର ପଛେ ପଛେ ଗଲେ । ତଦନନ୍ତର ସ୍ଥଳ ମାର୍ଗରେ ମନ୍ଥର ଗମନ କରୁଁ କରୁଁ ଅରଣ୍ୟରେ ଭ୍ରମଣକାରି କୌଣସି ବ୍ୟାଧକର୍ତ୍ତୃକ ପ୍ରାପ୍ତ ହେଲା । ତହିଁ ଉତ୍ତାରୁ ତାକୁ ଧରି ଉଠାଇ ଧନୁରେ ବାନ୍ଧି ଭ୍ରମଣ କରି ଶ୍ରମପ୍ରଯୁକ୍ତ କ୍ଷୁଧା ଓ ପିପାସାରେ ବ୍ୟାକୁଳ ହୋଇ ବ୍ୟାଧ ଆପଣା ଗୃହାଭିମୁଖରେ ଚଳିଲା । ସେଠାରୁ ମୃଗ, କାକ ଓ ଇନ୍ଦୁର ବଡ଼ ବିଷର୍ଣ୍ଣ ହୋଇ ତାହା ପଛେ ପଛେ ଗଲେ । ତାହାବାଦ ହିରଣ୍ୟକ ବିଳାପ କରୁଅଛି,

ଏକସ୍ୟ ଦୁଃଖସ୍ୟ ନ ଯାବଦନ୍ତଂ,
ଗଚ୍ଛାମ୍ୟହଂ ପାରମିବାର୍ଣ୍ଣବସ୍ୟ ।
ତାବଦ୍ଦ୍ୱିତୀୟଂ ସମୁପସ୍ଥିତଂ ମେ,
ଛିଦ୍ରେଷ୍ୱନର୍ଥା ବହୁଳୀଭବନ୍ତି ॥

ସମୁଦ୍ର ପାରକୁ ଯିବାର ଯେମନ୍ତ ଅସାଧ୍ୟ, ତେମନ୍ତ ଏକ ଦୁଃଖର ଶେଷ ନୋହୁଣୁ ଆମ୍ଭର ଦ୍ୱିତୀୟ ଦୁଃଖ ଉପସ୍ଥିତ ହେଲା; କାହିଁକନା ଛିଦ୍ର ଉପସ୍ଥିତ ହେଲେ ଅମଙ୍ଗଳ ଅନେକ ହୁଏ ।

ସ୍ୱାଭାବିକଂ ତୁ ଯନ୍ମିତ୍ରଂ ଭାଗ୍ୟେନୈବାଭିଜାୟତେ ।
ତଦକୃତ୍ରିମସୌହାର୍ଦ୍ଦମାପତ୍ସ୍ୱପି ନ ମୁଞ୍ଚତି ॥

ସ୍ୱାଭାବିକ ଯେ ମିତ୍ର, ସେ ଭାଗ୍ୟରେ ମିଳେ, ଏବଂ ତାହାର ଅକୃତ୍ରିମ ମିତ୍ରତା ବିପତ୍କାଳରେ ଛାଡ଼ି ଯାଏ ନାହିଁ ।

ନ ମାତରି ନ ଦାରେଷୁ ନ ସୋଦର୍ଯ୍ୟେ ନ ଚାତ୍ମଜେ ।
ବିଶ୍ୱାସସ୍ତାଦୃଶଃ ପୁଂସାଂ ଯାଦୃଙ୍ମିତ୍ରେ ସ୍ୱଭାବଜେ ॥

ସ୍ୱାଭାବିକ ମିତ୍ରଠାରେ ଲୋକମାନଙ୍କର ଯେତେ ପ୍ରତ୍ୟୟ ହୁଏ, ତେତେ ପ୍ରତ୍ୟୟ ମାତାଠାରେ ହୁଏ ନାହିଁ , ସ୍ତ୍ରୀଠାରେ ହୁଏ ନାହିଁ, ସହୋଦରଠାରେ ହୁଏ ନାହିଁ ଏବଂ ଆପଣା ପୁତ୍ରଠାରେ ସୁଦ୍ଧା ହୁଏ ନାହିଁ । ଇହା ବାରମ୍ବାର ଚିନ୍ତା କରି କହିଲା, ଏ କି ଦୁର୍ଦ୍ଦୈବ, ପଣ୍ଡିତମାନେ କହିଅଛନ୍ତି । ଯଥା,

ସ୍ୱକର୍ମସନ୍ତାନବିଚେଷ୍ଟିତାନି,
କାଳାନ୍ତରାବର୍ତ୍ତିଶୁଭାଶୁଭାନି ।
ଇହୈବ ଦୃଷ୍ଟାନି ମୟୈବ ତାନି,
ଜନ୍ମାନ୍ତରାଣୀବ ଦଶାନ୍ତରାଣି ॥

ଅନ୍ୟ ସମସ୍ତଙ୍କର ସ୍ୱସ୍ୱ ପରିଶ୍ରମଜନକ କର୍ମର ଶୁଭାଶୁଭ ଫଳାଫଳ ଜନ୍ମାନ୍ତରେ ଫଳେ, କିନ୍ତୁ ଆମ୍ଭେ ସେହି ଜନ୍ମାନ୍ତରସ୍ୱରୂପ ଅବସ୍ଥାନ୍ତରକୁ ଇହ କାଳରେ ଦେଖି ପାରିଲୁ । ଅଥବା,

କାୟଃ ସନ୍ନିହିତାପାୟଃ ସମ୍ପଦଃ ପଦମାପଦାଂ ।
ସମାଗମାଃ ସାପଗମାଃ ସର୍ବମୁତ୍ପାଦି ଭଙ୍ଗୁରଂ ॥

ଶରୀର ମୃତ୍ୟୁରେ ସଂଲଗ୍ନ ; ଏବଂ ସମ୍ପତ୍ତି ବିପତ୍ତିର ସ୍ଥାନ, ଧନାଦିର ସଞ୍ଚୟ ଅପଚୟଯୁକ୍ତ ; ଏହି ପ୍ରକାର ଯାବନ୍ତ ଜନ୍ୟ ବସ୍ତୁ ସମସ୍ତ ନଶ୍ୱର ଅଟେ । ପୁନର୍ବାର ବିବେଚନା କରି କହିଲା ।

ଶୋକାରାତିଭୟତ୍ରାଣଂ ପ୍ରୀତିବିଶ୍ରମ୍ଭଭାଜନଂ ।
କେନ ରତ୍ନମିଦଂ ସୃଷ୍ଟଂ ମିତ୍ରମିତ୍ୟକ୍ଷରଦ୍ୱୟଂ ॥

ଶୋକ ଓ ଶତ୍ରୁଭୟରୁ ରକ୍ଷାକର୍ତ୍ତା ଏବଂ ପ୍ରୀତି ଓ ବିଶ୍ୱାସର ପାତ୍ର ମିତ୍ର (ମି, ତ୍ର) ଏହି ଅକ୍ଷରଦ୍ୱୟସ୍ୱରୂପ ରତ୍ନ କିଏ ସୃଷ୍ଟି କରିଅଛି ? ଅପର,

ମିତ୍ର ପ୍ରୀତିରସାୟନଂ ନୟନୟୋରାନନ୍ଦନଂ ଚେତସଃ,
ପାତ୍ରଂ ଯତ୍ସୁଖଦୁଃଖୟୋଃ ସହଭବେନ୍ମିତ୍ରେଣ ତଦ୍ଦୁର୍ଲଭଂ ।
ଯେ ଚାନ୍ୟେ ସୁହୃଦଃ ସମୃଦ୍ଧିସମୟେ ଦ୍ରବ୍ୟାଭିଲାଷାକୁଳା,
ସ୍ତେ ସର୍ବତ୍ର ମିଳନ୍ତି ତତ୍ତ୍ୱନିକଷଗ୍ରାବା ତୁ ତେଷାଂ ବିପତ୍ ॥

ଯେଉଁ ମିତ୍ର ଚକ୍ଷୁର୍ଦ୍ୱୟର ପ୍ରୀତିରୂପରସର ସ୍ଥାନ, ପୁଣି ଚିତ୍ତର ଆନନ୍ଦ-ଜନକ ଓ ସୁଖ ଦୁଃଖର ପାତ୍ର; ସେ ମିତ୍ର ଦୁର୍ଲଭ ; ଅନ୍ୟ ଯେଉଁ ଧନାକାଂକ୍ଷି ମିତ୍ର ସେ ସମ୍ପତ୍ତି କାଳରେ ସର୍ବତ୍ର ମିଳେ, ସେମାନଙ୍କ ପରୀକ୍ଷା କରନ୍ତେ ବିପତ୍ତି କଷ୍ଟିପଥରସ୍ୱରୂପ ଅଟେ ।

# ପ୍ରବୋଧ ଚନ୍ଦ୍ରିକା

୧୨ ସଂଖ୍ୟା

ସନ ୧୨୭୪ । ଧନୁ । ※ ସନ ୧୮୬୭ । ଡିସେମ୍ବର ।

## ୧ । ଅଥ ବିଷ୍ଣୁଶର୍ମକର୍ତ୍ତୃକ ହିତୋପଦେଶଃ ।।

ମନ୍ଥର ସେ ହିତବାକ୍ୟ ଅବଜ୍ଞା କରି ମହଦ୍‌ଭୟରେ ମୁଗ୍ଧ ହୋଇ ସେ ଜଳାଶୟ ତ୍ୟାଗ କରି ସ୍ଥଳଗଲା ଏବଂ ହିରଣ୍ୟକ, ଲଘୁପତନକ ଓ ଚିତ୍ରାଙ୍ଗ ଅମଙ୍ଗଳ ଆଶଙ୍କା କରି ସ୍ନେହପ୍ରଯୁକ୍ତ ମନ୍ଥରର ପଛେ ପଛେ ଗଲେ । ତଦନନ୍ତର ସ୍ଥଳ ମାର୍ଗରେ ମନ୍ଥର ଗମନ କରୁଁ କରୁଁ ଅରଣ୍ୟରେ ଭ୍ରମଣକାରି କୌଣସି ବ୍ୟାଧକର୍ତ୍ତୃକ ପ୍ରାପ୍ତ ହେଲା । ତହିଁ ଉତ୍ତାରୁ ତାକୁ ଧରି ଉଠାଇ ଧନୁରେ ବାନ୍ଧି ଭ୍ରମଣ କରି ଶ୍ରମପ୍ରଯୁକ୍ତ କ୍ଷୁଧା ଓ ପିପାସାରେ ବ୍ୟାକୁଳ ହୋଇ ବ୍ୟାଧ ଆପଣା ଗୃହାଭିମୁଖରେ ଚଳିଲା । ସେଠାରୁ ମୃଗ, କାକ ଓ ଇନ୍ଦୁର ବଡ଼ ବିଷର୍ଣ୍ଣ ହୋଇ ତାହା ପଛେ ପଛେ ଗଲେ । ତାହାବାଦ ହିରଣ୍ୟକ ବିଳାପ କରୁଅଛି,

ଏକସ୍ୟ ଦୁଃଖସ୍ୟ ନ ଯାବଦନ୍ତଂ,
ଗଚ୍ଛାମ୍ୟହଂ ପାରମିବାର୍ଣ୍ଣବସ୍ୟ ।
ତାବଦ୍‌ଦ୍ୱିତୀୟଂ ସମୁପସ୍ଥିତଂ ମେ,
ଛିଦ୍ରେଷ୍ୱନର୍ଥା ବହୁଲୀଭବନ୍ତି ।।

ସମୁଦ୍ର ପାରକୁ ଯିବାର ଯେମନ୍ତ ଅସାଧ୍ୟ, ତେମନ୍ତ ଏକ ଦୁଃଖର ଶେଷ ନୋହୁଣୁ ଆମ୍ଭର ଦ୍ୱିତୀୟ ଦୁଃଖ ଉପସ୍ଥିତ ହେଲା; କାହିଁକନା ଛିଦ୍ର ଉପସ୍ଥିତ ହେଲେ ଅମଙ୍ଗଳ ଅନେକ ହୁଏ ।

ସ୍ୱାଭାବିକଂ ତୁ ଯନ୍ମିତ୍ରଂ ଭାଗ୍ୟେନୈବାଭିଜାୟତେ ।
ତଦକୃତ୍ରିମସୌହାର୍ଦ୍ଦମାପତ୍ସ୍ୱପି ନ ମୁଞ୍ଚତି ।।

ସ୍ୱାଭାବିକ ଯେ ମିତ୍ର, ସେ ଭାଗ୍ୟରେ ମିଳେ, ଏବଂ ତାହାର ଅକୃତ୍ରିମ ମିତ୍ରତା ବିପତ୍କାଳରେ ଘୁଚି ଯାଏ ନାହିଁ ।

ନ ମାତରି ନ ଦାରେଷୁ ନ ସୋଦର୍ଯ୍ୟେ ନ ଚାତ୍ମଜେ ।
ବିଶ୍ୱାସସ୍ତାଦୃଶଃ ପୁଂସାଂ ଯାଦୃଙ୍‌ମିତ୍ରେ ସ୍ୱଭାବଜେ ।।

